**HARIJAN ( Novel )**
**By Sri Gopinath Mohanty**
**Published by Vidyapuri, Cuttack 753002**
**Reprinted 1984**

ବିଦ୍ୟାପୁରୀ ଦ୍ୱାରା
ପୁନର୍ମୁଦ୍ରଣ ଡିସେମ୍ବର ୧୯୮୩

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ସଂସାର ପ୍ରେସ
ଚେଲେଙ୍ଗା ବଜାର, କଟକ ୭୫୩୦୦୯

ମୂଲ୍ୟ ଟ ୨୮.୦୦
ସାଦା ବନ୍ଧାଇ ଟ ୨୫.୦୦

## ଉପହାର

ଯେ ମୋ ତୁଣ୍ଡରେ ଦେଲେ ଭାଷା,
ହାତରେ ଦେଲେ ଖଡ଼୍ଗ,
ଛାତିରେ ଦେଲେ ସାହସ—
"ଭୟ ନାହିଁ, ମୁଁ ତୋ ଆଗରେ ଅଛି ପଛରେ ଅଛି,"
ସେହି ମୋର ସାହିତ୍ୟିକ ଗୁରୁଦେବ—
ଜନ୍ମଗତ ଅଗ୍ରଜ,
ଓଡ଼ିଆ ସାହିତ୍ୟର ଗୌରବ-ରବି—
ଶ୍ରୀ କାହ୍ନୁଚରଣ ମହାନ୍ତିଙ୍କୁ
ଏ ମୋର ମାଟି କାଦୁଅ ଗଢ଼ା ହାଡ଼ ହାଡ଼ିଆଣୀ ଦୋଟି
ଉପହାର ଦେଲି ।

**ଗୋପ**

Theirs be the colour the music
the glory the gold,
Mine be a handful of ashes,
a mouthful of mould.

—Masefield.

# ହରିଜନ

## ଏକ

ସୁନ୍ଦର—ସବୁ ସୁନ୍ଦର, ପୂଜା ବସି ଦେଖୁଥିଲା । ପଛୁଆଣି ଖସ୍ୱରେ ରଙ୍ଗ ବଦଳୁଛି, ମୁହଁପଟେ ଖଣ୍ଡିଆ ତୋଟାର ଟେକା ଟେକା ଆମ୍ବଗଛ ସବୁ ଅଳସରେ ଢଳୁଛି, ଫୁଲ ଭର୍ତ୍ତି, ଭଁ ଭଁ ମହୁମାଛି । ଅଳିଆକୁଢ଼ର ବୋତଲା ଗନ୍ଧ ଉପରେ ଅତର ଛୁଆଁ ହେଲା ପରି ଫଗୁଣର ନଦୁଆ ବାସ୍ନା । ଆମ୍ବତୋଟା ତଳର ଖାଲ କୁଦ, ସେକରେ ସାମ୍ନାରେ ବଡ଼ ରାସ୍ତା ଗାଁ କୁ ଚାଲିଛି—ମଶାଣିକୁ । ପଛକୁ ପଛ ହୋଇ ମଣିଷର ଗୋରୁ ପାଦଚିହ୍ନ—ରାସ୍ତା, ବାଟ, ନଈବାଲି । ଛପିଲା ପରି ନଈ ଧାର । ତୋଟା ପାଖର ଝାଲୁଆ ମେହେନ୍ତରପଲ୍ଲୀରୁ ନଈ ଦିଶେ ନାହିଁ, ନଈ ଉପରେ ଆକାଶ ଦିଶେ । ସେଠି ଛୁଣ୍ଡା ହାର ପରି ମାଳ ମାଳ ଚଢ଼େଇ । ଚଳନ୍ତ ଛବି—ସଡ଼କ ଧୂଳି, ପେଲାପେଲି ମଣିଷ, ବଡ଼ ସହର, ଆକାଶର ଚଢ଼େଇ । ସବୁ ଉଡ଼ିଯାଉଛି, ସବୁ ଚାଲିଯାଉଛି । କଳା ଭଅଁର ରଙ୍ଗର ମଟରଗାଡ଼ି ଭିତରେ ସିଗାରେଟ୍ମୁହାଁ ଦାମିକା ବାବୁ, ଚଷମା ପିନ୍ଧା ଦାମିକା ସ୍ତ୍ରୀଲୋକ । ବୁଢ଼ା ଭିକାରୀଟିଏ ବାଡ଼ି ଭରା ଦେଇ ଠେଲାଲା ପରି ଚାଲିଛି । ପଛେ ପଛେ ଗାଡ଼ିବାଲାର ହଟ୍ ହଟ୍ । ରେଳ ବେଳ ହେଲାଣି ପରା ! ରିକ୍ସା ପଛକୁ ରିକ୍ସା ଧାଇଁଛି ଟିଣିଂ ଟିଣିଂ । ନାଲିଆ ଧୂଳିରେ ଦି'ଗୋଡ଼ିଆ ପଶୁ ଦିଶୁଛି ଲମ୍ବ ଜୁଡ଼ୁ ବୁଡ଼ୁ । ଦୁନିଆଁ ଲମ୍ବ ଜୁଡ଼ୁ ବୁଡ଼ୁ ଧୂଳିର ମେଘ, ଗହଳିର ତୋଫାନ, ବଡ଼ ସହର । ତଥାପି କେଡ଼େ ସୁନ୍ଦର—ସବୁ ଖାଲି ଧାଇଁ ପଳେଇଛି । ଜାଉଜାଉକା, ମୋଟା ସରୁ, ରଙ୍ଗର ଗୁଣ୍ଡା । ସୂର୍ଯ୍ୟ ଅସ୍ତ ହେଉଛି । ମଶାଣିର ବାଲିବନ୍ତ ଉପରେ ଖସ୍ୱ ଫିକା ପଡ଼ିଲାଣି । ତଳେ ତଳେ କଅଁଳିଆ ନଦ…

"ପୁନି—ପୁନି" ବୋଉ ଡାକୁଛି । ଡାକୁଥାଉ ସେ । କୋଠାର ବଣ ଗହଳରେ ଶେଷ ଖରାର ରଙ୍ଗ । ଦେଉଳର ଅଗରେ । ତା ଘର ପାଖର ନଡ଼ିଆବାହୁଙ୍ଗା ଉପରେ ଝଟ୍‌କନା ପଳେଇ ଯାଉଛି, ଆଉ ଆସିବ ନାହିଁ । ଏ ବେଳ, ରୁନ୍ଧାରୁନ୍ଧ, ସନ୍ଧାସନ୍ଧ । "ପୁନି—ପୁନି, ଆଇଲୁ ଲୋ ଚୂମ୍ପାପଣୀ— !" ରଡ଼ିଲାଗିଛି, ଦୁନିଆ ଓଲଟେଇବ ପରା ! ପଛଆଡ଼େ ତା'ର ଆପଣାର ସାହି, ମେହେନ୍ତରର ବସ୍ତି, ନାକଧରାପୁର । ଖତେଇ ହେଲା ପରି ଭଙ୍ଗା ଦଦରା ଚାଳ ହୋଇ ଅଛିଏ । ବସ୍ତି ସେକରେ ସହରଯାକର ଅଳିଆ ଗଦାଇବା ଜାଗା । ନାକଧରାପୁର୍—ବୋଉ କାନ ଥରା ପକେଇ ଡାକଣ୍ଡୁଡ଼ୁଛି । କେତେବେଳୁଣିକା ଖରା ବେଶ ପାଲଟି ପକେଇଲାଣି । ଶିଖା ଲୁଚୁଛି । ପୁଣି ଚହ୍ଲା ସାହିର ଧୂଳି ଧୂଆଁ । ଅନ୍ଧାର ଜାଡ଼ । ନର୍ଦ୍ଦମା ପରି ମଣିଷ । ସେଇଠି ପୁରୁଣା ସମାଜର ଚେର । ତାଙ୍କର ଏ ନାକଧରାପୁର, ଘରଆଡ଼ୁ ବଡ଼ ସହରର କାନ୍ଥ, ପାଚେରୀ, କୋଠା ଧାଇଁ ଆସୁଛି । ଅର୍ଦ୍ଧଚନ୍ଦ୍ର ଦେଉଛି ନଈଆଡ଼କୁ । ନାକଧରାପୁର ଉଠୁ ନାହିଁ । ଚେକାମାଡ଼ି ବସିଛି, ସହରର ଫୁସ୍‌ଫୁସ୍ ଭିତରେ ଯକ୍ଷ୍ମାଜୀବାଣୁ ଅରାକ ।

"କୁଆଡ଼େ ଗଲୁ ଲୋ—ଅଇଲୁ ଚୂମ୍ପାପଣୀ— !" ସେ ପାଖର ସେ ବଡ଼ କୋଠା, ଷଣ୍ଢ ପରି ମୁଣ୍ଡ ଟେକିଛି । ଧନଦୌଲତ ଆଖିଝଲସା ବଡ଼ପଣ । ସେଠି କେଉଁ ମିଞ୍ଜିମିଞ୍ଜିକା ମେହେନ୍ତରର ବସ୍ତି କେବେ ଥିଲା, ତା'ର ହାଡ଼ ଗୁଣ୍ଡା ହୋଇ, ଖତ ହୋଇ ଫୁଟିଛି କାରୁକାର୍ଯ୍ୟର ସୁନ୍ଦରପଣ । ଅବିନାଶବାବୁଙ୍କ ଦୋତାଲ କୋଠା । କେଡ଼େ ସୁନ୍ଦର ଶୁଆପଖିଆ ଶାଢ଼ୀ । ବାବୁଘର ଅଳିଅଳି ଝିଅ ମାନମୟୀ ଠିଆ ହୋଇ ଦୃଶ୍ୟ ଦେଖୁଛି । ତା'ର ଶାଢ଼ୀ ଜାଢଜାଢକା । କ'ଣ ସେ କହୁଛି ? କାହିଁକି ଏତେ ହସୁଛି ? କୋଠା ତଳେ କଏସେ ଏମାନେ ? ଆଲୁଳ ହୋଇ ବଡ଼ ସୁନ୍ଦର ମାନେ ତାକୁ । ବାଳ ଫିଟିପଡ଼ିଛି, ଦେହରେ ଅଧେ ଲୁଗା, କାନର ଅଳଙ୍କାର ଦୋହଲି ଲାଗିଛି । ଏକା ବୟସର ସେ, ମାନମୟୀ—ଦୂରର ଛବି ।

ମାନମୟୀ ଗଲା । ତା'ର ଭାଇ ଅଘୋରବାବୁ ଠିଆ ହୋଇଛନ୍ତି, ବଡ଼ବାବୁଙ୍କ ବଡ଼ ପୁଅ । ମଣିଷ ହେବ ତ ଏମିତି ହେବ । କି ପୋଷାକ— କି ସୁନ୍ଦର—ଭେଣ୍ଡା ଟୋକା, ଦେହରେ ଜୋର୍ ଥିବ ବହୁତ । କେଉଁଠି ଟିକିଏ ଖୁଣ ନାହିଁ । କଅଁଳ ଦେହ—ବାପୁଥିବ ପରା—କେଡ଼େ ବଡ଼ ବୟସ୍କ ସେ ! ଗୋଟିକିଆ ଉରା । ମନକୁ ଟାଣି ନିଏ, ଯେତେ ଦେଖୁଥିଲେ ଆଶା ମେଣ୍ଟେ ନାହିଁ ।

କ'ଣ କଲେ ସେ ସୁଖ ମିଳେ ? ଭଙ୍ଗାବସ୍ତିର ନର୍ଦ୍ଦମା-କଳା ସଂସାର ଉପରକୁ ଉଠିଯାଇ ଉଞ୍ଚ କୋଠାର ଛାତ ଉପରର ମାସ୍ୟା ଜୀବନ । ଗୋଟିକିଆ ନଗ୍ରେଲା - ସେଠି ପବନରେ ଧୂଳି ନ ଥିବ—ଅପନା ନାହିଁ, ଅଭାବ ନାହିଁ । ଦୂରକୁ ଦୂରକୁ ଦଶିଯାଉଥିବ । ସେ ଉପରୁ ପୃଥିବୀ ଆହୁରି ସୁନ୍ଦର ଜଷ୍ଟସ୍ଥ, ସବୁବେଳେ ସୁନ୍ଦର । କଲବାଜା, ବଜୁଳି ଆଲୁଅ, ଫୁଲକୁଣ୍ଡ, ସବୁବେଳେ ଭୋଜ । ମଇଲା ଗାଡ଼ି ଥିବ ନାହିଁ ସେଠି, ନ ଥିବ ଗ୍ରାଝୁଣୀ ଝୋକେଇ, ନର୍ଦ୍ଦମା— ।

ତଳ ଉପରେ ଉପର ରଜା । ସେଠୁ ଅଘୋରବାବୁ ଦୂର ବୁଦ୍ଧେଁ । କୁଆଡ଼େ ଗୃହିଁଛନ୍ତି ସେ ? କ'ଣ ଭାବୁଛନ୍ତି ? ସେ କ'ଣ ପୁନକୁ ଦେଖୁଥିବେ ? ପୁନ କଥା ଭାବୁଥିବେ ? – ଭାବନ୍ତୁ ନ ଭାବନ୍ତୁ, ଆଖି ବୁଲେଇ ନେଇ ହୁଏ ନାହିଁ ସେ ଥିବାଯାକେ ।

"ଆଲୋ ପୁନ—" ଡାକ ପାଖକୁ ଆସୁଛି । "ମଲା, ତୁ ଏଇଠି ଅଛୁ, ମୁଁ ପାଟି କରି କରି ମରୁଚି ! ଆଜି ଯାଉ ତୋ ପିଠି ନ ଭାଙ୍ଗିଚି । ରଇଥା, କେମିତି ଗେହ୍ଲା ଫୁଲି ହେଇଚୁ ଦେଖିବି ତତେ । କାଲିକି ତତେ ପାଇଟିକି ପଠେଇବି । କିଛି ନ କହୁଚି ବୋଲି ଯୁଆଡ଼େ ପାରି ସିଆଡ଼େ—ଦେଖିଲାବେଳକୁ ମାଟିମେଦ ପରି ଗ୍ଣୀ ନଥ୍ କନା ବସିଚନ୍ତି । ଗୃଲ୍ ଗୃଲ୍ ।"

ମିଛ କଥା, ବୋଉ ଆଉ ଯାହା କରୁ, ପାଇଟିକି ପଠେଇବ ନାହିଁ । ଲୋକେ କହି କହି ଥକିଗଲେଣି; ସେ ଚର୍କି ନାହିଁ । ଏକା ଜିଦ, ଏକା ନାହିଁ । ସେ ପଛେ କାମରେ ଘାଣ୍ଟି ହେଉଥିବ, ପୁନକୁ ଛାଡ଼ିବ ନାହିଁ ।

"ବୋଉ, କ'ଣ ପୁଣ୍ଡା ପୁଣ୍ଡା ଗେବବ ?"

"ନାଇଁ, ରସଗୋଲା ଆସିବ ଯେ ଗିଳିବୁ— ।" ତଥାପି ଜେମାର ମନ ଅସ୍ଥ ହେଲା ନାହିଁ । ସତେ ତ, ଗ୍ଢକ ଟିଥ କ'ଣ ଲଗେଇ ଭାତ ଖାଇବ ? ଅଣ୍ଟାରେ ପଇସା ଯୋଡ଼ିଏ ଜାକି ଜେମା ବାହାରି ପଡ଼ିଲା । ବଜାରକୁ ଯାଇ ଦେଖିବ ଅନ୍ତତଃ ପିଟେଇ ଶୁଖୁଆ ଦ ପଇସାର ।

"ମୁଁ ଆଉଚି, ତୁ ଆ, କୁଆଡ଼ୁକୁ ବାହାରିବୁ ନାଇଁ; ବୁଝିଁ ହୁସିଆର— !" ଭାତଗୁଣ୍ଡା ଜାକି ପୁନ କହିଲା, "ହୁଁ –"

□ □

# ଦୁଇ

ଯା—ମା' ପାଣି ଥୋଇ ଦେଇ ଯାଇ ନାହିଁ । ଯାଇଚ ତ ଯୁଗ ପାହିଚ । ଅନ୍ଧାର ଘରେ ଅଣ୍ଡାଳି ଅଣ୍ଡାଳି ମିଳିଲା କଣା ମାଠିଆଟା, କଣାରୁ ଚିନ ଖସିପଡ଼ିଥିବ, ପାଣି ନାହିଁ । ଶିଙ୍କୁଳି ଲଗେଇ ଦେଇ ପୁନ ପାଣି ଆଣି ବାହାରିଲା । ମୁହଁ ବାନ୍ଧି ପକାଇଲା ପରେ ଅବିନାଶବାବୁଙ୍କ ଘର ଦୋତାଲି କୋଠାର ବିଜୁଳି ଆଲୁଅ ଦାଉ ଦାଉ ଜଳିଲଣି । ଏତିକବେଳେ ମାନମୟୀ ଗୀତ ବୋଲେ, ହାର୍ମୋନିୟମ୍ ସୁର ସହିତ ଭସି ଆସେ ତା'ର ମନପୁଲଣି ଗୀତ । ଉପରୁ ଝଡ଼ିପଡ଼ୁଥିବା ଗାଛର ଅଇଣ୍ଠା ପାଖୁଡ଼ା ମୁହେଁ ମୁହେଁ ପୁନ ଓଲଟାଇ ବସେ, ତୃଣ୍ତି ଲେଉଟେ ନାହିଁ । ବିରକ୍ତ ହୁଏ । ପୁଣି ମନେ ମନେ କସରତ୍ କରେ, ଗୁଣ୍ଡି ଗୁଣ୍ଡି ହୁଏ । ମନ ବୁଝେ ନାହିଁ—ରାଣୀ ଚନ୍ଦ୍ରକାଣୀର ଭେଦାଭେଦ । ଗୁଣ୍ଡି ଗୁଣ୍ଡି ହୋଇ ପୁନ ଗୃଳିଥିଲା । କଟି କଟି ଅନ୍ଧାର । ନଲଟଣ ଆପିବାକୁ ଝୁମ୍ପ ଅଛି, ନଲଟଣ ନାହିଁ । ମଦୁଆ ଗୃହଛନ୍ତି । ଗୁଣ୍ଡି ଗୁଣ୍ଡି ବନ୍ଦ ହୋଇଗଲା, କାଛକୁ ଆଉଜି ପୁନ ଟାଳିଚଲି । ମଦୁଆ ଗୃହଛନ୍ତି, ହସ, ହାକୁଟି, ପାଟି । ଘରୁ ଘରୁ ବେଢ଼େଇ ନିଆଁର ଧାସ ପଡ଼ୁଛି ଅନ୍ଧାର ବାଟକୁ, ଦଶିଯାଉଛି—କାହା କାମିଜରୁ ଚେନାଏଁ, କାହା ମୁଣ୍ଡରୁ ଫାଳେ । ଗ୍ରେଣ୍ଡବାଟର ପଟ୍ଟାର । ଆଗରେ କଜଳମଟିର ଘର, ଯୁଇକଡ଼ିର ଘର । ସେ ବାଟ ମାଡ଼ିବାକୁ ବୋଉର ହୁକୁମ୍ ନାହିଁ, କଡ଼ା କଟକଣା । ଆଗରେ ଲୁଚ୍ଚି ମଦ ଦୋକାନର ହାଉ ହାଉ । ଗଳିସନ୍ଧିରୁ ପୋଡ଼ା ମଦର ଗନ୍ଧ, ଲୋକଙ୍କ ବକର ବକର । ଅନ୍ଧାର ଛଳେ ଛଳେ ଦୁଲୁକ ଲଗିଛି ନାକଧରାପୁର୍ । ମେହେନ୍ତରପଲ୍ଲୀରେ ରାତ ।

ଅନ୍ଧାରେ ଅନ୍ଧାରେ ମାଡ଼ି ଆସୁଛି କିଏ ସେ, ଜଳନ୍ତା ବିଡ଼ିଗୁଲ ପାଖେଇ ଆସୁଛି କତିକି । "କିଏରେ ? ସନିଆଁ କିରେ—"

"ଆହା, ମୋ ପୁନେଇଁ ଚାନ୍ଦ, ଧରାପଡ଼ିଚୁ ଆଜି—"

"ଗୁଡ଼୍ ଗୁଡ଼୍, ଭଲ ଦଶା ଅଛି ତ । ମଲି, ସେମିତ କାହିଁକି ହଉଚୁ ମଁ । ଶୁଙ୍ଘେ ତୋ ମୁହିଁ । ଉଁହୁ—ଗୁଡ଼ିଦଉଚୁ—"

ସନିଆଁ ହସିଲା । "ଦେଖିଲୁ ତ, ମଦ ପିଇ ନାହିଁ । ଦାଦା, ତତେ ଦେଖିଲେ ମତେ ନିଶା ଲଗେ । କେମିତ ଗୁଡ଼ିବ କହିଲୁ ? ଗଣ୍ଠି ଯଉଚଲି—"

'ତୋ ମୁଣ୍ଡ ଗଣ୍ଡି ପଡ଼ିଗଲା । ଉକାଗୁଡ଼ିକ ଦେଖିବୁ ?''

''ଏତେ ବଡ଼ ବଧାଟାଏ ମାରିଦେଲୁ ଠିକ୍ ଫୁଲ ପଡ଼ିଲା ପରି । ଆଉ ଗୋଟାଏ ମାର୍ ପୁନି; ତତେ ମୋ ରାଣ ଅଛି । ତୋର ସବୁ ସହିବି, ଦେଖିବୁ ନୋଉଁ । ତୁ ରାଣୀ ହେଇ ବସିବୁ—ମତେ ଗୋଇଠା ମାରିବୁ । ମୁଁ ପିଠି ଦେଖେଇ ଦେଇ କହିବି, ଆଉ ଗୋଟାଏ, ଆଉ ଗୋଟାଏ—ମୋ ପିଠି ଗଲ୍ କରୁଚି—'' ସନିଆଁ ଅଭିନୟ କଲା । ପୁନି ହସିଲା ।

''କୋଉ ନାଟରୁ ଶିଖିଲୁ, ହେଇରେ 'ମୋ ପିଠି ଗଲ୍ କରୁଛି ?' ମାଇଚିଆଟା, ଯାହାରେ ରାଣୀ ହେଇଥିଲୁ କି ରେ ?''

''ତୁ ତ ହବୁ ରଜା, ମୁଁ ରାଣୀ ହେବି ନାହିଁ କ'ଣ ହେବି ? ଯିବା ଯାତ୍ରା ଦେଖି ! ଗୁଲ୍ ପଲେଇବା । କେବେ ତ ଆସୁନୋଉଁ, ମୁଁ ସବୁଦିନେ ଡାକୁଚି । ପୁନି ପୁନି କଏ ଡାକୁଚି—ସ୍ନେ ବାପ କଏ ଡାକୁଚି—''

''ତୋ ସାଙ୍ଗରେ ମୁଁ ଯିବି ନାହିଁ, ଯା ଭକ୍—''

''କାହିଁକି, ତତେ କଂସ୍ କଂସ୍ ଖାଇଦେବି କି ଡରୁଚୁ ? ସତେରେ ପୁନି, ବାହାରି ଆ । କେମିତି ରାତି ହେଇଛି ଦେଖିଲୁ ! ଗୁଲ୍ ବାରୁ ହବା, ବୁଲିବା, ତତେ କେତେ ଜିନିଷ ଦେବି ଦେଖିବୁ—''

''ହଁ, ଦବୁ ନାହିଁକି, ମୁଁ ଜାଣିଚି କୋଉଠୁ ଅଳଆ ଝିଟିରୁ ଭଙ୍ଗା ପାନିଆଁ ଖଣ୍ଡେ, କାହାର ଫଟା ଆରସି ଟୁକୁଡ଼ାଏ, ଏଇଆ ତ ତୋ ଯୋଗ । ସେଇଥିପାଇଁ ରାତି ରାତି ବୁଲୁଥିବେ ତୋ ସାଙ୍ଗରେ, ନୁହେଁ—?''

''କ'ଣ କରିବ କହିଲୁ ? ମଇଲା ଗାଡ଼ି ପେଲି ପେଲିକା ଗଣ୍ଡାଏ ପଇସା । କୋଉଦିନ ଟିକିଏ ଅଳସ କଲେ କୋରିମାନାରେ ଅଧେ ଯିବ କଟି; ଯାହା ରହିବ, ଗଳିଯିବ ବୋହେବୋର ଆଙ୍ଗୁଠି ଫାଙ୍କରେ—''

''ବବାକ୍ ! ସବୁ ମଦଙ୍କିରେ—''

''ହଁ ଛଳୋଉଥା, ଛଳୋଉଥା । କାନ୍ଧରେ ପଇଲେ ବଜେଇ ଶିଖିବୁ ବଲେ । କହିବୁ ଗିରସ୍ତ ଲୋ, ଆଉ ବୋତଲେ—''

''ଭକ୍ ଭକ୍, ଭାରି ଫାଜିଲ ହେଇଯାଉଚୁ—''

''ଫାଜିଲ କ'ଣ ହେଲି ? ଧିଅ ମେହେନତ୍ତର ତୁ ଜାଣୁ କ'ଣ ? ଟୋପାଏ ନ ପିଇଲେ କାମ ଚଲେ ? କିଏ ନ ପିଉଚି ଖାଲି ତୋ ଛଡ଼ା ?

ତତେ ତୋ ବୋଉ ଧାନ କୋରମେଇଁରେ ଜନ୍ମକଲା । କହୁଲା, ବାବୁଘର ଝିଅ ମୋର ଫୁଲପାଖୁଡ଼ା, କାମକୁ ଯିବ ନାହିଁ, ବସି ବସି ଖାଇବ । ଖରା ଲାଗିବ ନାହିଁ, କାକର ଲାଗିବ ନାହିଁ, ଖାଲି ଝୁଲୁଥିବ, ଏମିତି ଝୁଲୁଥିବ—!"

"ଗୁଡ଼ୁ ଚୁନା ? ଦେଖ୍, କାମୁଡ଼ ଦେବ ପୁଳାଏ—"

"ବାବୁଘର ଝିଅ କାମୁଡ଼ନ୍ତି ନାହିଁ—"

"ନାହିଁ, ଗେଲ କରନ୍ତି, ତୁ ଦେଖିବୁ—"

"କ'ଣ ଯେ ମୋ ମନ ହଉଚି, କ'ଣ କହିବି ତତେ ! ତୁ ଯେତେବେଳେ ବଡ଼ ହବୁ, ଘର କରିବୁ, ମୁଁ ବି ତତେ ଏମିତି ବସେଇ ରଖିଥିବି । ଦେଖିବୁ, ମତେ କହୁଥିବୁ ସେତେବେଳେ । ପଇସା ଥାନ୍ତା, ତତେ ଶାଢ଼ୀ କିଣି ଦଉଥାନ୍ତି, ଅଳଙ୍କାର ପିନ୍ଧାନ୍ତି । ନାହିଁ, ଏ କାମରେ ଚଳିବ ନାହିଁ—ଧର୍ମବୁଢ଼ା କଥା ନ କଲେ ଗତି ନାହିଁ ।"

ପୁନିର ମନକୁ ପାପ ଛୁଇଁଲା । ସନିଆଁ ହୁଣ୍ଡାଟାଏ । ତା ପାଇଁ ସବୁ କରିପାରେ । ଆଉ, ସନିଆଁ ତାକୁ ବୁଢେ, ପିଲାଟିଦିନୁଁ ଏକାଠି । ଧୂଳିଆ ଧୂସର ହୋଇ ଫୁରୁଫୁରୁ ବାଳ ଉଡ଼େଇ ଡେଇଁବୁଲିବା ଦିନୁଁ ସନିଆଁ ଆଉଜି ଆସିଛି ତା କଡ଼କୁ । ସେଦିନ ଯାଇଛି । ବୋହୂବୋହୂକା ଖେଳିବା ଦିନ ଯାଇଛି । ଟୁଙ୍ଗି ଗାଡ଼ିଆ ଦାଢ଼ରେ ସଳସଳିଆ କୋଇଲିଖିଆ ଅରମାରେ ବସି ବନ୍ସି ପକେଇବା ଦିନ ସରିଛି । ପୁନି ବଢ଼ି ଉଠୁଛି । ସନିଆଁ ଭେଣ୍ଡା ହେଲାଣି । ଏମିତି ତାକୁ ଦେଖି ପକେଇଲେ ପୁନିଆଁ ଯାକର ବାବୁପଣର କଳ୍ପନା ତା'ର ଗଳୁର ବସି ଆଶ୍ରୟ କରେ ଧର୍ମବୁଢ଼ାର ଉପଦେଶ । ସେ ଛ ମାରାତ୍ମକ । ପୁନିର ଗ୍ଲାନି ଥରେ ।

"କ'ଣ କହିଲୁ—ଧର୍ମବୁଢ଼ା, ଧର୍ମବୁଢ଼ା ! ତା'ର ଚେଲା ହେଲୁଣି କରେ ସନିଆଁ ?"

"କ'ଣ ହେଲା, ଭଲ ତ କହେ ସେ । ସ୍କୁଲ୍‌ନୋଉଁ ଶୁଣିବୁ । ଚୋରି କଲେ ପାପ ହୁଏ ନାହିଁ, ଧରାଗଲେ ପାପ ହୁଏ । ଏଇ ତ ତା'ର ଅ ଆ । ଆମେ ଚୋରି ନ କରି ଚୋର, ପାପ ନ କରି ପାପୀ, ଆମେ ଘୃଣା ଦଉଡ଼ି କଟା । ଲୋକେ ମା ପେଟରୁ ଶିଖି ମାଲ ବାନ୍ଧି ଆଣିଥିଲେ ଯେ, ସେମାନେ ବସି ଖାଉଥିବେ, ଆମେ ଉପାସ ଭୋକରେ ମରୁଥିବା ? ସଜେଇ ସାଜେଇ ଦେଲେ କେଡ଼େ ସୁନ୍ଦର ମାନନ୍ତା ତତେ । ଦୋକାନ ବାଟେ ଗଲେ ଆଲୁଅରେ ସବୁ ଝକ୍ ଝକ୍ କରେ, ମନ ହାଇଁପାଇଁ ହୁଏ । ଯେତେ ଟୋକୀ ଦେଖିଲେ ତୋଠୁ ସୁନ୍ଦର ନାହିଁ କେହି । ତୋର ଖଣ୍ଡେ ଭଲ ଲୁଗା ନାହିଁ । ଧର୍ମବୁଢ଼ା କ'ଣ ମିଛ କହେ ?"

"ଆଉ ଆଉ, କଏ ଶୁଣିବ ସନଆଁ । ତୋ ମୁଣ୍ଡ ବିଗିଡ଼ିଛି, ତୁ ସେମିତି ହ' ନା । ବାନ୍ଧିନେଇ ଦେବେ ମାଡ଼ ଯେ ପାଇବୁ । ତୁ ସେଦ ଧନୀବୁଢ଼ା କଥାରେ ମାଠ ଚାଲିବୁ, ମୁଁ ତତେ ପାଚି ଫିଟେଇବି ନାହିଁ । ସହଜେ ତ ତୁ ବାଳୁଙ୍ଗାଟା ! —ହଉ ତୁ ଗଲୁ, ବୋଉ ଆସିଲାଣି ପରା, ଦେଖ୍‌ନୁ—"

"ଇଲେ ମୋ ଦାଉ ! ତୋର ଯୋଉ ବୋଉ—" ସନଆଁ ତାର ବୋଉକୁ କଣ ସପଦ ବର୍ଣ୍ଣନା କରିଦେଇ ଗାଁଚ ବୋଲି ବୋଲି ପଳେଇଲା । ଗଲା ପରେ ପୁନର ସ୍ୱେହ ଉଚ୍ଛୁଳିଲା । ଅନେଇଁ ରହିଲା ସେହି ଅନ୍ଧାରକୁ । ଦେହ ଘଷି ହୋଇ କଥା କହିଯାଏ, ଆଉେଇ ହୋଇ ରହିବାକୁ ମନ ହୁଏ, ଦେହଯାକ ଶିର ଶିର ଲାଗେ । ଚାଲିଗଲେ ମନ ଛକପକ ହୁଏ । ସେ ବ ପଳାନ୍ତା । କାହିଁକ ନୁହେଁ ? ବୋଉ ଆସିବଣି । ମନ ଦବିଗଲା । କୁଆଡ଼େ ଯାଇଥିଲୁ ବୋଲି ଝାଡ଼ିଦେବ ପଟାଏ । ଝୁଣି ପକେଇବ । ଯେମିତି ସେ ବାନ୍ଧିରଖି ଯୋଗ କରୁଥିବ, ପଦାକୁ ଛାଡ଼ିବ ନାହିଁ । ସନ୍ଆଁର ପରି ନାହିଁ । ଦ ପାହୁଣ୍ଡ ଗଲେ ଘର ।

ଗ୍ରୁଇ ପର ଅଟକ ରହିଲା ପୁନ । ମିଛିମିଛି ହୋଇ ଦଶିଲେ ମନଗଢ଼ା ସୁଖର କଳ୍ପନା । ଗ୍ରୁବ ହୋଇଯାଏ, ପରେ ନାହିଁ ।

ଧଳା କଳା ହୋଇ ଉବଷ୍ୟତ୍ । ସେଠି ଜକାଜକ ମଣିଷ, ଦୁନଆଁ ଭରି କୋଠା-କୁଡ଼ିଆ, ଧଳ-ଧଆଁ । କରପଟିଆ ହୋଇ, ନୁଆଁଣିଆ ହୋଇ ଗ୍ଟଲ ଖଣ୍ଡେ କେଉଁଠି, ଅଗଣାରେ ଦଟା ଗେଣ୍ଡୁଫୁଲ । ତା ପରେ ? ତା ପରେ ?

ହୋସ୍ ହେଲା । ଅବନାଶବାବୁଙ୍କ ବଡ଼ କୋଠା, ଦାଉ ଦାଉ ଜଳୁଛି ବଜୁଳୀବତୀ, ମାନମସ୍ୱୀର ସୁନ୍ଦର ଗୀତ ଭାସିଆସୁଛି ଦୂରରୁ । ସନଆଁ— ମଦଖଟି—ମଇଲା ଗାଡ଼ି—ଧନୀବୁଢ଼ାର କଥା—ମାନମସ୍ୱୀର ଶାଢ଼ୀ—ବଡ଼ କୋଠା—ଅଘୋରବାବୁ କଣ କରୁଥିବେ ?—ଗୋଳିଆ ଫୋଳିଆ ହୋଇଯାଉଛି । କଣ କଲେ ମଣିଷ ମାନୀ, ଅଘୋର ହୋଇ ଜନ୍ମହୁଏ ? ସେଠିକ ଅଭାବ ପହଞ୍ଚେ ନାହିଁ, କଳାଚକରାଳ ପହଞ୍ଚେ ନାହିଁ, ଝଡ଼ରେ ପିଟିବା ନାହିଁ, ବର୍ଷାରେ ଫଉଲବା ନାହିଁ—ମୂଲ ଝଟି ଝୋଲ ନାଳ ହେବା ନାହିଁ ।

ବସି ବସି ଖାଇବା, ଭଲ ଖାଇବା, ଭଲ ପିନ୍ଧିବା, କଳବାଜା ବଜେଇବା । ବସ୍ତୁସ ଭୁଲେ ଏ ବି ଗୋଟାଏ ସ୍ୱପ୍ନ !

କଣ କଲେ ମଣିଷ ସେଠିକ ପହଞ୍ଚେ ?



# ତିନି

ଏ କଣ, ମା ଏମିତ ହଉଚ କାହିଁକ ? ଅନ୍ଧାର ଘରେ ବକଲମିଶା ପାଟି—

"ଏଲୋ ଏ ଚୂଲ୍ଲୀପଣୀ, ଆହାହା ଉହୁହୁ—ଘରକୁ ଶ୍ମେରକୁ ଦେଇ କୁଆଡ଼େ ଯାଉଥିଲୁ ହେ ନଅଁସି ! ଆହାହା—ଉହୁହୁ – !" "କଣ ହେଲା ବୋଉ ? କଣ ହେଲା ! କଣ ହେଲା ! ଏମିତ କାହିଁକ ଛଟପଟ ହଉଚୁ ?"

ପିଣ୍ଡାକୁ ଆଉଜ ଗୋଡ଼ ଲମ୍ବେଇ ଜେମା ପାଁ-ଗାଳଆ ଦେଇ ପଡ଼ ଛଟଛଟୋଉଚ, ଏଣ୍ଡ ତେଣ୍ଡ ଶୋଧୁଚ । ତାର ବକଲପଣ ପଶିଲାଣି ପୁନ ଦେହରେ । କଏ ଅଛୁ ? କାହାକୁ ଡାକିବ ? ଏତକବେଳେ ସନଆଁଟା ଗଲା ଗୁଲ ! "ବୋଉ, ହେ ବୋଉ, କଣ ହେଲା ?" ସ୍ୱର ଫାଟିଯାଉଛୁ କାନ୍ଦଣାରେ । ଜେମା ଆପଣାକୁ ସମ୍ଭାଳ ନେଇ ହସିଦେବାକୁ ଚେଷ୍ଟା କଲା । "କଲେ, ଏମିତ ବଲବଲୋଉଚୁ ଡ଼ କାହିଁକ ? ମୋର କ'ଣ ହେଲା କ ? କ'ଣ ସାପ ଖାଇଲା କ ବାଘ ଖାଇଲା ଯେ, ଗୁନଆ ହଉଚୁ, ହେଇ ଲୋ ? ମୁଁ ମଲେ ଏ ଦହଗଞ୍ଜ ହବ କଏ ?"

"କ'ଣ ହେଲା ବୋଉ, କହୁନୁ ଆଗ – "

"କଛ ନାହିଁ ଯେ," ଜେମା ଅଙ୍ଗେଇ ଅଙ୍ଗେଇ ହେଉଥାଏ, ଯେପର କ କହବାକୁ ବଲ ଖୋଜୁଚ – ପାଉ ନାହିଁ । "ହାଟକୁ ଯାଇଥିଲ, ଶୁଖୁଆ ଧ ପଇସାର କଣିଲ । କହଲ, ପିଲାଟା ଏକୁଟିଆ ଥିବ, ଧଅସି ଯାଏଁ । ସେଉଠୁ – " ନା, ବଲ ସରଗଲା । ଜେମା ଫାନ୍ଦ ହେଉଛୁ, ଗଡ଼ି ହେଉଛୁ—"ହୁଁ, ।ଡରବର ହଉଥିଲ, ସେ ଯୋଉ ଓକଲ ବଣିବାବୁଙ୍କ ଘର ଅଛୁ, ନଈ ଆମ ଗଡ଼ାଗଡ ବାଟ । ଏବେ ସିନା କୋବ ଲଗେଇଚନ୍ତ ଯେ, ବାଟ ବୁଜଚନ୍ତ । ଭାବିଲ, ଗୃଲଯିବ ସଲଖେ । ସେଇଠୁ – "

ବୋଉ ପାଟି ପାଖେ ମୁହଁ ଫଟେଇ ଅପେକ୍ଷା କର ରହୁଥାଏ ପୁନ । କହୁଆସୁଛୁ । ବାହାରବ କ'ଣ ସେ ଭୟଙ୍କର କଥା, ଯାହାକୁ ଶୁଣିଲେ ରକ୍ତ ପାଣି ହୋଇଯିବ । ବୋଉର ଏ ବକଲର ଦାରୁଣ କାରଣ—

"ବାହାର ଆସୁଥିଲ ଗୋଦା ବାଟେ । ପଛୁ ସେଇ ଯୋଉ କାମୁଡ଼ା କୁକୁର ଅଛୁ, ସବୁବେଳେ ବନ୍ଧା ହେଇଥାଏ; ଗୋଡ଼େଇ ତ ଆଇଲା ଲୋ ଝିଅ ! ସେ କାଲଟା ଗର୍ଜ୍ଜିନ ଗ୍ରୁଡ଼ ଗୋଡ଼େଇ ଆଇଲା ଲୋ ଝିଅ – ଉହୁ – "

ଅପେକ୍ଷା ସଶଗଲ୍ । ଭେଁ କନା ପୁନ କାଢ ପକେଇଲ୍ । ବୋଉ ବେକକୁ କୁଣ୍ଢେଇ ଅନ୍ଧ ହୋଇ ତା'ର ସେ କ କାନ୍ଦଣା ! ଚହ୍ନିଛ ସେ କୁକୁରକୁ । ଏତେ ମୁହଁ, ଜଭ ଲହ ଲହ, ଦାନ୍ତ ଦେଖେଇ ନଶ ଫୁଲେଇ ଦେଇ ଗୋଡ଼େଇ ଆସୁଚ ସବୁ ବଡ଼ଲୋକ ଘର ବଲ୍ଲାତ କୁକୁର ତାର ହାଡ଼ ଚମ ଢ଼'ଣ୍ଡି ମା ଆଡ଼କୁ ଖିନଭିନ କଶ ପକେଇବାକୁ !

"କାନ୍ଦନା, କାନ୍ଦନା–" ବୋଉ ପିଠି ଆଉଁସୁଚ୍ଛ । "ଶୁଣ୍, ଭୂନ ହ—"

"କାଇଁକ ସେ କାମୁଡ଼ା କୁକୁର ପୋଷିବେ ? ଅମକୁ ଖାଇବାକୁ ? କୋଉ ରଜା ସେ, କ'ଣ ସେ କ ? ସନଆଁକୁ କହଦେଲେ ତା ହାଡ଼ ଗୁଣ୍ଡା କଶଦବ । କାଇଁକ ଖାଲ ସନଆଁ, ସ୍ୱଲ୍ ଯିବା ଧମାବୁଢ଼ା କଢ଼କ । ସାହ୍ରୁଯାକ ଅଇଗ୍ରା ଉଠେଇ ନେଇଯିବ । ଦେଖିବା କେମିତଥା କୁକୁର, କେମିତଥା ଗେଲବସର ବାବୁ ! କ'ଣ ଭଣା ଭଣା କଶଦେଲ ବୋଉ–?" ସ୍ୱରରେ କାନ୍ଦଣା ମିଶିଯାଉଚ୍ଛ । ଥରୁଚ୍ଛ ଗୋଟାଯାକ ।

"ରହ ମୋ ଫାଙ୍ଗୁଲୀଟା, ପାଟି କର ନା । କୁକୁର ମୋର କଣ କଶବ ମ ? କୁକୁର ଖାଇଦେଇଥିଲେ ତୋ ବୋଉ ପୁଣି ଫେଶ ଅଇଥାନ୍ତା ? ଶୁଣ୍ । ଡେଇଁ ପଳେଇ ଆଇଲ୍ । କୋଉଠି ଠାଏ ନଆଁ ନଗା ଖାଲ ଭିତରେ ଗୋଡ଼ ପଡ଼ିଗଲ୍ ଯେ, ଗୋଡ଼ଟା ମକଚ ହୋଇଗଲ୍, ଦସ୍ଥଳ୍ ହୋଇ ପଡ଼ିଲ୍ । ଉଃ—ହାଡ ମାର୍, ଯେମିତ କଏ ନଆଁ ଗେଞ୍ଜି ଦଉଚ ଭିତରେ ଭିତରେ । ଗାଣ୍ଡେଇ ଗାଣ୍ଡେଇ, ଯୋସାଶ ହେଇ ହେଇ ପିଣ୍ଡାଯାକେ ଆଇଲ୍ ଲୋ ପୁନ— ଉଃ, କ'ଣ ହେଇଯାଉଚ । ଗଲୁ, ଡ଼ିବଟା ନଗେଇ ଆଣିବୁ— ।" ଡରଡର ହୋଇ ଅଣ୍ଡାଳ ଅଣ୍ଡାଳ ଡ଼ିବଟା ପାଇଲ୍ । ଏକା ଡ଼ଆଁକେ ଚଲ ପର କୁ !

"କଲେ ପୁନ–" ପଡ଼ଶା ଘର ଲୋକ କଥା କହୁଚ । ପୁନର ତର ନାହିଁ ।

'ଦେଲ୍ ଦେଲ୍ ନଆଁ ଟିକଏ, ଟ'ିକ ଦେ'ବା –'

'କାଇଁକ, ଡରଡର କାଇଁକ ? କଣ ଯୋଡ଼ାରେ ଚଢ଼ି ଆଇଚୁ କ ? ବସ୍ –'

"ଏ ନାନ, ଦେ'ବା ଦେ'ବା ଡ଼ିବଟା ଲଗେଇ ନଏ –"

"ଆମ ଘରେ ଵଳେଇ ମରଚ, ନଆଁ ନାଇଁ । ବସୁନୁ ଟିକଏ, କୁଆଡ଼େ ସବୁ ଗଲେ ଯେ କଥା ପଦେ କହବାକୁ କେହ ନାଇଁ । ବସ୍ ମଁ ପୁନ । ଆମ ଘରେ ମାଉଁସ ହେଇଚ, ଖାଡ ଗଣ୍ଡିଏ ଦେବ–।" ପଡ଼ଶାଘର ବୋହୁ,

ଯାକୁଲେଉଛି, କଥାରକ୍ଷଣୀଟା । ତରବର ହୋଇ ପୁଣି ଚୁଲି ପାଖକୁ ପଶିଗଲି । ଫୁର୍ କୁଟିଆ ଧୂଆଁ ଉଠୁଛି ଚୁଲିରୁ । ମାଉଁସ ସିଝୁଛି, ମାଉଁସ ପୋଡ଼ୁଛି । ଫୁଙ୍କି ଫୁଙ୍କି ଯାଏ । ଡିବଟା ଅଗ୍ନିରେ ପୁରେଇ କାନି ଆଉଜେଇ ନେଇ ପଳେଇଲାବେଳକୁ ବାରି ଚାଲିଲା । ବୋଉର ଗୋଡ଼ ମକଚି ହେଇଛି ଔଷଧ ଦରକାର । ଯଦିଆଟା ସିବଣି କୁଆଡ଼େ, ଥିଲେ ବା କରନ୍ତା କଣ ? ଧନୀବୁଢ଼ା ଟୁଙ୍ଗୀରେ ଥିବେ କଏ କଏ, ଭାଗବତ ପଢ଼ା ହଉଥିବ । ସବୁ ବିପତ୍ତିକ ଧନୀବୁଢ଼ାର ସାହାଯ୍ୟ ଥିବ ଟିକଏ ହେଲେ, କୋଉଠୁ ଆଣିଦବ । ପଛରୁ ପାଟିକରୁଛି ପଣ୍ଡଶାଘର ବୋହୂ, "ଏମିତି ପଳେଇଗଲୁ, ହଉ ହଉ, ଆଉ ମାଉଁସ ବଙ୍କଟେ ହେଲେ ଦେବୁ ! କେମିତିଆ କଅଁଳିଆ ଜିଭ । ଏଡ଼େ କଳିଜା । ଦେବୁ ଆଉ ଦେବୁ !"

ଓଃ, ଭଗବାନ୍ ଭଗବାନ୍ ! ବୋଉର କିଛି ନ ହେଇଥାଉ ଟି । ଦେଉଳକୁ ବାଟ ନାହିଁ ଠାକୁର, ଦୂରରୁ ଡକାପାରୁଛି । ମୋ ବୋଉର କିଛି ନ ହେଉ । କିଏ ଅଛି ଆଉ ? ଦବ କିଏ ? ବୁଝିବ କିଏ ? ନିତି ମଇଲା ନ ଉଠାଇଲେ ପେଟ ଚଳିବ ନାହିଁ । ମୋ'ଠି ମଇଲା ଲାଗି ନାହିଁ । ଠାକୁର, ବୋଉ କହେ ମୁଁ ଡାକିଲେ ତମେ ଶୁଣିମ କୁଆଡ଼େ । ମୁଁ ଛୁଆଁ ତ ନୁହେଁ । ମୋ ନେହୁରା ଶୁଣ, ମୋ ବୋଉ ଭଲ ହଉ । ପ୍ରାଣର ଡାକ ଅନ୍ଧାରରେ ମିଶୁଥାଏ । ମନ ଉଚ୍ଛନ୍ନ, ହସିଲା ପରି ଅଗ୍ନି, ଉଢ଼ାଳରେ ଡିବିରିର ଶିଖା । ନଇଁ ନାହିଁ, ବତୀ ଜଳୁଛି । କ'ଣ କହନ୍ତି ପରା, ବତୀ ସିଧା ଜଳିଲେ ଠାକୁର ଗୁହାରି ଶୁଣିବା ନିଶ୍ଚିତ । ଛଣେ ଛଣେ ପୁଣି ଗ୍ରହି ଦଉଥାଏ, ଆଶଙ୍କାରେ ଆଶା ଦେଖୁଥାଏ । ସେମିତି ପଡ଼ିରହିଛି ତା ବୋଉ । 'କଣ ହେଇଛି ଦେଖେଁ ଦୋଉ— ।' କାଟୁଛି ପରା, ଦେଖେଇ ଦଉ ନାହିଁ । ହେଇ, ଦେହସାକ ଧୂଳିମାଟି ବୋଟେ । ପିଠିରେ, କାନ୍ଧରେ ନୋଳା ଫାଟିଲା ପରି ପଟିପଟିକା କେଜାଣି କେତେ । ରକ୍ତ ବୋହୁଛି । ଗୋଡ଼ସାକ ଆମ୍ବୁ ଆମ୍ବୁ । ଖଣ୍ଡିଆ । 'ଆହା, କି ଦଶା ଦେଲୁ ଲୋ ବୋଉ— ।' କାନ୍ଦ ରୋକି ହେଲା ନାହିଁ — 'ମୋ ବୋଉ ଲୋ— !'

"ଧେତ୍ ଅଲଣ୍ଡିଟା, କାହିଁକି ରଡ଼ୁଚୁ ? ନେ, କାନରେ ପୂରା ଅଛି, ଫିଟେଇ ନେ, ମୋ ହାତ ଖରାପ ।" ମୁଠାଏ ପିତେଇ ଶୁଖୁଆ । ଆଇଁଷ ନ ହେଲେ ଝିଅ ଭାତ ଖାଇବ ନାହିଁ । ଧୂସୁର ଧୂସୁର ଜେମା ଘର ଭିତରକୁ ଗଲା । ହେଷ୍ଟ କଟ, ବୋଉ ଅଗ୍ନିରୁ ଗଡ଼ିଗଲା ଗୋଟାଏ ସଦ୍ୟ ଉପୁଡ଼ା ହୋଇଥିବା କୋବି । 'କୋଉଠୁ ପାଇଲୁ ? କୋବି—' ଜେମାର ପାପୁଲି ଓହ୍ଲେଇଲା ପୁଣିର ପାଟି ଉପରକୁ । ସଁ ସଁ ହେଇ କଣ ବକି ହଉଛି, ଆଖି ଦି'ଟା ରଡ଼ି ନିଆଁ ।

'ଚୁପ୍ ଚୁପ୍ — ପାଟି କରି ଜଣେଇ ଦଉଚନ୍ତି ସାହସାକ, ଅଲଜୁକୀ —'

କାବା ହୋଇ ମା'କୁ ଅନେଇଲା । ଦେହଯାକ ମାଡ଼ର ଦୋଳା, ନହୁନୁହାଣ୍ । କୋବା । ଶଶୀବାବୁଙ୍କ କୋବିବଗିଚା । ବୋଉ ସାଁ ସାଁ ହେଉ ଫୁଲ ଫୁଲ ଭୁଟୁର୍ ଭୁଟୁର୍ ହେଉଛି । କାନ୍ଦ ବନ୍ଦ ହୋଇଗଲା । ମୁହଁ ପୋଡ଼ିଗଲା । ପୁଣି ଡାକିଲା, 'ବୋଉ !'

"କଣ କହୁଚୁ — ?"

'କିଛି ନାହିଁ ।'

କ'ଣ ଅଟକ ଯାଉଥାନ୍ତା କୋବିଟା ନ ହୋଇଥିଲେ ? ଛୁଆଣି ବନା ଉପରର ଗୁଳ ଫାଳେ ବସିପଡ଼ିଛି । ପୁରୁ ପୁରୁ ଓହଳିଛି ଗୁଳରୁ କଳା କୋଚଟ ଧୋକଡ଼ । କୋବିଟା ଗଡ଼ୁଛି । ଥରେ କୋବିକୁ ଥରେ ମା ମୁହଁକୁ ।

'ଆଲୋ ! ପଚ୍ଛେ ନାକଟେକିବୁ ଲୋ ବଡ଼ଲୋକ ଘର ଝିଅ । ବଡ଼ ଲୋକ ବାପ କୋଠା ଉପରୁ ଧାଇଁ ଆଉଚି, ଛଇ କାଢ଼ୁଚୁ — ' ବୋଉ ରାଗିଲେ କଳ୍ପନା କରେ ସେ ବଡ଼ଲୋକର ଝିଅ । ଏଇଆ କହି ଚିହ୍ନାଇ ଚିହ୍ନାଇ ହାଡ଼ରେ ନିଆଁ ଲଗାଏ — 'କିଲୋ ଉଠୁଚୁ ନା ! ଯା, ଚୁଲି ଜାଳ । ମାଡ଼ ସିନା ପିତା ଲାଗେ, କୋବି ମିଠା ଲାଗିବ ମ । ଦେଖିବୁ ନାଇଁ — ବସି ବସି ନାକ ଟେକୁଚି, ବେହେଲ ଲଗେଇଛି । ଯା ଉଠ୍ — '

ରୁନ୍ ହୋଇ ଚୁଲି ଜାଳିଲା । ହାଣ୍ଡି ବସେଇଲା । ଆଉ ଧମୀବୁଢ଼ା ଟୁଙ୍ଗୀକୁ ଯିବାକୁ ମନ ଡାକୁ ନାହିଁ । ଭଙ୍ଗା ବୋତଲରୁ କାଣ୍ଟିଆ ସୋରିଷ ତେଲ ଟିକିଏ କାଢ଼ି ମା'ର ଗୋଡ଼ରେ, ହାତରେ ଘଷି ଲାଗିଲା । ନରମି ଆସିଲା ମନ । ତା'ର ବୋଉ, ତା'ର ଘର । କାହାକୁ ପରେଇ ଅଛି । ହେ ଠାକୁର, ବୋଉ ଝାଡ଼ଝୁଡ଼ ହୋଇ ଉଠିବସୁ । ବୋଉର ବହୁତ କଷ୍ଟ ।

'ଥାଉ ଥାଉ ପିଲାଲୋକ, ହାତ ଘୋଳା ହେଇଯିବଣି ପୁଣ···'

'ନାହିଁ ବୋଉ ଦେଖା; ଆଉରି ଟିକିଏ ଘଷି ଦିଏଁ···'

ବଡ଼ କୋଠା ଆଲୁଅ ଝଲମଲ । ମାନମୟୀ ଗୀତ ବୋଲୁଛି । ଆଉ କଳ୍ପନା ତେଜୁ ନାହିଁ । ତା'ର କ ଯାଏ ?···

'ପୁନାଟି ପରା କାହା ଆଗରେ କହିବୁ ନାହିଁଟି···' ବୋଉ ବୁଝୋଉଚି ।



# ଚୂର

ପାହାନ୍ତାକୁ ଜେମାର ଦେହ ଭଲଯାଇଥାଏ ।

ନିତି ଉଠିଲାବେଳକୁ କର ଲେଉଟେଇ କହିଲା, ଆଃ !

ଘାଉଁ ଘାଉଁ ହୋଇ ମଶା ଗଲେ ପଦାକୁ, ହାଡ଼ିସାହି ତୋଟାରେ ବାଦୁଡ଼ି ଗୁହଳରେ ଲାଗିଲା କଳରବ । ଦେଖୁ ଦେଖୁ ସକାଳ ମାଡ଼ିଚାଲିଛି । ଦନଯାକର କୋଳାହଳ । ଜେମା ଗାଲେଇ ଶୋଇଲା । ଘର ଦୁଆର ଖରକବାର ଛଟାଛଟ୍ ଶବ୍ଦ । ଘର ଭିତରେ ବି ଓଳିଆ ଧୂଳିର ଗନ୍ଧ । ରାସ୍ତାରେ ମଇଳାବୁହା ଗାଡ଼ିର କେଁ-କଟର୍ । ଥାଉ । ଆଉ ଟିକିଏ । ଆଉ ଟିକିଏ ।

ପୂଜା ଆସେ, ଅନେଇଁଦିଏ, ଚାଲିଯାଏ । ରାତି କଥା ମନେପଡ଼େ । ବୋଉର ଦେହ ଭଲ ନାହିଁ । ସବୁଦିନେ ସମୟ ଅନୁସାରେ ଘଟୁଥିବା ଘଟନାକୁ ଚାହିଁ ଚାହିଁ ହରିଜନପଲ୍ଲୀରେ ବେଳର ମାପ । ଚଣାବଣ୍ଟା ବୁଢ଼ାର ବେଳ ଗଡ଼ିଗଲା । ନିତି ଏତିକିବେଳେ ପିମ୍ପୁଡ଼ି ଗାତରେ ଚଣା ବାଣ୍ଟି ବାଣ୍ଟି ରାସ୍ତାରେ ସେ ଯାଏ, ଫେରେ । ଫେରିଯାଉଛି । ପାଠମାଙ୍କଡ଼ ପଟୁଆର କରି ଯିବାବେଳ ଟପିଗଲା । ଛୁଆପିଲା ଜାକି, ଲାଞ୍ଜ ଟେକି, ମୁହଁରେ ଦୃଢ଼ପ୍ରତିଜ୍ଞାର ଚିହ୍ନ ଆଙ୍କି ହୋଇ କାନ୍ଥ ଉପରେ ଚଢ଼ି ଚାଲିଲେ ସେମାନେ, ଧୋବଧଉଳିଆଙ୍କ ଘରେ ଲୁଟତରାଜ କରିବାକୁ । ଯା ପରେ ଘୋଡ଼ାଚଢ଼ା ଶିଖାଳି ପୋଷାକ ପିନ୍ଧା ବାବୁର ବେଳ । ସେ ବି ଗୋଟାଏ ଘଣ୍ଟା । ସାହିର ପିଲା 'ହେଇ ହେଇ' କରି ଦୌଡ଼ିବେ, କୁକୁର ଗୋଡ଼େଇବେ । ପୂଜା ଅପେକ୍ଷା କଲା ନାହିଁ । ଲୋକେ କାମକୁ ଗଲେଣି । ଟୁବି ଗାଡ଼ିଆରେ ବୁଡ଼ିପଡ଼ି ଆସିଲା । ମା ସେମିତି ଶୋଇଛି । ପୂଜା ଡରିଗଲା ।

ଆସ୍ତେ ହଲେଇ ଦେଇ କହିଲା, "ସେତେବେଳୁ ଶୋଇଚୁ ବୋଉ, ଉଠିବୁ ନାହିଁ ?" ଜେମା ମୁହଁ ବୁଲେଇ ଅନେଇଲା । ଚାଳର କଣାବାଟେ ଧାର ଧାର ହୋଇ ଝରା ଆଲୁଅ ପଡୁଛି । ଏଡ଼େ କଣା ହୋଇଗଲାଣି ଚାଳ ! କେବେ ସେ ଏତେବେଳେ ଘରେ ନ ଥାଏ । ପୂଜାକୁ ଦେଖିଲା ।

"କିଲୋ, ତୁ ଗାଧୋଇ ସାରିଲୁଣି ?"

ହସିଦେଇ ପୂଜା କହିଲା, "ବେଳ କ'ଣ ବସିଚି କି ବୋଉ !"

ସତେ ତ, ବାବୁଘରମାନେ କ'ଣ ଭାବିବେ ? ଚମକପଡ଼ି ଉଠି ବସିବାକୁ ଚେଷ୍ଟା କଲା, ଅଣ୍ଟା ମୋଡ଼ିବାକୁ କଷ୍ଟ । ଦେହ ଦରଜ, ଗୋଡ ଫୁଲିଛି । ମୁହଁ ବଡକଟେଇ ଆପଣାର ଦେହକୁ ବସି ଦେଖିଲା । ଭାବିଲା ଏତେଦିନକେ ଆଜି କାମକୁ ଗଲା ନାହିଁ । କଣ ହେବ ? ପୂଜା ଚୂଲି କାଳି ବସିଲାଣି ।

'ପୂଜା ?'

'କଣ ବୋଉ !'

'କାହାକୁ କହିଚୁ ?'

'କୋଉ କଥା ?'

'ମୋ କାମର ବଦଲା !'

'ନାହିଁ ତ !'

'ମରିଯାଉଥାଏ କି !'

ଜେମା କହିଲା, 'କେଡ଼େ କଅଁଳକଣ୍ଢା ଝିଅ ଲୋ ମୋ ଦୁଃଖ ବୁଝି-ପକୋଉଚ ! ଆହା, କଣ କରିବ କି !' ଝିଅକୁ ଶୋଧିଲା । ଦେହକୁ କାଟୁଛି, ଶୋଧି ହେଉ ନାହିଁ । କହିଲା, 'ଇଲେ କାହାକୁ ଟିକିଏ ଡାକି ଆଣି ବଟେଇ ଦେ ଲେ, ନଇଲେ ରଟରଟ କରି ଖାଇଯିବେ, ଦେଖିବୁ ।'

ପୂଜା ଚଳୁ ନାହିଁ, ରନ୍ଧା ବସେଇଲାଣି ।

"ଇଲେ ଗଲୁ ?"

"କିଏ ଥିବ ଯେ କାହାକୁ ଯାଇ କହିବ ?"

"ନ କହିଲେ ଭୁ ପାଇବୁ ଲୋ ଝିଅ, ମୋର କ'ଣ ଅଛି, ମୁଁ ଶୋଇଲି ।"

ସତକୁ ସତ ପୁଣି ଲମ୍ବ ହୋଇ ଶୋଇ ପଡ଼ିଲାଣି ତା ବୋଉ । ପାଗଳ ପରି ବେସ୍ତ ହେଉଚ, ଭାଲୁ ପରି ଘୁସୁରୁଚ । ପାଖକୁ ଯାଇ କଅଁଳେଇ ପିଠିରେ ଆଉଁସିଦେଲା ବେଳକୁ ଚମକିପଡ଼ି ଜେମା କହିଲା, "ଆଃ, ସେଠି ହାତ ଦେ ନା, ହାତ ଦେ'ନା ।"

ପୂଜା କହିଲା – କେମିତ ଲଗୁଚ ବୋଉ ?

"ନା, ବଳେ ଗୁଡ଼ିଯିବ, ବଳେ ଭଲ ହୋଇଯିବ ଯେ ! କେମିତ ଟିକିଏ ଗରମ ଗରମ କଣ ପିଇବାକୁ ହନ୍ତା କ ?"

"ଗୋଲମରଚ ଗରମ ପାଣି" – ଶୁଣିଥିଲା, ତା'ର ଯେତେବେଳେ ଯାହା ହୁଏ, ମା ଏଇଆ ବିଧାନ କରେ । ପୁଣି ମା ଖେଙ୍କି ଉଠିଲା । ପୂନି ବୁଝିପାରିଲା, ମା'ର ଜଣାପାଣି ଦରକାର । କାହୁଁ ପାଇବ ? ଯାହାର କାରବାର ସେ କରେ ସେ ଭୁଝେ । ପଇସା ମାଗିଲେ ମା ଚିଡ଼ିବ । ଗେହ୍ଲେଇ ହୋଇ ପୂନି କହିଲା, 'ଟିକିଏ ଚା' କରିଦିଏ, ମା ।' ପାଟିକି ପିତା କରି ଜେମା ଶୋଇ ରହିଥାଏ । ପୂନି ଠଣାଯାକ ଅଣ୍ଡାଳିଲା, ପଇସିକିଆ ଚାହା ପୁଡ଼ିଆର ହଳଦିଆ କାଗଜଖୋଳ ପଡ଼ିଛି । ଚା' ନାହିଁ । କିଛି ନ କହି ପଦାକୁ ଚାଲିଗଲା । ମା'ର ଦେହ ବେମାର ହୋଇଛି, କିଛି ହେଲେ ଗୋଟାଏ ସେ କରିବ । କଣ ତା'ର ଘୋଟିଛି । ଗ୍ରେଟ କଥାକୁ ଘୂରେଇ ଭୂରେଇ କଳ୍ପନାର ନାଲି ମେଘ ସେ ଠିଆରି କରେ, ଭାବି ଭାବି ଅଳସେଇ ହୁଏ । ଆପଣା ମନର ଧାରଣାର ଆଲୁଅରେ ଜଳକା ହୋଇ ପୁଣି ବସିପଡ଼େ, କିଛି କରିପାରେ ନାହିଁ ।

ମା ଶୋଇଛି । ମା ବଦଳରେ ମା ସେ ନକେ ।

କ'ଣ କଲେ ଗୋଗୋଛ ବାଡ଼ିଆ ମାଡ଼ର ଦରଜ ମଜବି ଭୁଲେ ?

କ'ଣ ହେଲେ ମଣିଷର ମନ ଏଡ଼େ ନିଷ୍ଠୁର ହୋଇଯାଏ ? ଗୋରୁ ଗାଈ ପରି ମଣିଷକୁ ସେ ବାଡ଼େଇପାରେ ! ନୂଆବାବୁ ଘୋଡ଼ା ଚଢ଼ା ଶିଖୁଛି । ଅବିନାଶବାବୁଙ୍କ କୋଠାଘରେ ବଡ଼ ଝରକା ଖୋଲିଛି । ବଲେଇକୁ କାଖରେ ଧରି ମୁରୁକିହସା ଦେଇ ମାନ ଘୋଡ଼ା ଚଢ଼ା ଦେଖୁଛି । କୋଠାର ବଣ । ଦୌଲତର ବୋଝ । ଖୁସି ଖୁସି ମଣିଷ । ନା, ତାକୁ ଦେଖିବାକୁ ବେଳ ନାହିଁ । ତା'ର ଚା' ଦରକାର ।

ସାହିମୁଣ୍ଡିଆ ଦୋଟି ଗୁରୁବେଟି ଦୋକାନ । ପଇସା ନାହିଁ, ଚା' ଦରକାର । ଏତେବେଳେ ଏ ସାହିରେ ବେପାର ଭଲ ଚାଲେ ନାହିଁ । କେତେ ଦୋକାନ ପଡ଼ିଛି । ସାହୁଘର ଦୋକାନରେ ଗୋଦଶ ବୁଢ଼ୀ ବସିଛି । କଳାହୁଡ଼ୀଟା, କାଳ ଦେବ ନାହିଁ । ପୂନି ଆଗକୁ ଚାଲିଲା । ସବୁ ଗଳି ଭିତରେ ସେପାଖର ସଡ଼କ ଆଡ଼କୁ । ଦହି ପିଆଜର ବାସ୍ନା, ଚାଲିଗଲେ ଭୋକ ମରେ । ସେ କରର ଦୋକାନରେ ଭିଡ଼ ଲାଗିଛି । ପୂନି ପାଖକୁ ଚାଲିଲା । କିଏ ଜଣେ କହିଲା, "ହେ ଟୋକା, ବଲେଇ ଛୁଆ ପରି ଗଳାଯାଉଚୁ କୁଆଡ଼େ ? ଛୁଇଁବୁ, ଆଡ଼େଇ ହୋଇ ରହ ।" ଭିଡ଼ର ମୁହଁ ଅରେ ତା ଆଡ଼କୁ ବୁଲିଯାଇ ପୁଣି ସଜାଡ଼ି ହୋଇଗଲା । ମୁହୂର୍ତ୍ତିକର ସେ ନାକ ଟେକା, ଭ୍ରୂଲତା ଟେକା, ଅଧ ପରିଚିତ ସେ ମେହେନ୍ତାଣୀ ଟୋକାଟା । ଗହଳ ଭିତରେ ପାଟି କରୁଥାଏ, "ପଇସାକର ଚା', ପଇସାକର

ଚା', ହାଣ୍ଡି ବସେଇ ଦେଇ ଆସିଚ।" ଆଉ ଜଣେ କହିଲା, 'ହାଣ୍ଡି ନା ପଲମ ?' ଆଉ ଜଣେ, 'ଭାରି ଚା'ଖୋର ହେଇଚରେ ଟୋକା !'

ନାଟଶ୍ଚ ଅନ୍ତ। ସିଠିର ଦରଜ ଏଠି ବୃଦ୍ଧାପଙ୍କେ ନାହିଁ।

"ପଇସାକର ଚା'—"

ଦୋକାନୀ କହିଲା, "ଦେ, ପଇସା ଦେ।"

"ଘ୍ରଣ ଖାଉଚ କାଲିକ ଆଣି ଦେବ—"

ଗୁଡ଼ାଏ ଅସଭ୍ୟ ଗାଳି। ତର୍କି ହନ୍ତୁଙ୍କେଇ ଦୋଧମାଙ୍କଡ଼ ପରି ଦୋକାନୀ ଖେଙ୍କି ଉଠିଲା। "ଦୂର୍—ଦୂର୍...ଯା, ଉଠ୍ ବାହାରୁ..." ତାର କୁଷର ଫେର ଗୋଟାଏ ଓଳିଆ ପରି। ତାର ବ ଗୋବର ଅଚ୍ଛୁ। ମୁହଁ ଶୁଖେଇ ବୁଲିପଡ଼ିଲା ସରକ ଦୋକାନୀର ପସରାରେ ଝଣ୍ କନା ଜଏ ପଇସାଟାଏ ଫୋପାଡ଼ି ଦେଲା। କହିଲା, "ଲିଅ, ପଇସା ପାଇଲ ତ, ଦଅ ଚା' ଦେଇଦଅ।" କାନ୍ଧରେ କଏ ହାତ ମାଡ଼ିଦେଇ କହିଁଲେଇ କହିଲା, "ରହ, ପଳେଇ ଯାଉଚ କାହିଁକି ? ଚା' ଦବ ନବୁ ପର..."

ଧୋବ ଦାଢ଼ି ଝୁଲେଇ ଧନୀବୁଢ଼ା ଠିଆ ହେଇଚ। ଅମ୍ଳିନ ପାଣି ପରି ନଷ୍ଟଳ ସୌମ୍ୟ ମୁହଁ। ଦୋକାନୀ ଚା' ଦେଲା। ପୁନ ହାତକୁ ବଢ଼େଇ ଦେଇ ଧନୀବୁଢ଼ା ପଚାରିଲା, "ପଇସା ନେଇ ମାଲ୍ ବିକୁଚ, ଗୁଣ୍ଡ ସୁଖ କାହିଁକି କରୁଚ ହୋ..."

"ଆରେ, ଷଣ୍ଢ ପରି ମାଡ଼ିଆସୁଚ। ଅଇଚ୍ଛୁ ପସରା ମୋର ମାରି କରିଥାନ୍ତା ! ଦେଖିଲାବେଳକୁ ମାଗେଣା ଖାଇବାକୁ ମନ ! କହନ୍ତୁ ନାହିଁ, ଛାଡ଼ି ଦଅନ୍ତୁ... ?"

"ଏଁ, କଣ କହିଲ... ?" ଧନୀବୁଢ଼ାର କଜଳ ପିନ୍ଧଲ ପରି ହସିଲା ଆଖି ମୁହୂର୍ତ୍ତିକେ କୁହୁଳି ଉଠିଲା। "କ-ହୋ, ମଥାକୁ ପିତ୍ତ ଉଠିଚ କ ?..."

ଗରାଖି ପାଟି କଲେ, "ହଉ, ହଉ; ଯାଅ, ଯାଅ। କାମ ତ ହୋଇଗଲା... ଆଉ କାହିଁକି..." ଲୋକେ ଆଡ଼େଇ ଦେଲେ।

ଲେଉଟି ଆସିଲାବେଳେ ଧନୀବୁଢ଼ା ପଚାରିଲା ପୁନକୁ..."କଣ ହେଲା ଝିଅ ! ତୁ କୁଆଡ଼େ ଆସିଚୁ ? ମା କାହିଁ ?"

ପୁନ ତା'ର ମା'ର ଅବସ୍ଥା କହି ଦେଇଗଲା। ଧନୀବୁଢ଼ା ଗୋଟାଏ ହେମନ୍ତ୍। ତା'ର କଜଳପିନ୍ଧା ଗୁହାଟା ଛାତି ତରଳେଇ ଦେଥା କାଢ଼ି ନଏ।

ଗମ୍ଭୀର ହୋଇ ମୁଣ୍ଡ ହଲେଇଥାଏ । "ବରା ପିଆଜ ଦ'ଟା ଖାଆନ୍ତୁ ନାହିଁ କିଅ !" ପୁନ ମୁହଁ ମୋଡ଼ୁଥାଏ । "ଆ, ଆ; ଦଟା ଖାଇ ଥା । ପେଟ ଭୋକ ମୁହଁ ଲାଜ କରି ସୁଖ ନାହିଁ । ମା ଏମିତ, କେତେବେଳେ ଚୁଲ୍ଲୀ ଜଳବ କେଜାଣି । ଚାଲ୍ ଆ ।"

ପାଖ ଦୋକାନରେ ବସି ଉଷୁମ୍ ଉଷୁମ୍ ବରା ପିଆଜ । କେଡ଼େ ଭଲ ଲୋକ ଏ ଧନୀବୁଢ଼ା ! କୃତଜ୍ଞତା ଉଛୁଳି ଆସୁଥାଏ । ଭାବୁଥାଏ ତା'ର କଥା । କାହାର ଉପକାର ବିନା ଅପକାର ସେ କରେ ନାହିଁ । ତଥାପି ଲୋକେ ଗୁନ ଗୁନ ହୋଇ ତା ବିଷୟରେ କୁହାକୁହି ହୁଅନ୍ତି । ଧନୀବୁଢ଼ା ନାଁ ପଡ଼ିଲେ, କେତେ ଅନ୍ଧାର କଥା ଶୁଣାଶୁଣିରେ ଡର ଦେଖାଏ । ଭୁଡ଼ାଲୋକଟିଏ । ସରଳ, ଦୟାବନ୍ତ । କଣ ଅଛି ସେଠି ?

ପୁନ ଭାବୁଥାଏ, ଲୋକେ ଭଲ ନୁହନ୍ତି । ଦୁନିଆଟା ନିନ୍ଦୁକ, ହିଂସୁକ । ମୁସ୍ ମୁସ୍ ଲାଗୁଛି ଉଷୁମ ବରା ପିଆଜ । ଓଃ, କ ଭୋକ !

'ଖା ଟା; ଯିବୁ ତ ଘରବାର କାହିଁକ ?'

ବୋଉ କାହିଁକ ଚଡ଼େ ? ଲୋକେ କାହିଁକ କହନ୍ତି, ଧନୀବୁଢ଼ା ଘୋର ବୁଦ୍ଧି ଦଏ, ଟୋକାଙ୍କ ମୁଣ୍ଡ ବିଗାଡ଼ାଏ । କୁଆଡ଼ର ସେ, କ ଜାତ, କଣ ତା'ର ପେଷା, କଏ ଜାଣେ ? ପୁନ ପାଣି ପିଇ ସାରଲଣି । ବୋଉ ପାଇଁ ଦଟା କାନରେ ବାନ୍ଧଲଣି, ଧନୀବୁଢ଼ା ବସି କଣ ଭାବୁଛି । ବଚନ ଦଣେ; ଠିକ୍ ଭଦ୍ରଲୋକ ପର । ତଥାପି ଆପଣାର ଜାତ ପର ମିଶିରହିଛି ଏ ପଲ୍ଲୀର ସମସ୍ତିଙ୍କ ସାଙ୍ଗରେ । ପେଟ ପୂରବାର ହାକୁଟି ମାର ସାର ପୁନ ଭାବଲା···ହୋଇଥିବ ବା ଲୋକେ ଯାହା କହନ୍ତି । ତା'ର କ ଯାଏ ? ଧନୀବୁଢ଼ା ତାକୁ ଦୟା କରଛି ।

'ଘର ବଥା କରୁଛି, ନାହିଁ ? ଆ ମୁଁ ଔଷଦ ଦେବ, ବୋଉକୁ ଦେଇଦବୁ ।' ଅଧବୋତଲେ କ'ଣ । ଠିପି ଲଗାହୋଇଛି । 'ନିଅଟି ନେଇ ଯା । କପଡ଼ା ଘୋଡ଼େଇ ପକା । ଠିପି ଖୋଲିବୁ ନାହିଁ ଟି, ଗୁଣ ଉଡ଼ିଯିବ ।'

ମଦ ଗନ୍ଧ । ପନ୍ନକୁ ଅନେଇଲା, ଧନୀବୁଢ଼ା ଚାଲିଯାଉଛି ।

ଢକ୍ ଢକ୍ କର ସବୁଯାକ ପିଇଦେଇ ଖୁସି ହୋଇ କେମା କହିଲା···'ଆଃ ଏଥର ଭଲ ହୋଇଯିବ ।' ପୁନ ପଚାରଲା 'ଭଲ୍ ଔଷଦ ?' କେମା ହସିଲା । କହିଲା···'ଜଣେ ଯାଚକର ଦେଇଚ କ'ଣ ନାକେରା ହୁଅନ୍ତା ?' ପୁନ ଘୁ ବସେଇଲା । ଘିଳିବାକୁ ଯୁଗ ପାହେ । କଷାପାଣିରେ ଗୁଡ଼ ଟିକଏ, ଗଣ୍ଡାଏ ମୁଢ଼ି । ମେହେନ୍ତର ପାଚ ଗୃହା, ମଇଳା ଗ୍ଲାସ୍ ଢ଼ି, ଭୋକ ବୁଡ଼େଇ ଦଏ; କାଲୁ

ଚାଲି ବେଳ ଏ ନୁହେଁ, ବହୁତ ଆଗରୁ, କାମ କରିଯିବା ପୂର୍ବରୁ । ଔଷଧ ଖାଇ, ଗୁହା ଖାଇ, ପିଙ୍କା ଖଣ୍ଡିଏ ଲଗେଇ କେମା ଲ୍ଲେଟେଇ ଲ୍ଲେଟେଇ ଯାଇ ପିଣ୍ଡାରେ ବସିଲା । ସବୁ ସହୁ ହୁଅନ୍ତା, କେବଳ ପାଦର ଗଣ୍ଠିଟା ଫୁଲିଯାଇ ଅଚଳରେ ପକେଇଚ । ଘର ଭିତରେ ପୁନ ଯେଁ ଯେଁଇରେ ଲାଗିଥାଏ । କେମା ଗପୁଥାଏ । ମନ ଖୁସି ଅଛି । ଦେହ ଓଟାଣ ହେଲେ ବ ମୁଣ୍ଡ ଭିତର ଉଡ଼ିଲା ପରି ।

କେମା କହୁଥାଏ—"ମନ ଟାଣ କରିଥିଲି, ତୋ ପରି ଝିଅ, ତତେ ପାଇଟିକି ପଠେଇବି ନାହିଁ ବୋଲି ଢ଼ଳପ୍ କରିଥିଲି । ସବୁ ଉଜୁଡ଼ି ଯାଉ, ଦୁନଆ ବୁଡ଼ିଯାଉ, ଏମିତି ଫୁଲ ପରି ତତେ ସାଇତିଥିବି । ଘରେ ରହିବୁ, ବାହା ହବୁ; ତେଣିକି ତୋ କର୍ମ । ମୋ ଦଶା ତତେ ନ ହଉ । ସେତେ ମନ କଲେ କଣ ହେବ ? ଆଜ ଯିନା ଦନକର କଥା, ଏମିତି ଯଦ ଫେର୍ ମୁଁ ପଡ଼ିଯାଏଁ, ବିଛଣାରୁ ନ ଉଠେଁ ! କାହାକୁ ଡାକିବି ଯେ ମୋ କାମ କରି ମୋ ଘର ରୁଲେଇବ ? ଦେଖ ତ କପାଳ !"

ଘଡ଼ିଏ ରହି କେମା ଫେର୍ କହିଲା—"ସେମାନେ କଣ ଛାଡ଼ିଦେବେ ? କାମ ନ କରି ଖାଇବାକୁ ଦେବେ ? ଆଜ ଦନକ ପଡ଼ିଆ କଲି ଯେ, ଦେଖିବୁ କେମିତି ତେଣ୍ଡା ଉଠିବ । ବାର ପ୍ରକାର କରି ଝିଙ୍କାସିବେ । କଣ କରିବା, ଆମେ ପରି ଗରିବ ଲୋକ ! ସାହା ଅଛି ନା ବଳ ଅଛି ? ମଲି ଲାଗିଲେ ଅଛୁଁଆ ଜାତି ବୋଲି କେହି ପାଖ ପୂରେଇବ ନାହିଁ । କାମ ମିଳିଲେ ସେଇ ଲ୍ଲେଟ କାମ । ଧିଅ ମେହେନତ ବେଶି; ପଇସା ଅଳପିକିଆ । କପାଳକୁ ଆଦରି ଆମର କାମ ସେଇ···ଯାହା ଆମ ସମସ୍ତେ କରନ୍ତି । କଣ ଆଉ କରିବା !"

ପୁନ ଭାବିହେଲା···ମା'ର କାମ, ତାର ଭବିଷ୍ୟତ ।

ପାଇଖାନାରୁ ପାଇଖାନା । ଗନ୍ଧ, ଅସନା, ନଳା ପଙ୍କ ।

ମା'ର କଥାର ଗୋଟାଏ ମତଲବ ଅଛି କି ?

କହିଲା···"ଗୋଡ଼ ଦରଜ ହେଇଚ, ଫେର୍ ଟିକିଏ ଉଷୁମ ସୋରିଷ ତେଲ ମାରିଦିଏ ବୋଉ । ନଇଲେ କଣ କୋଉଠୁ କରିବା ବଡା । କାଲି ସକାଳକୁ ଦେହ ଭଲ ହୋଇ ଯାଇଥିବ ।" କେମା ଉତ୍ତର ଦେଲାନାହିଁ । ଦୂରକୁ ଅନେଇଁ ବସିଥାଏ । ପୁନ କହିଯାଉଥାଏ···ଉତଲା ସୋରିଷ ତେଲ, ଓଦା ବାଲିପଟି; ସେତିକି ତାର ଜାନ ବା ! କେମାର କାନରେ ପଡ଼ୁ ନ ଥାଏ । ଏକାଦୃଷ୍ଟିରେ ସେଇ ଗୋଟାଏ ବାଟକୁ । ତରତର ହୋଇ ଉଠିପଡ଼ି ଘର ଭିତରକୁ ପଶିଗଲା । କହିଲା···'ମୁ କଣ କହୁଥିଲି ? ଦେଖିଲୁ, ମଲେ ବି ଛାଡ଼ିଦେବେ ?"

ପୁନି ଗୁନିଆଁ ହେଲା । "କଏ ଆସୁଛୁ ବୋଉ ?"

କୋବ ମୂଲଟା ଏ ପର୍ଯ୍ୟନ୍ତ ଦାଣ୍ଡ ଅଗଣାରେ ଚତ୍ରପଟାଂ ହୋଇ ପଡ଼ିରହିଚ । କାଲେ କେହି··· ! "ମୁ ଶୋଇପଡ଼ୁଚି ଲୋ ପୁନି । ସେହି ମୁଁ, ସେ ମୁକସିପାଲଟି ମିସ୍ତ୍ରୀଟା । ନୂଆ ସୃଜଣ ପାଇଚି ନା, କାମ ଦେଖେଇବାକୁ ଖାଲି ଘର ଘର ଯାଇ ବୁଲି ଲଗିଚ । କହୁଦବ୍···ମୋ ବୋଉକୁ ଜର । ବୁଝିଲୁ··· ?

ଝିଅ ବୁଝିଲା କି ନାହିଁ, ଜାଣିବାକୁ ସେ ଅପେକ୍ଷା କଲା ନାହିଁ । ଘୁପୁର ଘୁପୁର ଶୋଇପଡ଼ି ଖାଲି ଘୁପୁରିଲା । ଦେହ ସତେ କି ଫାଟିପଡ଼ୁଛି !

ବୋଉ ଛଟା ଗାଳୁଛୁ । କାହିଁକି ବୋଉ ମିଛଟାରେ ଜରର ନା ଧରିଲା ? ସେଇ ପରି କହେ ମିଛରେ କହିଲେ ସତରେ ଫଳେ । ଅସାର କଥା କହିବା'ର ନୁହେଁ । ତାର ବୋ'ଉକୁ ଜର ହେବ । ସେ କଳ୍ପନା କରିପାରେ ନାହିଁ । ବୁଝି ହେଲା ଠନରୁ ଦେଖି ଆସିଛୁ, କେବେ ସାମାନ୍ୟ ଅସୁଖ ହେବା ଛଡ଼ା ବୋଇଚ କିଛୁ ହୋଇ ନାହିଁ । ସକାଳୁ ଉଠିଛୁ, କାମ କରି ଯାଉଛୁ । ପଇସା ଆଣି ପୋଷିଛୁ । ଖଟିବା ଆଉ ପୋଷିବା ପାଳିବା ଛଡ଼ା ବୋଉମାନଙ୍କର ଆଉ କାମ ନାହିଁ ବୋଧହୁଏ ।

ସତେ ସତେ ବୋଉକୁ ଜର ହେବ ଯଦି !

ଏତେଦିନକେ ଭଲ ମନରେ ବୋଉ ସାଙ୍ଗେ ଗପିବାକୁ ବେଳ ମିଳିଥିଲା । ସ୍ୱତ ଫୁଟୁଛୁ । ସାହି ଲୋକେ କାମକୁ ଗଲାବେଳେ ଆଜି ତା ମା'ର ଛୁଟି ଥିଲା । ପୁଣି ବୋଉ ଶୋଇଲାଣି । ପୁଣି ସେ ଝକଲ ଚଳା'ର । ତେଣୁ ବଡ଼ ବଡ଼ ପାହୁଣ୍ଡ ପକେଇ ଧପାଲି ଆସୁଛୁ, ମିସ୍ତ୍ରୀଟା । ଯାହାକୁ ବୋ'ଉ ଡରେ, ପିଲାଟାର କେତେ ବା ବେସାତ୍ର ! ପାଖ ହୋଇ ଆସୁଛୁ ସେ । ପୁନି ଶଙ୍କି ଶଙ୍କି ଡାକିଲା···'ବୋଉ !' ଜବାବ୍ ନାହିଁ । ତେଣୁ ରଡ଼ରଡ଼ିକା ମିସ୍ତ୍ରୀ ଆସିଲା···କେମା ମେହେନ୍ତାଣୀ ! କେମା ମେହେନ୍ତାଣୀ !

ପୁନି କହିଲା···କାହିଁକି ଖୋଜୁଚ ?

କାହିଁକି ଖୋଜୁଚ ? ଭଲ ଗୁଲଗିରେ କଥା କହୁଚ୍ ଲୋ ଟୋକି ! କାହିଁଗଲା ସେ ? କେମା ମେହେନ୍ତାଣୀ ! ଘରୁ କେମା କୁହୋଉଚ । ପୁନି କହିଲା ଶୁଣୁନା, ମୁଁ କ'ଣ ମିଛ କହୁଚ !

"ମିଛ ନୁହେଁ ସତ ! କାଲି ତ କାମ କରି ଆଇଲା, ଆଜି କ'ଣ ଘୋଟିଗଲା ? କ'ଣ ହୋଇଚ ?"

ପୁଣି କହିଲି—ଜର ହେଉଚ ।

ମିଛ କଥା । ଖାଲି ବହାନା, ଖାଲି ପେଟଖିଆ । ଏମିତି ଜଣେ ଜଣେ କାମ ବନ୍ଦ କରି ଘରେ ରହିବେ, ସାହେବଙ୍କ ଭୂଲୁଥିବ ମୁଁ ରହିଲି ହେଇ, ନୁହେଁ ? ଭଲ ଦଶା ଅଛୁ ତ ବାହାର ଆ ଜେମା ମେହେନ୍ତାଣୀ; ଗୃଲି ଆ, ମୁଁ ଠିଆ ହେଇ ରହିଲି । ଜବାବ୍—କେବଳ ଘୁମୁରିବା । ଜେମା କର୍ମିଲି ପରି କୁଣ୍ଢେଇ ଲାଗିଛୁ; କଥା କହୁ ନାହିଁ । ପୁଣି କହିଲି—ଶୁଣୁନା ବାବୁ, ସତ ଜର ହେଉଚ । କ'ଣ କରିବ, ସବୁଦିନେ ତ ଯାଉଥିଲି—

ହଉ, ନ ଗଲେ ନ ଯାଉ । ଆଜକାର ଦର୍ମା କଟା ହେବ । ଫେର୍ ବଦଲା ନ ଦେଇ ଏମିତି ଘରେ ରହିଗଲେ, ଗୃକିରିରୁ କାଢ଼ି ଦିଆଯିବ । ତୋ ମା'କୁ କହିଦବୁ । ମୁଁ ଯାଉଚ ।

ମିସ୍ତ୍ରୀ ଅଧେ ବାଟ ନ ଯାଉଣୁ ପୁଣି ଫାଇଁ ଫାଇଁ ହସିଲି । ତା'ର ଅଭିନୟ ସେ ଭଲ କରିଛୁ । ଡାକିଲି—ବୋଉ ! ଜେମା ସେମିତି ହେଉଛୁ । ପୁଣି କହିଲି—ସେ ଗଲାଣି ମ, ଉ'ଠୁ । ଜେମା ଜବାବ୍ ଦେଲି ନାହିଁ । ଦେହ ଅସୁସ୍ଥ ଥିଲି ପରି ସକେଇ ହେଇ ଲାଗିଲି ପଡ଼ି ପଡ଼ି ।

କେତେବେଳ ଗଲି । ଗ୍ରେଷେଇବାସ ସାରି ପୁଣି ଗଲି ବୋଉକୁ ଉଠେଇ । "କେତେବେଳଯାକେ ଶୋଇଥିବୁ ବୋଉ, ଉଠୁ ।"

ଉପ୍ପ୍ର ମ ନିଦରେ ବୋଉ ଶୋଇଚ । ହାତ ମାରିଲି । ଲୁଗାକାନିକୁ ଦେହ ଉପରକୁ ଟାଣି ନେଇ ଜେମା ଆହା-ଉହୁ ହେଲା । କଷ୍ଟରେ କହିଲା, ରୁ ଖା ଲେ; ମୋ ଦେହ ଭଲ ଲାଗୁ ନାହିଁ ।

□ □

## ପାଞ୍ଚ

ସେମାନେ ଶୋଇଛନ୍ତି—ବଡ଼ ସହରର ଲୋକେ ।

ଆପଣା ସମସ୍ତର ହାତଗଢ଼ା ସଂସ୍କାରରେ ଗୁଡ଼େଇ ହୋଇ ଶୋଇ ରହିଛନ୍ତି ସେମାନେ । ସ୍ୱପ୍ନ ଦେଖୁଛନ୍ତି ସହର ଜଙ୍ଗଲ । କେବଳ ସହରର ମଣିଷର ବ୍ୟକ୍ତିତ୍ୱର ପ୍ରତୀକ ପରି ଜକାଜକ ବଡ଼ ବଡ଼ କୋଠା । ପରସ୍ପରଠୁଁ ଭିନେ, ମହାରୂପା । ଚଳନ୍ତି ସମସ୍ତ ମଝିରେ ଇଟା ସୁର୍କିର ବିସ୍ମୃତ ଅଚଳାନ୍ତ ଉଞ୍ଚପଣ । ଜଙ୍ଗଲ ଔଦ୍ଧତ୍ୟ । ମୁହାଁମୁହିଁ ସ୍ପର୍ଦ୍ଧା । ଗୋଟିକିଆ ମଣିଷର ସାନ ସାନ ଦୁର୍ଗ ।

କୋଠାପଣରେ ସହରର ଲେଖା, ମଣିଷପଣ ବାରି ହୁଏ ନାହିଁ ।

କୋଠା ପରେ କୋଠା, ଗଢ଼ି ଲାଗିଛନ୍ତି ଗଢ଼ି ଲାଗିଛନ୍ତି । ଏହି ସହରର ମୂଳଦୁଆ ଉପରେ ଅଜ୍ଞାତର କେତେ ଲୋକ ଗଢିଥିଲେ । ଶ୍ରେଷ୍ଠୀ ଥିଲେ, ଶ୍ରେଣିକ ଥିଲେ । ସେମାନେ ବି ଗଢ଼ିଥିଲେ ଚିରକାଳକୁ । ଭୁଷୁଡ଼ି ପଡ଼ିଛି । ପୁଣି ଗଢ଼ି ଲାଗିଛନ୍ତି । କାଗା ପାଇଁ ଭଡ଼ା ଓଟର, ଛଡ଼ାଛଡ଼ି । ବଡ଼ିତ ପାଇଁ ଟଣା ଓଟର । ସହରର ବଣୁଆ ଅଞ୍ଚଳ, ଅସନା ଅଞ୍ଚଳକୁ ବି ଧାଇଁଲାଗିଛି ଇଟାର ଫୋପଡ଼ ମାଳ ମାଳ । ମଶାଣିତଳ ନଈର ବାଲି ।

ରକ୍ତମାଂସର ମଣିଷର ପଥୁରିଆ ଖିଆଲ୍ । ସଜ୍ଜି ଲାଗିଛନ୍ତି, ଚଢ଼ି-ଲାଗିଛନ୍ତି ।

ଆକାଶରେ ଅନ୍ଧାର । ଥମ୍ଭିଲା ପବନରେ ଭଙ୍ଗା ମନ୍ଦିରର ହସ । ହଜିଲା ଯୁଗର ଧୂଳି ବୋଲି ହୋଇ ବରଗଛ ମୂଳର ମଶାଣି ଅପନ୍ତରା ଧ୍ୟାନମଗ୍ନ । ନଈ ଧାରର ଅବିରଳ ଗତି ।

ତାହାରି ଧଡ଼ିରେ ଇଟା ପଥରର ମଣିଷ ବସତି ବର୍ତ୍ତମାନର ।

ସହର ଶୋଇଛି ।



## ଛଅ

ସକାଳ ହୋଇଥାଏ ।

ଡାକବାଲା ପରି ଖବରବୁହା ସକାଳ ।

କି ଖବର ?

"ଶୁଭ କାଉ ଶୁଭେ ରଡ଼ି, ଉଡ଼ି ଯା ଚୂଲି ଯା, ଉଡ଼ି ଯା ଚୂଲି ଯା—"

ଯଶୋଦା କାଉକୁ ଘାକୁଲେଉ ଥାଏ । ଯଶୋଦା ଅବିନାଶବାବୁଙ୍କ ପୋଇଲି ।

ଉପର ମାହ୍ଲାରେ କବାଟ ପଡ଼ିଛି । ବଡ଼ଲୋକ ଘର । କି ଡର ଅଛି ସକାଳୁ ଉଠିବାକୁ ?

କାଚୁକାଯାଂରେ ଭର୍ତ୍ତି ହୋଇଛି ଉପର ପିଣ୍ଡାର ବାଡ଼ା । ଟବ ହୋଇଥିବା କୁଣ୍ଡ ଭିତରେ ସେବତି, ଗୋଲପ । ଶିଳ୍ପୀର କଳ୍ପନାରେ ତିଆରି ସୁନ୍ଦର ବଡ଼-ଲୋକର ଘର । ନେଳିଆ ଦିଶୁଛି ସକାଳ । ଏଠି ପ୍ରାଣକୁ ଆରାମ୍ ଅଛି ।

ଗ୍ରୁଷ୍ମୂଣୀ ମୁଠାଏ ଧରି ଯଶୋଦା ଠିଆ ହୋଇଥାଏ । ଦାନ୍ତ ଘଷିବାକୁ ପାଣି ଥୁଆ ହୋଇ ସାରିଛି କେତେବେଳୁ । ଗାଧୁଆଘର ପ୍ରସ୍ତୁତ ଅଛି । ତଳ ମହାଲରେ ଦୁଧ ସିଝେଇ, ଜଳଖିଆ ତିଆରି କରି, ଗରମପାଣି ବସେଇ ଅପେକ୍ଷା କରିଛି ପୂଜାରୀ । ତା'ର ଗାଧୁଆପାଧୁଆ ସରିଛି, ଶ୍ଳୋକ ପଢ଼ୁଛି, ଗୁଣୁ ଗୁଣୁ ଶୁଭୁଛି ।

ଆଉ ଉପରେ ଯଶୋଦା କାଉଟା ଘାଙ୍ଗେ ଲାଗିଛି—"ଉଡ଼ି ଯା, ଚୂଲି ଯା, ଶୁଭେ ରଡ଼ି, ଶୁଭ ବାରତା ଆଣ ।" ତା'ର ଅଭ୍ୟାସ ।

ତା ପାଇଁ କାକପୋଇର ବାରତା ହେଉଛି ଘର ଓଳେଇବୁ, ବାସନ ମାଜିବୁ, କାମ କରିବୁ ! ଗାଳି ମୁଚୁଲେଇବୁ ନାହିଁ, ମାଡ଼ ମୁଚୁଲେଇବୁ ନାହିଁ । ହୁସିଆର ଥିବୁ ମା ଯଶୋଦା !

ଧଡ଼୍ କରି କବାଟ ଫିଟିଲା । ଭିତରୁ ଏକାନଟକେ କଲିକଲା ପାଟି—

"କି-ହୋ ।"

"ମଲି ମୋର ! ସକାଳୁ କାହା ମୁହଁ ଚାହିଁଲି ବା ! ସେତ ଅଲକ୍ଷଣା ମଣିଷ କୋଉଠିଥାଏ, ମଣିଷ ଉଠିଲାବେଳକୁ ଓର ଭଣ୍ଡି ମୁହଁ ଉପରେ ଠିଆ ହୁଏ—!"

ଫାଲୁ ଫାଲୁ ମୁହଁ, ମୁଣ୍ଡବାଳ ଫିଟିପଡ଼ିଛି, ମୁହଁରେ ଶୁଖି ଲାଗିଛି ଛଦ ବେଳେ ପାନଛେପ । ରାତିରେ ପାଟିରେ ଯାକିଥିବା ପାନର ଶେଷତକ ପାକୁଳି କରି କେ ବାବୁଆଣୀ ବାହାରିଲେ । ଘରର ମାଲିକାଣୀ—ସଂସାରର ଲକ୍ଷ୍ମୀ । ଅବିନାଶ-ବାବୁଙ୍କ ସ୍ତ୍ରୀ ।

ପାଟିରେ ପାନପନ୍ଦା ସାବ୍‌ନା ରହେ । କେବଳ ପାନରସ ନାଲିଆ କ ହୋଇ, ହୋଇଥାଏ କାଳିଆ । ମୋଟାସୋଟା ମଣିଷ, ଗୋରା ଟହ ଟହ ପୂରିଲ ପରି ମୁହଁ । ସୁସ୍ପଷ୍ଟ ଅବୟବ । ଗୃହିଣୀ ବର୍ଷ ସେ ଦେହକୁ ପ୍ରତିଷ୍ଠା ଦେଇଛି

ସମ୍ଭ୍ରାନ୍ତ ଭଦ୍ରମହିଳା, କୁଳୀନା, ଭାଗ୍ୟବତୀ ।

ଲୋକେ ଦଣ୍ଡବତ ହୁଅନ୍ତି । ଅବିନାଶବାବୁ କଥା ମାନ ଚଳନ୍ତି । ପୁରୋହିତମାନେ ଆଉ ଠାକୁର ମନ୍ଦିରମାନଙ୍କର ସେବକମାନେ ଆଶୀର୍ବାଦ କରନ୍ତି—ସେ ଆହୁରି ମୋଟା ହୁଅନ୍ତୁ, ଆହୁରି ପଇସା ରଖନ୍ତୁ, ଆହୁରି ତାଙ୍କର ଭଲ ମାଡ଼ିଯାଉ । ଏକା ଆଶୀର୍ବାଦ—କେହି ସଂସ୍କୃତରେ, କେହି ଓଡ଼ିଆରେ, କେହି ବା ହିନ୍ଦୀରେ ।

ଭୁଇଁରେ ଦମ୍ଭପାଦ ମାଡ଼ି, ଗୃହ ଝଣକେଇ, କୋଳାହଳ ଉଠେଇ ବାବୁଆଣୀ ତଳକୁ ଚାଲିଗଲେ । ଯଶୋଦା ଆଡ଼େଇ ହୋଇଗଲା । ଶୁଭ କାହିଁକି ଛିଡ଼ିଗଲାଣି । ଯଶୋଦା ଚାଲ୍ ଘର ଝାଡ଼ୁ କରି ।

ସେ ଅଲକ୍ଷଣୀ—ସତ ।

ଆଜି ସେ ଅପବାଦର କିଛି ମୂଲ୍ୟ ନାହିଁ । ଆଜି ସେ ଆପତ୍ତି କରିବ ନାହିଁ । ପିତୃକୁଳ, ଶ୍ୱଶୁରକୁଳର ସମ୍ପତ୍ତି ଖାଇ, ମଉଆଳ ଯୌବନର ବିଷ କଣ୍ଠରେ ଧରି ସେ ଅପେକ୍ଷା କରିଥିଲା । ଅବିନାଶବାବୁ ଓଟାରି ଯେଉଁ ଆସିଥିଲେ । ଭାବିଥିଲା, ବଡ଼ଲୋକ ପୁଣି ଆଣିଦେବ ହଜିଯାଇଥିବା ସ୍ତ୍ରୀପଣର ମର୍ଯ୍ୟାଦା । ଅବିନାଶବାବୁ ଶଯ୍ୟାରେ ଚାକରାଣୀ ପାଇଲେ । ଚାକରାଣୀ ପାଇବା ବଡ଼ କଷ୍ଟ । ଲୋକେ କହିଲେ ସେ ବୁଦ୍ଧିମାନ୍ । ନ ହେଲେ କି ସାମାନ୍ୟ ଚାକରିରେ ମଣିଷ ଦୌଲତ ଅରଜେ, ପୁଣି ବଡ଼ ପାହ୍ୟା ପାଏ ?

ସେ ବୁଦ୍ଧିମାନ୍, ସେ ବଡ଼ ।

ଆଉ ଯଶୋଦା ?

ସେ' ଦିନର ଝଡ଼ ତୋଫାନ କନ୍ଦାକୋଟା, ଲୁଷାଲୁଷି । ତା'ପରେ ଫମ୍ପା ପେଟ କହେ ମୁଁ ଭି ବଡ଼ । ବଡ଼ ସହରର ମଣିଷ—ଜଙ୍ଗଲ କହେ, ବାଟ ନାହିଁ ।

ଯଶୋଦା ମୁହଁମାଡ଼ି ପୋଇଲୀ ହେଲା । ତାକୁ ସହରରେ ଥାପି ବଡ଼ ଷାହୁଆଡ଼ ଅବିନାଶବାବୁ ଗଲେ ସ୍ବୀକାର କରି, ଧନ ଅର୍ଜି ।

ଆଉ ଘର କବାଟ ଫିଟୁଛି । ଚଟି ଫଟ୍ ଫଟ୍ କରି ଅଘୋରବାବୁ ଓହ୍ଲେଇ ଗଲେ । ବାବୁଙ୍କର ପୁଅ । ତୁଣ୍ଡରେ କୃଷ୍ଣନାମ ଜପିଲା ପରି ଏକା ସଆଟେକ ପୁଝାରୀକୁ ସମ୍ବୋଧନ—"ହେଇଓ ଗ୍ବ, ଗ୍ବ, ଗ୍ବ—"

ଯଶୋଦା ଚଞ୍ଚଳ ଚଞ୍ଚଳ ଘର ଓଲୋଉଥାଏ । ପାଖ ଚଟ୍ଟ ଡିଙ୍ଗିଲେ । ପଡ଼ାକୁ ବାହାରିଲା ବାବୁଙ୍କ ଝିଅ, ମାନି । ନଡ଼ ମଲ ମଲ ଆଖି । ଜଅଁ ଲେଉଟା ପାଟିକଲା, ଆରେ—"ମଟେଇ କେହି ଭେଟେଇ ଦେଲ ନାହିଁ ?" ପିଣ୍ଡାକୁ ଆସିଲା । ମୋଟାସୋଟା ବଲେଇଟିଏ ଗୋଡ଼ପାଖେ ବେଙ୍ଗେଇ ପଡ଼ୁଥାଏ, ଘୁଡ଼ୁରୁ ଘୁଡ଼ୁରୁ ହେଉଥାଏ । କୋଡ଼କୁ ଉଠେଇ ନେଇ ମୁହଁରେ ମୁହଁ ଲଗେଇ ଟେଲ କରି କହିଲା—"ମିନି, ମୋ ମିନି—" ମୋଟାସୋଟା ବଲେଇଟି ଆରାମରେ ଆଖି ବ୍ରଜ ଦେଉଥାଏ, ଲୁଗା ଗୋଡ଼ରେ ଆଞ୍ଚୁଡ଼ ଲଗିଥାଏ । ବାରମ୍ବାର ଡାକ୍ ଶେଷ କରୁ କରୁ ନଡ଼ା ପଡ଼ିଗଲା ପିଣ୍ଡାର ବାଡ଼ା ଉପରକୁ । ବଲେଇକି ଗ୍ରୀବାରେ ଘଷି ଧରି, ଭଣ୍ଡି ଧରି ମାନି ଉଚ୍ଚ ସ୍ବରେ ପାଟିକଲା, "ଇଲେ ମିନ ଦେଖିଲୁଣି ? ଇଲେ ମୋ ଗ୍ରୁପ୍ କଲର୍ ଗୋଲାପ ଫୁଟିଚି କଲ୍, ଇଲେ କେଡ଼େ ସୁନ୍ଦର !" ମାନି ଆନନ୍ଦରେ ନାଚିଲା ଝେପା ଖାଇ । ଆପତ୍ତି କରି ମିନ କହିଲା—"ମେଓଁ ମେଓଁ ।" ବଲେଇକି ଗ୍ରୀବା ଦେଇ ତେଉଁ ତେଉଁ ମାନି ତଳକୁ ଓହ୍ଲେଇଗଲା । ପାଟିକଲା, "ବୋଉ, ଭାଇ—ଦେଖିବ ଆସ, ଦେଖିବ ଆସ ।"

କିଏ ଡଡ଼ ଡାକିଲାଣି—"ଏ ଯଶୋଦା, ଏ ଚୁଲି ! କୁଆଡ଼େ ମଲୁ—" ଖୋଜ ବାରତା ଆସିବ କାକପୋଇ ।

ଯଶୋଦା ଭିତରର ହୋଇ ଝାଡ଼ୁ ମାରିଲା । ଲୋକେ ଡାକିବେ—ଡାକନ୍ତୁ । ସମସ୍ତିଙ୍କ କଥାର ଜବାବ୍ ଦେଲେ ସେ ପାଗଳ ହୋଇଯାଆନ୍ତା ।

ଝରକା ପାଖେ ପଡ଼ାକୁ ଅନେଇଁ ଠିଆ ହେଲା । ଛିଃ, କି ଅପନା ମେହେନ୍ତରପଲ୍ଲୀ ! ଭଙ୍ଗା ଦଦରା ଅସଣ୍ଢା ହୋଇ ସେହି ଘରଗୁଡ଼ାକ ଠିଆ ହୋଇଛି । ଲଙ୍ଗଳା, ଧୂଳିଆ ପିଲାଗୁଡ଼ାଏ ଦଉଡ଼ୁଛନ୍ତି । ପଲ ପଲ କୁକୁର । କାହାର ଲୁମ ନାହିଁ, କାହା ଦେହରେ ଘାଦୁ । ଦୁଧ ଓହଲାଛି, ହାତ ଗଣି-ହେଉଛି । ଲୁଆ ପଲେ ଘିଓ କୁତ୍ତାମାନେ ଦଉଡ଼ୁଛନ୍ତି । ଧରାଧରି, କାମୁଡ଼ା କାମୁଡ଼ି, କୁକୁରଙ୍କ କଜିଆ । ହାଡ଼ିସାହିର ତୋଟାଯାକ ଖାଲି ବାଦୁଡ଼ି ଲଟକିଛନ୍ତି । ମା'ଲୋ, କି ଟେଁ ଟେଁ ! ସହରର ସବୁ ବାଦୁଡ଼ିଙ୍କର ବାସ ଏଇଠି । ଟେଁ ଟେଁ

ବେଲ ଏବ୍ଦ ସକାଳଟା ଆଉ ସଞ୍ଜବ୍ଡ । ସାହର ମଣିଷ ବଣୁନାହାନ୍ତି । ମୁଢ଼ି ଆଉ ଗୁହା ଏକାଠି ପିଟେଇ ଖାଇ କେତେବେଳୁ କାମକୁ ଯିବେଣି । ଛୁଣ୍ଡା କନା ଶୁଖୁଛି, ଭଙ୍ଗା ହାଣ୍ଡି ଗଡ଼ୁଛି । ଗଦା ଗଦା ଅଳିଆ ଉପରେ ଶୁଭକାଉ ବସି କା କା ରଡ଼ୁଛନ୍ତି । ଖୁମ୍ପି କ'ଣ ଖାଉଛନ୍ତି । ଗୁଳିଛି ପଚ୍ଛକୁ ପଛ ହୋଇ ଘଡର ଘଡର ମଇଲା ଗାଡ଼ି । ସେଥିରେ ଦୈତ୍ୟପରି ମଣିଷ । କଣୁଆ, ନଲ ଆଖିଆ, କଳା କୋଚଟ, ରୁକ୍ଷ । ମଇଁଷି ଗାଡ଼ିର ଗୁଳକ । ପାଟିରେ ମୋଟା ମୋଟା ପିଙ୍କା ଗେଞ୍ଜିଦେଇ ପିଠିଆଡେ ଘୂଅ ଟୋକେଇ କାଖେଇ, ପଟୁଆର କରି ବୁଲୁଛନ୍ତି ସବୁ ବସ୍ତିଘର ମେହେନ୍ତାଣୀ । ଯଶୋଦା ଧଡ଼୍କନା ଝିଡ଼କି ବନ୍ଦ କରିଦେଲା ।

ପିଣ୍ଡା ବାଡ଼ା ଉପରେ ଫୁଲକୁଣ୍ଡ ଧାଡ଼ି ଧାଡ଼ି । କି ସୁନ୍ଦର ! ଗୋଟାଏ ନାଲି ଗେଲପ ଫୁଟିଆସୁଛି । କି ସୁନ୍ଦର ସେ ! ପାଙ୍ଖୁଡ଼ାସବୁ ସତେ କି ରକ୍ତରେ ଜୁଡ଼ୁବୁଡ଼ୁ । କାହାର ରକ୍ତ ? ତା'ର ଆପଣାର ? ଯଶୋଦା ମୁହଁ ଶୁଖେଇଲା । କେବେ ଥିଲା ତା'ର ରକ୍ତ ଏପରି । ଆଜି ତା'ର ଦେହ ମଉଳିଛି । ତେବେ କାହାର ରକ୍ତ ? ଏଇ, ଯେଉଁମାନେ ମଠରେ ଖାଇଲା ପରି ଏମିତି ଖାଆନ୍ତି । ଭଲ ଖାଆନ୍ତି, ଗ୍ଲାଇଡଲେ ଶୁଅନ୍ତି, ଖଟରେ ଶୁଅନ୍ତି, ତାଙ୍କର ରକ୍ତ । ଚଲ ଚଲ ଦଶୁଛି । ଯଶୋଦାର ପାଗଳ ଭାବନା ଆସିଥାଏ । ହୁ ହୁ ହସୁଥାଏ । ମନ ହେଉଥାଏ, ପାଙ୍ଖୁଡ଼ାଟିଏ ଏଥିରୁ ତୋଳେଁ । ପାଖୁଡ଼ାଟିଏ ତ, କିଏ କ'ଣ ଗାଳିଦେବ ? ଗୋଟାଏ ପାଙ୍ଖୁଡ଼ା ଛୁଣ୍ଡେଇଲା । କରେଖି ଦେଖୁଥାଏ । ଡାକ ଶୁଭିଲା—''ଯଶୋଦା ଆଛିଲୁ ?''

''ହଁ ମା, ଯାଉଚି ।'' ପାଙ୍ଖୁଡ଼ାଟା ମକଚ ମାକଚ ଫୋପାଡ଼ି ଦେଇ ଗୋଡରେ ଦଳିଦେଲା । ସେ ବାହାରି ଉଠିଲା ।



## ସାତ

ସଡକୁ ସତ ମା'କୁ ଜର ହେଲ । ଦନେ, ଦ ଦନ, ତନ ଦନ ଗ୍ଲଲଚ୍ଛ । କମ୍ପ, ଶୋଷ, ବାନ୍ତ । ନାଲ ନାଲ ଆଖି । ସବୁବେଳେ ଦେହ ବରଡ଼ାପଡ ପର । ଯେଉଁ ଲେକଟା ଏତେ ଦୁଃଖକଷ୍ଟରେ ବ ବାକେଣି ଘଣ୍ଟା ପର ତା'ର ପାଟିର ମର୍ଯ୍ୟାଦା ଅତୁଟ ରଖିଥାଏ, ସବୁ କାମ କରେ, ଆଜ ସେ ପଡ଼ଚ୍ଛ ।

ପୁନ ଦେଖୁଥିଲ କେବେ ନ ଦେଖିବା ଦୃଶ୍ୟ । ଏ ତାକୁ ନୂଆ । ତା'ର ବୁଦ୍ଧି ହଜଯାଏ । କେମାର ବକଲ ଶୁଣି ଶୁଣି ଯେତେବେଳେ ତା'ର ଗ୍ରୁଡ ଭିତର ମନ୍ଥି ଚକଟି ହୋଇପଡ଼େ, ଗାଲରେ ହାତ ଦେଇ ଦୁଃଖ ଆଉ ବସ୍ମୟରେ ସେ କେମା ଆଡ଼କୁ ଅନେଇଁ ବସେ । ଲୁହରେ ଗ୍ଲସି ଗ୍ଲସି ଗ୍ଲବେ, ମା' ଆଉ ବଞ୍ଚିବ ନାହିଁ । ମା' ଆଉ ବଞ୍ଚିବ ନାହିଁ । ତାକୁ ଗ୍ଡାକୁ ପେଲଦେଇ ଆଖିବୁଜ ନଶ୍ଚିନ୍ତ ଶୋଇବ ।

ଏତେ ବର୍ଷରେ ପହିଲ ଜରର ପ୍ରାଦୁର୍ଭାବ କେମାକୁ ବ ବକଲ କରଥିଲ । ଜର ସେ ଭୁଲ ଯାଇଥିଲ । ଭ୍ଲବଥିଲ, ଦେହ ତାର ଲୁହା । ଆଉ ଏ ନୂଆ ଅନୁଭୂତ ନୂଆ ଅନାଲେଗ । କେମା ଆଣା ଗ୍ଲଡ଼ିଦେଇଥିଲ ।

ଗ୍ଡ । ଡରମାଡ଼େ । ଅଥଲ ଲ୍ଗପଦର ଦରଆ ସେ । ହାତ ଗୋଡ଼ ପାଏ ନାହିଁ । ଏଠୁ ସେଠୁ ଗୋଟେଇ ଆଣିଥିବା ଅଳଆ ଆଉ କାଠିକୁଟା ଚୁଲ୍ଲିରେ ଖୁନ୍ଦିଦେଇ ପୁନ ନଆଁ ଟିକଏ କରେ ।

"ଟିକଏ ଭଲ ଲ୍ଗୁଚ ବୋଉ !" ଆଉଁସେ, ଖଇ ପଚ୍ଛୁଚ୍ଛ ।

"ଆଉ କ ଭଲ ଲେ ଝିଅ ! ସେହ ଅଲକ୍ଷଣା ହାତ ମୋ ଦେହରେ ଲଗିଲ ଦନୁଁ ଦେହର ଶିଖ ଭୁଟିଛ । ଆଉ ମୁଁ ଭଲ ହେବ ! କ ଅବସ୍ଥା କଲୁ ରେ ଚଣ୍ଡାଳ, ହାଅଁ ସି ଘର ପୁଅ ! କେତେ ଦନ ଏମିତ ପଡ଼ରହିଥିବ, ପୋଷିବ କଏ; ପାଳବ କଏ !"

ଭେଁ କନା ପୁନ କାନ୍ଧ ଉଠେ । ମଝିରେ ମଝିରେ ଆପଣାକୁ ହାଲୁକା କରବାକୁ ଏହା ତାର ବାଟ । କେମାର ଦେହର କଷ୍ଟର କାତର, ଆଗୁରତା, ପୁନର କାନ୍ଦଣା କଏ ଶୁଣେ ? ଶୁଣେ ବଡ଼ ସହରର ଗ୍ଡ । ଛଉକା ଅନ୍ଧାରରେ ମେହେନ୍ତରପଲ୍ଲୀର କେତେ ଘରୁ କେତେ ପ୍ରକାର ଶବ୍ଦ ସେଥିରେ ମିଶେ । ହାଉ ହାଉ ପେଟରେ କାହା ଘରୁ ପିଲ କାନ୍ଦୁଚ୍ଛ, ଧନଯାଙ୍କର ଅର୍ଜନ ହୋଇଥିବା

ମୂଲ୍ ବଦଳରେ ମଦରେ ତୋଲ ଭର୍ତ୍ତି କରିଥିବା ମଦୁଆର କୋଲାହଳ, ଆଉ କେତେ ଜାତର ସ୍ୱର । ସେଇ ଗୋଳ । ସେଥିରେ ନଗିଙ୍କ ପଡ଼େ ଅକ୍ଷନାଣବାବୁଙ୍କ ନିଅ ମାନମସ୍ତୀର ସ୍ୱରଲହରୀ, ମନ୍ଦିରର ବାଜଣା, ଅସଂଖ୍ୟ ମନ୍ଦିରରେ ଧର୍ମାଲୋକଙ୍କର ଠାକୁର ପୂଜାର ଘନଘଣ୍ଟା । ବଜାରର ଘୋ ଘା, ଥିଏଟର ବାଇସ୍କୋପ୍ ବାଜା ।

ମିସ୍ତ୍ରୀ ଚକ ଚକ ଗଲାଣି । ତାର କଥାରେ ପୂନକୁ ଡର ମାଡ଼େ । ପିଠିରେ ପଡ଼ିବାକୁ ଜେମାର ବହପ ନାହିଁ । ମିସ୍ତ୍ରୀ କହିଯାଇଛି, କାଲିକ ସେ ସଚାର କରିବ, ତା ପରେ ଜେମାର ଖୁକଣ ନେବ । ତା ପରେ ?

ତୋଟାରେ ସେଇ ଫଡ଼ ଫଡ଼ ବାଦୁଡ଼ି । ଫାଲ ଫାଲ ମୁର୍ଦ୍ଦାର ପର ଗଛରୁ ଓହଳିଛନ୍ତି । ରାସ୍ତାରେ ସେଇ ନାଚଦନଅାଁ ଭିଡ଼ । ଦୃଶ୍ୟ ସେଇ ଏକା—ଧୂଳି, କୋଠା, ମଣିଷ । ସେଇ 'ତା ପରେ'ର ଉତ୍ତର ନାହିଁ । ଜେମାର ଅଠାଳିଆ, ଚଟଚଟ କପାଳରେ ହାତ ମାରେ । ପୂନ ପଚାରେ, "ବୋଉ, କେମିତି ଲାଗୁଚି ?" ଉଦାସ ପାଉଁଶିଆ ଆଖି ଦୋ'ଟି ଟେକି ଦେଇ ଜେମା ଝିଅକୁ ଦେଖେ । ହୁଗୁଲା ମୁଠାରେ ତା'ର ପାପୁଲିକି ଚାପି ଧରି ଆପଣାର କପାଳରେ, ଓଠରେ ଥୋଇ ଥୋଇ ବୁଲେଇ ଆଣେ । ସେଇ ତା'ର ଔଷଧ, ସେଇ ତା'ର ଅଞ୍ଜନ । ନରକ କାଟିବା, ଘରକରଣାର ଅଇଣ ଝାପର ବଢ଼ିଲ ବାଆ ହେଲ ପରି ଉଦାସୀ ହୋଇ ଜୀବନ ଭିତରେ ସେତିକ ତା'ର ଥାଇଲା ଟାଣ, ତା'ର ଝିଅ ।

ସେମିତି ରାତ । ନ କଟିବା ରାତ କଟିଯାଉଥାଏ । ମା'ଟିଏ, ଝିଅଟିଏ ।

"କାହାକୁ କହିଲୁ ନାହିଁ, ପୂନ—"

"କହିଥିଲି ।"

"କଣ ହେଲା ?"

"ମନା କଲେ ।"

"ରଙ୍ଗଙ୍କୁ କହିଥିଲୁ ?"

"କହିଲି, ତୁ ଯାଉନୁ ତୋ ମା'ର କାମ କରିବୁ । ଆମକୁ ଡର କାହିଁ ?"

"ଆଲୋ, ମୋ ରାଣ ପକେଇ କହୁଚୁ ମୁଁ ! ଏତେ ବଡ଼ ସାହରେ କେଇ ଟିକିଏ ନାହିଁ ଦ' ଦନ ବଦଳା ଚଳେଇଦବ—"

ଜେମା ନେତୁଡ ହେବା ଶୁଣି ପୁଣି ପୂନର ଧୈର୍ଯ୍ୟ ତୁଟିଯାଏ । ବକ ବକ ଜେମା ଶୋଇପଡ଼ିଛି । ଘଣ୍ଟାରେ ଦୁଇଟା ପିଟିଲି । ପହରୀ ଡାକୁଛି,

"ବସ୍ତି ଉଠ୍ୱାଲେ ହୁସିଆର ହୋ ।" ସାଙ୍ଗେ ସାଙ୍ଗେ ଅଣ୍ଡିରା ବଲୁଆ ବୋବେଇ ବୋବେଇ ଗ୍ଲୁଲଛୁ । ଦୁନଆଁ ଶୋଇପଡ଼ିଛୁ । କାଲ ସକାଳେ ଉଠିଲେ କଲ କଲ ବଲ ବଲ ହୋଇ ଧାଇଁବୁଲବେ ଯେଉଁମାନେ ସମସ୍ତେ ଶୋଇପଡ଼ିଛନ୍ତି । ପୂଜକ ନଦ ନାହିଁ । ମା ପଡ଼ିଛୁ, ପାଟିକି ଅଧାର ନେଉ ନାହିଁ । ସକାଳୁ ଯେଉଁମାନେ ମୂଲକୁ ଯାଆନ୍ତି, ତାଙ୍କର ସମସ୍ତ ନାହିଁ । ଘର ଘର ବୁଲ ଖବର ବୁଝିବେ କାହାକୁ ଜର, କାହାକୁ ସର୍ଦ୍ଦି । ଘରେ ପାଣି ସବ ସାରଲଣି । ବାକି ଧମାବୁଢ଼ାର ଦସ୍ତା । ସେ ବା ଆଉ କେତେ ଦନ ! ଦ' ଦନ ହେଲ ଧମାବୁଢ଼ାର ଦେଖା ନାହିଁ । ପୂଜକୁ ଲୋକେ କାଳ ବାସୀ ଦେବେ ନାହିଁ । ଖାଲ ପେଟରେ ପାଣିଗୁଡ଼ାକ କଲକଲ ଡାକନ୍ତି ବେଲକୁ ମୁଣ୍ଡରେ ଡାକୁଛୁ ଚଲ୍ଲା । ଏକାଠି ହେଉଛୁ, ଗଣ୍ଡି ପଡ଼ୁଛୁ; ପୁଣି ହୁଗୁଳାଯାଇ ଫିଟିପଡ଼ୁଛୁ, ତା'ର ପତ୍ତା ନାହିଁ । ଭାବୁଛୁ, ସେ ବା ଯିବ ମା'ର କାମକୁ । ମିସ୍ତ୍ରୀର କୋପ ଶାନ୍ତ ହେବ, ସବୁ ଭଲ ହେବ । ଗତର ଖଟିଲେ, ଲୋକେ ଦେଖିଲେ କାଲେ କାଳବାସୀ ଦେବେ ! କଏ କହିପାରେ ?

କାମକୁ ଯିବ । ସାଙ୍ଗର ଝିଅମାନେ, ରଙ୍ଗ, ଟଗ୍ରି, କଳାମାଣିକ ହେଉଳା ଯେମିତ ଯାଆନ୍ତି; ସମସ୍ତେ ଯେମିତ ଯାଆନ୍ତି । କାଠରେ ମଇଳାଭର୍ତ୍ତି ଟୋକେଇ, ଝଲପନ, ସାବୁପନ ଉଙ୍କା ହୋଇଥିବ, ଗ୍ଲୁଲଥିବ । ପାଇଖାନା ପଛଆଡ଼େ ଆଣ୍ଠେଇ ପଡ଼ୁଥିବ, ପୁଣି ସେଇ ଟୋକେଇ । ସେହି ମାଛ ଭଣ ଭଣ ଗନ୍ଧଆ ସସାର । ସେହି କର୍ମକ୍ଷେତ୍ର ।

ଦୌଲତ ସଞ୍ଚି କୋଠା ଗଢ଼ିବାକୁ ନୁହେଁ ।

କେବଳ ମୁଠିଏ ଖାଇବାକୁ । ଜନ୍ମର ଅତ ସାଧାରଣ ଜନମର ଦାବୀ ମେଣ୍ଟାଇବାକୁ । ପାରବ ସେ ? କେଉଁ ପ୍ରାଚୀନ ପରମ୍ପରାର ଆଦମ ମନର ପ୍ରବୃତ୍ତି ଆତୁର ହୋଇ ଡାକ କହେ—ସେ ପାରବ ନାହିଁ, ପାରବ ନାହିଁ । ଯେତେ ଯାହା ହେଉ, ସେ ମଣିଷ ।

ହୁଁ, ଧମାବୁଢ଼ା ଦେଖା ନାହିଁ । ବଡଦ ମଣିଷ ଧମାବୁଢ଼ା । କୁଆଡ଼ୁ ସେ ଧନ ଅରଜେ, କୁଆଡ଼େ ଯାଏ ସେ ଧନ ଯେ ତା'ର ପତ୍ତା ନାହିଁ । କାଲକ କଛୁ ନାହିଁ । ଆଜ ବା କ'ଣ ଥିଲ ଖାଇବାକୁ ? ଭାବଲ, କାଲ ସେ ଧମାବୁଢ଼ାକୁ ଖୋଜ ବାହାର କରବ । ସନଆଁକୁ ମାଗିବାକୁ ମନ ଯାଏ ନାହିଁ । ମାଗିଲେ ବା ଦଅନ୍ତା । ମୂଲଆ ମୂଲ ଲଗି ପେଟ ପୋଷି ଜାଣେ । ପୁଞ୍ଜିବାଲଙ୍କ ପର ମାଗିଯାଚ ସାଉଣ୍ଟି ଉଡ଼ି ଉଡ଼ି ଚଳନ୍ତି ଭଳି ତା'ର ବୁଦ୍ଧି ନାହିଁ କ ଅଭ୍ୟାସ ନାହିଁ ।

ଏମିତ ସାତ ପାଞ୍ଚ ହବ୍ରୁର ଉଠୁଥାଏ କ୍ଷେତ୍ରକଲ ସେଠ ଯୋଗୁଁ ଅନନ୍ତ ମନରେ । ମା' ଟିକଏ ଶୋଇପଡ଼ିଛି । ପୂନାକୁ ମଶା ଚକୁଛନ୍ତି । ଦୂରରୁ ଟର୍ଚ୍ଚିରେଇ ଚର୍ଚ୍ଚିରେଇ ଗୋଟାଏ ସିଠି ବାଜିଲା । ପୂନା କାନେଇଲା, ଆଉ ଗ ସିଠି ଆଉ ଗ ସିଠି । "ବୋଉ, ହେ ବୋଉ,—"ବୋଉ ଶୋଇଛି । କୁକୁର ଭୁକୁଛନ୍ତି, ଚରଚର ହୋଇ ଦୌଡ଼ୁଛନ୍ତି କେଉଁମାନେ ? ପୂନା ପାଦ ଟିପେଇ ଟିପେଇ ଦୁଆରମୁହଁକୁ ଆସିଲା । ଦୌଡ଼ ଦୌଡ଼ ପାଦଶବ୍ଦ ପାଖକୁ ଆସୁଛି । ଓଃ, କ ଗ୍ରଢ ! ସତେ କ ପଥ ଫଟିଗଲେ ଶବ୍ଦ କଣ ଉଠିବ । ଦୌଡ଼ିଯିବା ଶବ୍ଦ ଦୂରରେ ମିଳିଗଲା । ଅନ୍ଧାର ଭିତରୁ ଖିନ୍ କର ବାହାର ପଡ଼ିଲା ଧନୀବୁଢ଼ା ।

"କିଲୋ, କେଉଁଠୁ ହିଅ—?" ପୂନା ଚମକିଲା ।

"ଡର ନାହିଁ, ମୁଁ ମୁଁ । ଚାଲ୍ ଭିତରକୁ, ଏଠିଟାରେ କାହିଁକି—" ପୂନାର କଥାକୁ ଅପେକ୍ଷା ନ କରି ଧନୀବୁଢ଼ା ଭିତରକୁ ପଶିଲା । ଚୁପ ଚୁପ କହିଲା—"ଆ, ମୁଁ କହିବି, ପାଟି କର ନାହିଁ ।" ପୂନାକୁ ସ୍ୱପ୍ନ ପରି ଲାଗିଲା । କିଛି ନ କହି ଚୁପ ହୋଇ ସେ ବି ଆସିଲା । ଧନୀବୁଢ଼ା କ'ଣ କହିବ ! ଘର ଭିତରେ କ'ଣ କରୁଛି ସେ, ଅନ୍ଧାରରେ କାହିଁ କିଛି ଦିଶୁ ନାହିଁ । କଥା କହୁ କହୁ କେଉଁମାନେ ସବୁ ରାସ୍ତାରେ ମାଡ଼ିଆସିଲେ । ଏକାତାଲରେ ଦୁମୁଦୁମୁ ଜୋତାଶବ୍ଦ । ପୂଲସ୍ ଚାଲିଛନ୍ତି ।

"ଗୋଟାଏ ସ୍ୱାଡ୍ରେ ପଳେଇଲା—"

"ନାହିଁ ମ, ହେ ସିଆଡ଼କୁ ତ ଦୁ'ଜଣ ଦୌଡ଼ ଦୌଡ଼ି ଗଲେ ।"

ସାହି ସେ ମୁଣ୍ଡରେ କେଉଁଠି ହୋ ଉଠିଛି, କୁକୁର ଭୁକୁଚନ୍ତି । ଏକାତାଲର ଜୋତା ଶବ୍ଦ ହସି ହସି ସେହି ଆଡ଼େ ଧାଇଁଗଲା । ଅନ୍ଧାର ଭିତରେ କଏ ଯେମିତ ଘୁଣ୍ଟା ହସ ହସୁଛି । କାଠରେ କାଠ ଘଷିଲା ପରି ।

ବାହାରେ ପୁଣି ସବୁ ଚୁପଚାପ । ଦୂରର ହୋ ହୋ କାହିଁ ଦୂରରେ ।

ଧନୀବୁଢ଼ା ପଦାକୁ ଆସିଲା, କହିଲା—"ଏ ବାଟେ ଯାଉଥିଲି ଯେ, ଭାବିଲି ପୂନାର ମା'କୁ ଜର ହେଉଚ ପରା ! ଆହା, ଢନ ଓଳାରେ ଚୁଲୀ ଜଳୁ ନ ଥିବ, କ'ଣ କରୁଥିବ ପିଲାଲୋକ । ଚୁ ପଚୁ ମୋ ଧରମ ଝିଅ ଲୋ ମା, କେମିତ ଅଛୁ ? ପଇସା ନବୁ ?"

ଧନୀବୁଢ଼ାର କଅଁଳ କଥାରେ ପୂନା ଦବିଗଲା । କହିବାକୁ ଚେଷ୍ଟା କଲା ଆପଣା ଦୁର୍ଦ୍ଦଶାର କଥା । ପାଟି ଥରି ଯାଉଥାଏ । ତା'ର ଚେଷ୍ଟାକୁ ଅଟକେଇ

ଦେଇ ମୁଣ୍ଡ ସାଉଁଳେଇ ଦେଇ ଧର୍ମାବୁଢ଼ା କହିଲା—'ଥାଉ ଥାଉ, ମୁଁ ସବୁ ଜାଣେ । ଆହା ! ହଉ ନିଅ, ଏ ପଇସା ନେ, ରଖିଥା । ମୁଁ ଯାଉଚି । ମା'କୁ ପଥି କିଣିଦବୁ । ଯାହା ଦରକାର ହେଉଥିବ, କହୁଥିବୁ ।'' ଧର୍ମାବୁଢ଼ା ହସିଲା । ''ତୁ ତ ଡବଡବିଟା, ବୁଦ୍ଧି ହୁସିଆର, ମତେ ଦେଖିଲୁ ବୋଲି କାହାକୁ କହିବୁ ନାହିଁଟି ! କହିବୁ ବା କ'ଣ ? କୋଉ ମତେ ଦେଖିଚୁ ! ପିଲାଲୋକ ନିଦ ଘାରୁଥିବ, ଯା ଶୋଇବୁ ଯା —''

କାହିଁ ଧର୍ମାବୁଢ଼ା ? ପୁନି ମୁଠାକୁ ଚାପି ଧଇଲା । ଅଶ୍ୱାସ ଆସୁଛି, ବଳ ଆସୁଛି । ସେ ମୁଠାରେ ପଇସା ଅଛି । ଆସ୍ତମ୍‌ରେ ନିଦ ଆସୁଛି । ଶୁଭୁଛି ଦୂରରୁ ସାଁ ସାଁ ହୋଇ ପବନ ମାଡ଼ି ଆସୁଛି । ଧୀରେ ଧୀରେ ଘର ଭିତରକୁ ପଶିଗଲା ।

''ବୋଉ, ହେ ବୋଉ, କିମିତି ଲାଗୁଛି ?'' ନା ଥାଉ, ବୋଉ ଶୋଇ ପଡ଼ିଛି । ଥିର ହୋଇ ପୁନି ଶୋଇପଡ଼ିଲା । ନିଦ ଘୋଳରେ କିଛି ଖବରହେଉ ନାହିଁ । ଖାଲି ଦୂର ପବନର ଶବ୍ଦ । ଏମିତି ଏତିକିବେଳେ ଅନ୍ଧାରେ ଅନ୍ଧାରେ ବଡ଼ ସହରର କୋଠା ଗଳି ଭିତରେ ଅରେଇ ଅରେଇ ଡାକି ଡାକି ସେ ଯାଏ । ଖାଲି ପବନ ନୁହେଁ ସେ । ତାକୁ ରୂପ ଦେବାକୁ ପୁନିକୁ ଭଲ ଲାଗେ । ଧର୍ମାବୁଢ଼ା, ଅନ୍ଧାର, ପବନ, ଗରବର ପେଟର କଥା । ମିଶି ଗୋଳି ହୋଇ ପୁନି ମନରେ ଗୋଟିଏ ସ୍ୱପ୍ନ ।

ଜୀବନ ବାଟ ବତାଏ, ପୁନି ସ୍ୱପ୍ନ ଦେଖେ ।



# ଆଠ

ବଡ଼ ଘରେ ସ୍ୱପ୍ନ ଦେଖୁଥାଏ ଧର୍ମର ଦୁଲାଳୀ ମାନମୟୀ । ଜୀବନଟା ତାର ମଫାରୂପା—କାଗଜର ହେବାର କଷ୍ଟର ଭାଗ ତା'ର ନାହିଁ । ଧୂଳି, ଖରା, ଚନ୍ଦ୍ର, ଭାବନା । ସେଗୁଡ଼ା ପରର । ତା ପାଇଁ ଧରମବେଠିଆ କରି ଦାସ୍ୟାଙ୍କୁ ବଧାତା ଯେଉଁମାନଙ୍କୁ ଜନ୍ମ ଦେଇଛୁ ସେମାନେ ସେଥିରେ ହକଦାର । ତା'ର କେବଳ ଧନ ଦେଖୁ ଦେଖୁ ସ୍ୱପ୍ନ ଦେଖିବା, ହାତ ପାଖେ ସବୁ ସଜା ହୋଇ ରହୁଥିବ କେବଳ ହାତ ବଢ଼େଇ ଦେଇ ଅଣ୍ଡାଳି ଘେନଯିବ । ଅଭାବ ହେଲେ ସାମାନ୍ୟ ଆକ୍ଷେପ, ସେଥକରେ ଯେଉଁ ତୋଫାନ ଉଠିବ, ଦୋହଲିବେ ସମସ୍ତେ ଏ କୋଠାରେ । ବାପାଙ୍କଠୁଁ ଗୁରୁବଛକର ଯଶୋଦା ପର୍ଯ୍ୟନ୍ତେ ।

ଧରମ୍‌ବେଠିଆ—ପ୍ରକୃତରେ ତାଙ୍କର ସଂଖ୍ୟା କଳି ହେବ ନାହିଁ । ବାପା ଅଛନ୍ତି, ବିଦେଶରେ ବୁଲନ୍ତି, ଧନ ଅର୍ଜନ୍ତି । ଫର୍ମାଶୀ କରି ଚଠି ନ ଲେଖିଲେ ରୁଷି ବସନ୍ତି । ତେଣୁ ତାଙ୍କୁ ଲେଖିବାକୁ ହୁଏ ବେଙ୍ଗର ଲଙ୍ଗୁଡ଼ ଆଣିବ, ମଣିଷମୁହାଁ କୁକୁର ଆଣିବ । ଘରେ ଥାଏ ବୋଉ । ଗୁଣ୍ଡା ବଳଦେବାକୁ ଜିଦ ଧରେ । ଜିଭ ଛେଲ୍‌ଦେଲେ ସେ ଖୁସି ହୁଅନ୍ତି । ଯାହା ମାଗିଲେ ପ୍ରଥମେ ନାହିଁ କରେ—ହଁ କରିବାର ପୂର୍ବ ସୂଚନା ସେ । ସେ କଲ୍ପବଟ । ଭାଇ ଅଛନ୍ତି । ଖୁସି ଲଗାନ୍ତି, ଖୁଣନ୍ତି, ଯେତେ ତାଙ୍କୁ ତାଚ୍ଛିଲ୍ୟ କଲେ ଭୁଣ୍ଡରେ ବଡ଼ ବଡ଼ କଥା କହି ସାନ କରିଦଅନ୍ତି । କିନ୍ତୁ ସେହି ସେ ଭାଇ—ଭିତରଟା ଜଅଁଳ ନରମ ପୁଚ୍ ପୁଚ୍—ବାପାଙ୍କର ହାତ ପାଆନ୍ତି ଘରେଇ ସମ୍ବରଣ । ସେ ବି ସାତପରସ୍ତ କରି ସ୍ନୋ ମାଖନ୍ତି, ଦର୍ପଣ ବ୍ୟବହାର କରନ୍ତି ପ୍ରଚୁର, ସାନ ସାନ କବିତା ଲେଖନ୍ତି । ତେଣୁ ତାଙ୍କର ଟିପ୍‌ପଣୀ—ସାଧାରଣ ପଞ୍ଜିକାର ବଢ଼ଦନଆଁ ଟିପ୍‌ପଣୀ ପରି—ସେ ଦେହକୁ କାଟେ ନାହିଁ । ଅତ୍ତବସି ଦାଉ ସାଧିବାକୁ ସୁଯୋଗ ଦଏ । ଏହି ବାପା, ବୋଉ, ଭାଇଙ୍କ ସମ୍ପର୍କରେ ତା'ର ସମାଜ । ସେଥିରୁ ଲଭ—ନୂଆ ମୁହଁ, ନୂଆ ସମ୍ପର୍କ, ନୂଆ ଅନୁଭୂତ । ଦାଣ୍ଡର ବୈଠକଖାନା କୋଠିରେ ଥରେ ବୁଲି ଆସିଲେ, ଧନଗୋଟାକର ମାହାପଣିଆ ଲୁଆଡ଼େ କଟିଯାଏ । ସେଠିକି କେତେ ଲୋକ ଆସନ୍ତି, ବସିଥାନ୍ତି କୁଣ୍ଡରେ ଗଛ ପରି । ପବନ ପରି ମାନମୟୀ ଘୂରି ବୁଲେ । ଗଛ ଗୁଲେ ନାହିଁ, ବୁଲେ ନାହିଁ, ଠାଆକେ ଥାଏ । ପବନ ଦେଲେ ତା'ର ଡାଳପତ୍ର ହଲିଯାଏ । ଭିନ୍ନ ଭିନ୍ନ ଗଛର ଭିନ୍ନ ଭିନ୍ନ ଭଙ୍ଗୀ ଦେଖି ମାନମୟୀ ଖୁସି ହୁଏ । ପ୍ରବଣତା ବୃଦ୍ଧେ । ଧସ୍ର ନ ଦେଇ କୃପାଦୃଷ୍ଟିରେ ଅନାଏ । ଆଉ ଦ୍ୱିତୀୟ ଶ୍ରେଣୀର ଦଳେ; ସେମାନେ ସାକ୍ଷାତ୍ ଚଢ଼ଆଖାନାର ଜନ୍ତୁ । ରୁମାଲଟା ପଡ଼ିଗଲେ

ତନ୍ତୁ ଟେକ ହାତକୁ ବଢ଼େଇ ଦେବାକୁ କୁଦାକୁଦ କରି କଜିଆ କରନ୍ତି, ଫୁଲଦାନ ଓଲଟାନ୍ତି, ଚୌକି ଘୋସାରନ୍ତି । ଯୁ' ପାଇ ହାତରୁ କାଢ଼ି ନେଲାବେଳେ ତାହାର ମୋଟା ଆଙ୍ଗୁଠିଟା ହାତରେ ଗେଞ୍ଜି ହୋଇଯାଏ । ପ୍ଲେଟ୍ ଓ କପ୍‌ରେ ବିଚ୍ଛେଦ ଲାଗେ । ପାଦ ଅଗରେ ଠିଆ ହୋଇ ପଡ଼ିବାକୁ ପ୍ରସ୍ତୁତ । କଏ ସେ ଗୁଣ୍ଡିରୁ କଥା ନ ବାହାରୁଣୁ ତାମିଲ୍ କରିବାକୁ ପବନ ବେଗରେ ଛୁ' କରିବେ । ଦେଖାଇ ହେବେ ଆପଣାର ତତ୍ପରତା, ୱାରପଣିଆଁ ।

ନୂଆ ବହି ଦରକାର ? ବୁଣିବାକୁ ଭୁଲ୍ ? ଚଟିର ବୋତାମ ଛିଣ୍ଡି ଯାଇଛି କି ? ପାଗଳ ପରି ତୋଫାନ ବେଗରେ ଧାଇଁ ପଳାଇବେ । ଦୂରରୁ ଦିଶୁଥିବ କି ଗଢ ! କି ଉତ୍ସାହ, କି ବଳ ! ସୁତା କେସ୍‌ରେ ଘୋଡ଼ାଗାଡ଼ି, ବଳଦଗାଡ଼ି, ମଟରଗାଡ଼ି କବଳରୁ ବଞ୍ଚିଯାଇ ଯା ପଳା – ପଳା – ପଳା – ।

ଏହିମାନଙ୍କ ଆବୋରି ସୂକ୍ଷ୍ମରେ ଭାବି ଭାବି ତା'ର ସ୍ୱପ୍ନ, ତା'ର ଜୀବନର ଲୀଳା । ଖେଳେଣା କଣ୍ଢେଇଙ୍କୁ ହଲେଇ, ଗଢ଼େଇ କେତେବେଳେ ଗୋଟି ଗୋଟିକିଆ, କେତେବେଳେ ଏକାଠି ଥୋଇ ଦେଖି ଦେଖି ତା'ର ଦିନ କଟେ । ତା'ର ଝିଅବନ୍ଧୁମାନଙ୍କ ସଙ୍ଗେ ମତାମତ ଘେନାଘେନ ଚାଲେ । ଅନୁଭୂତିର ତୁଳନା, ଚର୍ଚ୍ଚି ଲେଖିବାକୁ ଉପାଦାନ ମିଳେ । ସେ ଯାହା ଲେଖେ, ତାହା ହୁଏ ଅଛପା ଗୁରୁକଳା ।

ସେହି ଖେଳ ଭିତରେ ତାର ସମସ୍ୟା ଉପୁଜେ, ଏଡ଼ି ହୁଏ ନାହିଁ । ନଜେ ଚେଷ୍ଟା କରି ସମସ୍ୟା ନ ଗଢ଼ିଲେ ସ୍ୱାଦ ଆସେ ନାହିଁ । ତେଣୁ ସେ ଚେଷ୍ଟା କରେ । ଧରମବେଠିଆମାନଙ୍କର ଅଧିମାତ୍ରାର ଆଗ୍ରହକୁ ସେ ସମାଲୋଚନା କରେ । କେଡ଼େ ସୁନ୍ଦର ପାଠ ପଢ଼ୁଥିଲା । ଆଖି ଧରିଲା, ଟିକିଏ ତ ପଡ଼ିଗଲା ଚହଲ ଚାରିଆଡ଼େ । ସମସ୍ତିଙ୍କର ସମବେତ ଆହା, ଉତ୍ତରରେ ମତସିଦ୍ଧ ହେଲା, ବେଶି ପଢ଼ିଲେ ଆଖି ଖରାପ ହେଉଛି, ରଙ୍ଗ ନଷ୍ଟ ହେଉଛି, କ୍ଳେଶ ବଢ଼ୁଛି । ସୁତରାଂ ଅନର୍ଥକ ଗୋଟାଏ କବାଟ ବନ୍ଦ ହେଲା । ସେ ପଥ ରୁଦ୍ଧ—ଜୀବନଟା କଟିବ କିପରି ? ନିଷ୍ଠୁର ଦୁନିଆର ଲୋକେ ବୁଝିଲେ ନାହିଁ । ତା ପରେ ବିବାହ···ଭବିଷ୍ୟତର ଅନିର୍ଦ୍ଦିଷ୍ଟ ଆଶଙ୍କା । ଯେତେ ଥର କଥା ଉଠେ, ବୋଉ କୋଳରେ ମୁଣ୍ଡ ଗୁଞ୍ଜିଦେଇ ସେସବୁ ସେ ଫୁଙ୍କି ଉଡ଼େଇ ଦେଇପାରେ; କିନ୍ତୁ କେତେ ଦିନ ଏମିତି କଟିବ, ଭାବିଲେ କପାଳରେ କୁଞ୍ଚା ପଡ଼ିଯାଏ । ସେହି ସେ ଭିକାରୀ ପଲ୍ ପଲ୍ । ବାରମ୍ବାର ସେମାନେ ନାନା ଛଳରେ ବିରକ୍ତ କରିବାକୁ ଆସନ୍ତି । ଶୋଷି ହୋଇ, ଟାଣି ହୋଇ, ଆଉଜି ପଡ଼ିବାକୁ ସମସ୍ତିଙ୍କର ମନ । ଏକା ପ୍ରଶ୍ନ ସବୁରି ଆଖିରେ—

"କେଉଁ ବରେ ବରବେ କେମାମଣି—
ଧମାର ଦୁଲାଳୀ, ମିନତ—କରୁଣା—ଅନୁକମ୍ପା—"
ସ୍ମୃତି ମଣିଷଗୁଡ଼ାକ—

ପୂର୍ଣ୍ଣିମାର ଭେଳ ଦେଖାଇ ଅପୂର୍ଣ୍ଣ ସମସ୍ତେ । ଲଢ଼ୁ ଭଲ ଲାଗେ, ସବୁଯାକ ନୁହେଁ । ଗେଲବସର ହେବାକୁ, ତାମସା କରିବାକୁ, ନିର୍ଜନରେ ଟିକିଏ ଲୁଚକାଳି ଖେଳିଦେଇ ଆପଣାର ଅବସର କଟେଇବାକୁ ଭଲ ଲାଗେ ଖୁବ; କିନ୍ତୁ ଗୋଟାକୁ ଆଦରିବାକୁ ଭାବିଲାବେଳକୁ ସବୁ କଳ୍ପନା, ସବୁ ଧାରଣା ଏକାଠି ଚହଲ ପକେଇ ବସନ୍ତି । ନାଁ—ନାଁ—ଏଠି ନୁହେଁ—ଏଠି ନୁହେଁ— ।

ସେମାନେ ସ୍ମୃତିମଣିଷ—କାନ୍ଥ ଆଲୁଅ ଜୁଡ଼ୁବୁଡ଼ୁ ପାଲଭୂତ—ଭଙ୍ଗା କେନ୍ଦରା ବୋହୁ, ଗୋବର୍ଦ୍ଧନଚନ୍ଦ୍ର ଗାଇ ଯୋଗୀପଲ । ଅବସର ବେଳର ଅଳସ ଚିନ୍ତା, ଅଚ୍ଛିଣ୍ଡା ସୁଅ, ଅସରନ୍ତି ।

ରାଧା ପାଏ ନାହିଁ । ସ୍ୱପ୍ନ ଦେଖେ ।

ସୌଖିନ୍ ଦୀର୍ଘଶ୍ୱାସ, ଯନ୍ତ୍ରରେ ତିଆରି ବେଦନାର ଝଙ୍କାର—ଯେପରି ସେ ରାଗିଣୀ ସାଧେ, ସଙ୍ଗୀତ ଗାଏ ।

ସିନେମାର ସ୍ମୃତି, ନାଟକର ସାନ ସାନ ଦୃଶ୍ୟ, ଉପନ୍ୟାସରୁ ପଢ଼ିଥିବା କୋହଭରା ହୃଦୟର କଥା । ଆପଣା ଅନୁଭୂତି ସହିତ ମିଶେଇ, ମିଶେଇ ମାନମୟୀ ଆପଣା ହାତରେ ଅଭିନବ ତିଆରି କରେ । ଘିଅଦୁଧ, ମାଛମାଂସ, ଦାମୀ ଖାଦ୍ୟରେ ତିଆରି ଉଷ୍ମ ରକ୍ତର ପ୍ରବାହ ତାକୁ ସାହାଯ୍ୟ କରେ । ସେ ଆପଣାକୁ ବିଶ୍ୱାସ କରିଏ—ସେ ନିରମାଖୀ, ସେ ଅସୁଖୀ । ହଂସୂଳ ଶେଯ କେବଳ କଣ୍ଟାମୟ । ଏଡ଼େ ବଡ଼ ପ୍ରାସାଦ କେବଳ କାରାଗାର ।

ନିସ୍ତଳ ରାତିରେ, ଅନ୍ଧାର ଘରେ, କୁମାରୀର କଅଁଳ ଶେଯରେ ଚରିବୁଲନ୍ତି ହାତଗଢ଼ା ମନର ଭୂତ ।

□ □

## ନଅ

ପୁଙ୍ଗା ଦେହ ଉପରେ ସକାଳର ବଉଳିଆ ନିଶା । ଭଙ୍ଗା ଦଦରା ଘରେ ପଣ୍ଡ୍ରେଗ୍ରର ନିଦଭଙ୍ଗା ଆଳୁଅ । ପୁଚ୍ଛ ଉଠିଲା । ଘାଉଁ ଘାଉଁ ହୋଇ ମଶା ଉଡ଼ଯାଉଛନ୍ତି ନାଗଅଇଣ ବଣକୁ । ବାଦୁଡ଼ି ଚେଁ ଚେଁ ଶୁଣି କାନ ଝାଁଇଁ ହୋଇଯାଉଛି । ନିଡ଼ାଦିନ ପରି ଆଜି ବି । ମଠୁଆ ମଠୁଆ ଲାଗୁଛି, ନିଦୁଆ ନିଦୁଆ ଲାଗୁଛି । ପିଣ୍ଡାରେ ଗୋଡ଼ ପାଚିଦେଇ ବସି ପୁଚ୍ଛ ଧୂମେଇଲା । ଦେହ ଆଉ ଉଠୁ ନାହିଁ । କୋଠା ଗହଳିରେ ଚଢ଼ାଖାଇ ଆସି ଚୋଟାରେ ଚଢ଼େଇ ବସା ବାନ୍ଧିଛନ୍ତି । ଯୋଡ଼ି କଜଳପାତିଙ୍କ ନେଉଡ଼ିଆଗୋଡ଼ି ଡାକ, ଉଦଭଦଳିଆ, ତାପରେ ନୂଆ ହୋଇ ଆଜି କୋଇଲି ବୋବାଉଛି ।

ରେଳ ବେଳ ହେଲାଣି ପରା ! ନଈକୂଳିଆ ବଡ଼ ରାସ୍ତାରେ ଗାଡ଼ି-ଘୋଡ଼ା ଧୂମ୍ । ସାହି ଭିତରୁ ଦାଣ୍ଡ ଝରକବାର କର୍କଶ ଶବ୍ଦ । ବଡ଼ ସହରର ଗହଳି ଶବ୍ଦ ଧୀରେ ଧୀରେ ବଢ଼ିଉଠୁଛି ଗୋଷ୍ଠ ହୋଇ । ତଥାପି, ଟେଲିଗ୍ରାଫ୍ ତାର ଉପରେ ବସି କଜଳପାତି ଲାଙ୍ଗୁଡ଼ ହଲେଉଛି; କୋଇଲି ବୋବୋଉଛି । ଆଜି କେମିତି ନୂଆ ନୂଆ ଲାଗୁଛି । ଶୋଇବା ଚେଇଁବା ମଝି ମଝି, ଆପଣା ଭିତରେ ଖୁସି ଖୁସି ହସୁଛି କିଏ କେଉଁ ମନ୍ତ୍ର । କଇଁଫୁଲ ପରି ଫୁଟିଉଠୁଛି । ନୂଆ ଆଖିରେ ଅଳସ ଛାଇ ଦେଖୁଛି । ଚୋଟା ଉପରେ ଲାଗିରହିଛି ଯାହା, ତାହା ସଡ଼କ ଧୂଳି ନୁହେଁ । ସବୁ ସ୍ୱପ୍ନ, ନୂଆ ଅନୁଭୂତିରେ ନୂଆ ସ୍ୱପ୍ନ; ଦେଖାଇ ଦେଉଛି ଖୁସି କରିବା ପାଇଁ ।

ଦୂରରେ ସୂର୍ଯ୍ୟ ଉଉଛି--ହେଇ ।

ଅଘୋରବାବୁ କୋଠା ଉପରୁ ଅନେଇଛନ୍ତି । କି ସୁନ୍ଦର ! ସବୁ ସୁନ୍ଦର । କିଏ କେଉଁଠି ଥାଇ ସେହି ଏକା ସୂର୍ଯ୍ୟକୁ ଦେଖୁଛି । ଅଘୋର ବାବୁଙ୍କୁ ଅନେଇଲା । ପହିଲି ହୋଇ ଦେହ ଭିତର ଥରିଗଲା । ପୁଚ୍ଛକୁ ଲାଜ ମାଡ଼ିଲା । ଲାଜ ମାଡ଼େ, ଅନେଇବାକୁ ଭଲ ଲାଗେ । ମନ ଭିତରେ ନୂଆ ଚିନ୍ତା । ଫୁଲ ପାଖୁଡ଼ା ପରି ଦରେଟି ସକାଳ ଟାଣୁଆ ହୋଇ ନାହିଁ ।

ତଥାପି ସେ କୋଇଲିଟା ବୋବୋଉଛି ।

ମୁଣ୍ଡରୁ ନିଦର ଧୂଆଁ ପାତଳ ହୋଇଗଲା । କେଡ଼େ ପରିଚ୍ଛନ୍ନ ଅଘୋରବାବୁ । ରାତିରେ ଯେପରି କି ବେଶଭୂଷା ପିନ୍ଧି ଶୋଇ ପଡ଼ିଥିଲେ

କେତେ ଦାମ୍ ସେ ପଟିପଟିକିଆ କାମିଜ୍‌ର ! କେତେ ପଇସା ସେ ସିଗାରେଟ୍‌ ! ଦୀର୍ଘଶ୍ୱାସ ପକେଇଲା । ସୂର୍ଯ୍ୟ ଉଁଚ୍ଚ ସତ, ସମସ୍ତେ ଦେଖୁଛନ୍ତି ।

ବୋଉ ଶୋଇଛି । ପାଖକୁ ଯାଇ କପାଳରେ ହାତ ମାରିଲା । ଜର ନାହିଁ ।

ମୁଣ୍ଡରୁ ବୋଝ ଓହ୍ଲେଇଗଲା । ବାରମ୍ବାର ହାତ ମାରି ଦେଖିଲା । ସତରେ, ଜର ନାହିଁ । କଅଁଳ ଦୃଷ୍ଟି ଢାଳିଦେଇ ଶୋଇଲା । ମା'ର ଭୁଗ୍‌ଣ ଶରୀରକୁ ଅନେଇଁ ରହିଥାଏ । ଆଜି ମନ ଭିତରର ଟାଣୁଆ ପଥୁରିଆ ଯାହା ସବୁ ଗୋଳିହୋଇ ପାଣି ହୋଇଯାଉଛି ।

ଗରିବର ସମ୍ପତ୍ତି, ଗରିବର ଭରସା—ଗୋଟିଏ ବୋଉ, ଦୁନିଆରେ ସବୁ । ଆଖିରେ ଲୁହ ଟଳ ଟଳ ହେଉଥାଏ । ମନ ଭିତରେ ଅନର୍ଥକ ହଠାତ୍ ଭାବପ୍ରବଣତା । ଓଠ ଥରିଯାଉଥାଏ । ଅଭିମାନ – କାହା ଉପରେ ? ବୋଉ କପାଳରେ ଆଉଁସି ଆଉଁସି ପୁଣି ଡାକିଲା—"ବୋଉ— !"

ଜେମାର ନିଦ ଭାଙ୍ଗିଗଲା । ଏହି ପରି ବାବୁଘରମାନଙ୍କରେ ପାଇଖାନା ସଫାକରି ଯିବା ବେଳ ! କେତେ ଖରା ହେଲାଣି । କାହିଁକି ସେ ପଡ଼ିରହିଛି ? ତରତର ହୋଇ ଉଠିପଡ଼ିଲା । ସ୍ମରଣ ଆସିଲା, ତା'ର ଟୋକେଇ, ମଇଳା ଗାଡ଼ି, ଫାଟ ସନ୍ଧିରୁ ଅସନା ପାଣି ଝରିପଡ଼ୁଥିବ ଥପ ଥପ, ନିତି ସକାଳର ଚହ୍ଲାକଣା । ଘରେ ଘରେ ବାଡ଼ି ପଛଆଡ଼ର ଅସନା କୋଠିରି ଅନ୍ଧାରୁଆ ତଳ ବଖରା, ତା'ର ସ୍ଥାନ ଗଳି କବାଟ । ତା'ର କାମ, ତା'ର ଅର୍ଜନର ଉପାସ୍ଥ ।

କାହିଁକି ସେ ପଡ଼ିରହିଛି ? ଧଡ଼ପଡ଼ ହୋଇ ଉଠି ପଡ଼ୁ ପଡ଼ୁ ପାଟି ପିଠା କରିଦେଇ ନିସ୍ତେଜ ହୋଇ ପୁଣି ଶୋଇପଡ଼ିଲା । ହେଉ ହେଲା, ସେ ବେଗରେ ପଡ଼ିଥିଲା । ତା'ର ସେ ଦେହ ନାହିଁ । ପେଟରେ କେତେଦିନର ଖେଳ, ଦେହ ଝିମି ଝିମି । ବଳକଲ, ନିସ୍ତେଜ ଦୃଷ୍ଟିରେ ସବୁ ଗୋଳିଆ ପୋଳିଆ ହୋଇଯାଉଛି ।

"ଭଲ ଲାଗୁ ନାହିଁ ବୋଉ ?"

ଜେମା ମୁଣ୍ଡ ହଲେଇଲା । କଚ୍ଛ ସମସ୍ତ ରୁଜି ହୋଇ ପଡ଼ି ଜେମା କହିଲା—"ମୋ କାମ କିଏ କରୁଚ ପୁଣି ? କାହାକୁ ବଦଲା ପାଇଲୁ ?"

"ବଦଲା କଣ ହବ ବୋଉ, ମୁଁ କ'ଣ ନାହିଁ ?"

"ତୁ !" ବଡ଼ ବଡ଼ ଆଖି କରି ଜେମା ପଚାରିଲା, "କଲେ, ତୁ କଣ କରିବୁ ? ବଦଲା କାହିଁ ? ମୋ ଦେହ ତ ଏତେ ସରି, ବଦଲା ନ

ଦେଲେ ସହରରେ ଛୁଞ୍ଚଦେବେ ? ଜୋରମାନାରେ କଟିଯିବ ମାସକଯାକର ମେହେନତ । ଖାଇବା କ'ଣ ?"

ଅଭିମାନ କରି ପୂନି କହିଲା—"ତୋର ଖାଲି ବଦଳା—ବଦଳା । ଲୋକଙ୍କର ଆମ ଜମିଦାରୀରେ ଘର ହୋଇଚି ସତେ କ ; ଡାକଦେଲେ ଦୌଡ଼ି ଆସିବେ ! ମିଛରେ ସ୍ତାକୁ ତାକୁ ନେହୁରା ହୋଇ, ଋଣ କରେଇ କରେଇ ବେଳ ଯାଉଚି, କାମ କଛି ନାହିଁ ।"

"ତେବେ !"

"ତୁ ଥିର ହୋଇ ଶୋଇ ଥା । ଆଜି ତ ଆଉ ତତେ ଜର ନାହିଁ, ପଥି ଦ'ଟା ରାନ୍ଧିଦେବି, ତୁ ଖା । ତୁ ସେଥିରୁ କଣ ପାଇବୁ ?"

"କଲେ ! ବଦଳା ବଟେଇବୁ ନାହିଁ ? ମୁଁ ଖାଲି ଥିର ହୋଇ ଶୋଇଥିବି ?"

"ଅରେ ପରି କହିଲି ବୋଉ, ମୁଁ ଅଛି । ତୁ ଖାଲି କାମ କରୁଥିବୁ, ବେମାର ପଡ଼ୁଥିବୁ; ମୋର ସବୁଦିନେ ପର ହାତକୁ ଭରସା ହୋଇଥିବ, ଘରେ ବସିଥିବି ? ବଦଳା ମିଳିଲା ନାହିଁ, ବୁଝିଲୁ ?" ଦୃଢ଼ କରି ପୂନି କହି ଲାଗିଲା—"ତୋ କାମ କରି ମୁଁ ଯିବି । ଯେମିତି ସମସ୍ତେ ଯାଉଚନ୍ତି, ଯେମିତି ସବୁଦିନେ ତୁ ଯାଉ । ମୋ ରାଣଟି, ସୁନାଟି ପରି, ତୁ ଏତେ ଭାବ ହ ନା—"

"ଏଁ—କଣ କହିଲୁ ?" ଅଣ୍ଟା ସଳଖେଇ ଜେମା ମେହେନ୍ତାଣୀ ଉଠି ବସିବାକୁ ଚେଷ୍ଟାକଲା । "ତୁ ଯିବୁ କାମ କରି ? ତୁ କରିବୁ ମୋ କାମ ?"

"କାହିଁକି ନ କରିବି ? ମୋ ମନ, ମୋ ଇଚ୍ଛା । ସମସ୍ତେ ଯାଉଛନ୍ତି; ମୁଁ ବି ଯିବି । ତୁ ଖାଲି ମତେ ସାଇତି ରଖିଥିବୁ ! ଶୁଣିଲି ଲୋକେ ଥଟ୍ଟା କରୁଚନ୍ତି । କହୁଚନ୍ତି, ଏଡ଼େଟାଏ ହେଲୁଣି, ମା ବୁଢ଼ୀ ହୋଇ ରକ୍ତ ମାଂସ ସାରୁଛି; ଏ ବସିଚନ୍ତି ଘରେ ! ମୁଁ କାମକୁ ଯିବି । ଏତେ ବଦଳା ଖୋଜ ଖୋସାମତ କରି ବୁଲିବା ଦରକାର ନାହିଁ ।"

ମା ପ୍ରଶଂସା କରିବ ପରି ! କହିବ, ମୋ ପୂନିଟିର କେଡ଼େ ସୁନ୍ଦର ବୁଦ୍ଧି ହେଲାଣି । ଘର କଥା ବୁଝିଲାଣି, ଦୁଃଖଧନ୍ଦାକୁ ମନ ଗଲାଣି ।

ଠିକ୍ ଓଲଟା । ଆଖି ଡବିଟି ଜେମା ଅନେଇଁ ରହିଚି ଏକା ଆଖିରେ । କଣ କହିବାକୁ ବସିଛି, ମୁହଁ ଫଟେଇ ହୋଇଯାଉଛି ପିଲାଙ୍କ ପରି । ଆହା !

ଏତକ ବୋଲି ତା'ର, ତା'ର ବୋଉ । ଶେଗ କ ଦଶା କଶଦେଲା ! ପୁନ ଖୁବୁଥାଏ । ମା ବାଉଳା ହେଉଛି ।

"ଏ ନୂଆ ବୁଦ୍ଧି କଏ ଦେଲା ଲୋ ତତେ, ହେ ପୁନ ! କୋଉ ଭଗାଣ ମୋ କପାଳରେ ନଆଁ ଲଗେଇଲା ? ଆହା ଦଇବ ରେ ! ଇଲୋ ଟୋକା, ମୋ ପେଟରୁ ଜନମ ହେଲୁ ବୋଲି ତୁ ମୁଁ ସମାନ ନୋହୁଁ ଲୋ । ତୁ ଯିବୁ ନାଇଁ: ଯିବୁନାଇଁ; ମୁଁ କହୁଦଉଚ—ଓଃ !"

ଘୋଳା ହୋଇ ପୁଣି ଆଉଜ ପଡ଼ିଲା । ପୁନ କ'ଣ କହୁଚ; କହୁଥାଉ । ସେ ଅବାଗିଆ ପିଲା, ତା ସାଙ୍ଗେ ବକବ କଏ ?

କହୁଚ ସିନା, ପୁନ ଯିବ ନାହିଁ – ଜେମା ଭାବିଲା । ତା'ର ସାତ ପୁରୁଷରେ କେହି ଯାଇ ନ ଥିବେ କ ପୁନ ଯିବ ନାହିଁ । ଆଖି ବୁଜିଦେଲେ ପନ୍ଦର ବର୍ଷର ଲମ୍ବା ବାଟ କଟିଯାଏ କେଉଁଠୁ ଣିକା । ନମେଷକେ ସେ ଫେରି ଆସେ ।

ଆଜ ଆଙ୍ଗୁଠିରେ ବଣ୍ଡି ହୋଇଛି । ପାଦ ଚଟା ହୋଇଯାଇଛି । ମୁହଁରେ ପରସ୍ତ ପରସ୍ତ ଦୁର୍ଭାଗ୍ୟର କଳା । ଆଖି ବୁଜିଦେଲେ ସବୁ ଭୁଲ ହୁଏ । ସେମିତ ସେଦନ ଫେରିଆସେ ।

କୋଇଲି ବୋବୋଉଚ । ପବନରେ ବଉଳର ବାସ୍ନା । ସେଦନ ଏମିତ ଥିଲା । ଜଦନକୁ ସାମ୍ନାକୁ ରଖି, ଜାଣ ପଣ ଭୁଲି ମାଡ଼ିଯାଇଥିଲା ଅବାଟରେ । ପାଦ ତଳେ ଲଦାଲଦ ବଉଳର ନରମ ଗାଲିଚା । ବସନ୍ତ ଆସିଥିଲା । ଢଗଘର ନାହିଁ, ଢୋଲମହୁରି ନାହିଁ, ଝେଙ୍କାରୁତ ନାହିଁ । ନୀରବରେ ବସନ୍ତ ଆସିଥିଲା ।

ପୁନ ଜନ୍ମ ହେଲା । ମେହେନ୍ତର-ସମାଜ ଆଶ୍ଚର୍ଯ୍ୟ ହୋଇ ଅନେଇଁ ରହିଲେ ପୁନବୋଉର ସୁନ୍ଦର ଟିଅଟିକୁ । ତା ପରେ 'ସାଙ୍ଗରେ ଏଇଟି କଏ ଲୋ ମେହେନ୍ତାଣୀ ! କଲୋ, କଏ ଦେଇଦେଇଛି କ ? କଏ ବା ଏଇଟି ?"

ଦେଇଦେଇଛି ସତ । ସେତକ ତା'ର ଦାନ – ହୀରା, ନୀଳା, ମୋତ, ମାଣିକ ।

କାମ ଡୋଡ଼ରେ ଦେହରୁ କେତେ ବେଗେ ଖୁଲିଯାଉଛି ଫଡ଼ାଫଡ଼ା । ଆଜ କେହି ବିଶ୍ୱାସ କରିବେ ନାହିଁ । ବଡ଼ ଚଞ୍ଚଳ ଦେହଟାକୁ ସେ ଖରଚ କରି ଖୋଲପା ହୋଇଛି, ମେହେନ୍ତର ସମାଜର ଅନ୍ୟ ସ୍ତ୍ରୀଲୋକ ପରି । ମେହେନ୍ତାଣୀ – ତା'ର ବସ୍ତୁର ନାହିଁ । ନରକରେ ଘାଣ୍ଟିହୋଇ ପ୍ରାଣପଣେ

ଝୋଟକାଧରଚ୍ଛି ପଦ୍ମଫୁଲ ପରି ତା'ର ଯୌବନର କଳ୍ପନାର ଶ୍ରେଷ୍ଠ ପ୍ରତୀକକୁ । ସେହି ତା'ର ପୂଜା—ଅନ୍ଧାରୁଆ ଜୀବନ ଉପରେ ପୂନେଇଁର ଜ୍ୟୋତ୍ସ୍ନା । ଆହା !

କାମ କରି ଗଲାବେଳେ ସାଙ୍ଗରେ ପୂଜ୍ଜୀ ବୁଲେଇଲା ନାହିଁ । ମେହେନ୍ତାଣୀ ପରି ତାଲିମ କଲା ନାହିଁ । କାନରେ ଗଣ୍ଠି ପକେଇଛି, ପୂଜା କାମ କରି ଯିବ ନାହିଁ । ହଉଥାଉ ଗଡ଼ର ଗଡ଼ର । "ହଁ ଲୋ, ଭାରି ଜାକୁଚଆଳୀ ହଉଚୁ । ଭାରି ତ ସ୍ନେହ—ଯୋଉ କାମ ଆସିବ ସ୍ୱାମୀଙ୍କୁ ଯେ, ଯିବେ ପାଇଖାନା ସଫା କରି !"

ଜେମା ଆଖିବୁଜି ପଡ଼ିରହିଥାଏ । ପୂଜା ତା'ର କଥାକୁ କାନକୁ ନେଲା ନାହିଁ । ମନ ଟାଣ କରିଛି, ସେ ନିଶ୍ଚୟ କାମକୁ ଯିବ । କହିଦେଇ ମନ ହାଲୁକା ଲାଗୁଛି । ଲାଗୁଛି, ଏଇ ସତେ କି ମା' ପାଇଁ ସେ ନିଜକୁ ଉଜାଡ଼ି ଦେଇ ସାରିଲାଣି । ସେ ବି ମା'ର ସେବା କରିବ । ଆନନ୍ଦରେ ମନ ଫୁଲୁଛି । ନୂଆ ଜୀବନ ହାତଠାରି ପଦାକୁ ଡାକୁଛି ପଥଆଗ ଦେଖାଇ ।

ଗାଡ଼ିରେ ଧନୀବୁଢ଼ା ପଇସା ଦେଇଯାଇଥିଲା । ଶୋଇବା ସ୍ଥାନରେ ଗୁଡ଼ିକର ଦମ୍ଭ ରହିଛି ସାଇତା ହୋଇ । ମା'କୁ କହିବ ନାହିଁ । ରହସ୍ୟରେ ଆନନ୍ଦ ଅଛି ।

ଘର ଗୃହ କଣ ଓଳେଇ ଆଣିଲେ କେଉଁଠି ଖୁଦମଲୁଖ ଦାନାଟିଏ ବି ନାହିଁ । ଝୋଲ ମାରିଲା ପରି ମା ପଡ଼ିରହିଛି । ଆଗ ତା'ର ପଥ୍ୟ ଦରକାର । ପଇସା ମୁଠେଇ ପଦାକୁ ବାହାରିପଡ଼ିଲା ।

□ □

## ଦଶ

ବଡ଼ ସହର ସଫା କରାହେଉଛି । ପୁନ ବୁଲୁଥାଏ । ପାଖରେ ଦୂରରେ ଚକ୍ଲାପଥର ସାହର ଲୋକେ । କଳ ପଥ । ରାସ୍ତାରେ ଝାଡ଼ୁ ଲାଗୁଛି । ଅପନାଗଦା ଦେଖି, ଅଳିଆ ଝିଣ ଦେଖି ମନକୁ ମନ ଅଣ୍ଟା ନଇଁ ପଡ଼ୁଛି, ହାତ କାମ କରୁଛି । ସଢ଼ା ନଳା କରେ କରେ । ପାଇଖାନା ପାଖେ ମଣିଷ କାମ କରୁଛନ୍ତି । ସେହି କାଉଦାନଆଁ ପଟୁଆର । ଘଡର ଘଡ଼ର ମଇଳା ଗାଡ଼ି, ମଇଳା ଟୋକେଇ କାଖେଇ ମଣିଷ । ସେହି ରକ୍ତମାଂସର ଦେହ ଅବିକଳ । ସେ ଦେହରେ ବି କେବେ କେବେ ତେଲ, ହଳଦୀ ବାଜେ, ସଫା ଲୁଗା, ରଙ୍ଗିଣୀ ଲୁଗା ବେଢ଼ା ହୁଏ, ଫୁଲ ଚଢ଼େ । କାହା ପାଇଁ କେବେ ସେ ଦେହ ବି ହୁଏ ପବିତ୍ର, ଲୋଭନୀୟ, ଆଦରର । ସେହି ଦେହ କାମ କରୁଛି, ଅଳିଆ ଘାଣ୍ଟୁଛି – ଜୀବିକାର ଗତି ।

ମରମଙ୍କର ଶୋଇରହିଛି ।

ନଦୀରେ ଗାଧୋଇ ପାଧୋଇ, ଗୁଣ୍ଡୁ ଗୁଣ୍ଡୁ ହୋଇ ମନ୍ତ୍ର ପଢ଼ି ଧାର୍ମିକ ଲୋକେ ବୁଲୁଛନ୍ତି । ସବୁ ସ୍ତରର ଲୋକେ, ଗୃହଠୁଁ ବ୍ୟବସାୟୀଯାକେ । ମନ୍ଦିରରେ ଘଣ୍ଟା ବାଜୁଛି ଚହଳ ପକେଇ । ମଠରେ ସଙ୍କୀର୍ତ୍ତନର ରୋଳ ।

ବଡ଼ ସହର ଧ୍ୟାନ ଧରୁଛି, ଝାଡ଼ା ହେଉଛି, ଗାଧୋଉଛି ।

ବଡ଼ ସହର ସଫାସୁତୁରା ହେଉଛି । ନଳା ପାଖେ, ପାଇଖାନା ପାଖେ ଆଣ୍ଠେଇ ପଡ଼ିଛନ୍ତି ମଣିଷ ।

ପୁନବୋଉର ପଥ ଦରକାର ।

"ଇଲୋ, ତୁ କ'ଣ କାମକୁ ଆଇଚୁ କି ? ଇଲୋ ଅପୂରୁବ ! ରହ ବା ପୁନ, ଶୁଣ୍ ଶୁଣ୍ –" କଜଳମତୀ ଟୋକେଇ କାଖେଇ ମାଡ଼ି ଆସୁଛି । ପଛେ ପଛେ ରଙ୍ଗ, ଟଙ୍କ ।

"ହେ ପୁନ ହେ ପୁନ –"

ଶୁଣିବାକୁ ତା'ର ତର ନାହିଁ ।

ମଇଳାଗାଡ଼ି ଅଡ଼େଇ ସନଆ ବୁଲୁଛି । "ତୋ ବୋଉ କେମିତି ଅଛି ପୁନ ? କୁଆଡ଼େ ଯାଉଚୁ ? ଆସିବୁ ଆଜି ? ଆସିବୁ, ତତେ ବାଇସ୍କୋପ୍ ଦେଖେଇ ନେବି ।" ତାନ୍ତ ଦେଖେଇ ସମସ୍ତେ ହସୁଛନ୍ତି । ସନଆଁର ଯୋଗ, ସେ

ଏମିତି ଢୋଲ ପିଟେ । "ହେ, ଗାଡ଼ି ହଟା; ବାଟ ବନ୍ଦ କଲୁ—"ପଛର ଗାଡ଼ିବାଲା କଟାଳ କରୁଛି । ପୂଜା ଚାଲିଗଲା । ବୋଉ ଭଲ ଅଛି, ମନ ଭଲ ଅଛି । ଉପତ ଲାଗୁଛି ଆଜିର ସକାଳ । ପୁଣି ଗହଳି; ବଡ ରାସ୍ତା । ମିଠେଇ ଦୋକାନରେ ମିଠେଇ ଦିଶୁଛି ଗଦା ଗଦା । ଭୁରୁ ଭୁରୁ ମାଛି ବେଢ଼ିଛନ୍ତି । ଭିତରୁ ଧୂଆଁ ଉଠୁଛି । ଲୋକେ ବସି ଖାଉଛନ୍ତି । ପାଟି ଆଁ ହେଉଛି, ପାଟି ବନ୍ଦ ହେଉଛି । ଖଣ୍ଡ ଖଣ୍ଡ ପୁରି । ଗୋଟା ଗୋଟା ମିଠେଇ । ବାହାରେ ଭିକାରି ନାକେଇଛି । ହାଡୁଆ ହାତ ବଢ଼େଇ, ଚେଁ ଚେଁ କରି ଜଣେଇ ଦେଉଛି ତା'ର ମନର କଥା । କୁକୁର ଅପେକ୍ଷା କରିଛନ୍ତି, ଠୁଙ୍ଗା ପଡ଼ିଲେ ମାଡ଼ିବସିବେ ।

ପୂଜା ଚାଲିଥାଏ । ପଇସା କେଇଟା ମନ ଭିତରେ ଚହଳ ପକେଇଛି । ଶୁଖିଲା ପେଟରେ ଅଲସୁଆ ଭାବନାର ଫସଲ ଅଗଛୁଆ ଅରମା ପରି । ଭଣ୍ଡାରି ମୁଠି ଖଲ ଖଲ ହେଲଣି ହାତ ଭିତରେ । ତଥାପି ମନେ ମନେ କହୁଛି, ଆଜି ଆଉ; ଆଉ ଦିନେ ।

ମିଠେଇ । ତା ପାଇଁ, ସନିଆ ପାଇଁ, ତା ବୋଉ ପାଇଁ । ଲୁଗାପଟା । ଆଉ କେତେ କ'ଣ । ମନଟା ହାଇଁପାଇଁ ହୁଏ । ଧନୀଲୋକଙ୍କ ସୁଖ ଲୋଡ଼ିହେଲେ ମିଳେ ନାହିଁ, କିଣିଲେ ମିଳେ । ତଥାପି ଅବୁଝା ମନଟା ବୁଝେ ନାହିଁ, ସଜେଇ ହେଉଥାଏ ଇଚ୍ଛାକୁ ।

ଥରେ ବଜାରକୁ ବାହାରିଲେ ଦେଖି ଦେଖି ଘଡ଼ିଏ କାଳ । ପିଲାଦିନୁଁ ଦେଖିବା ଅଭ୍ୟାସ । ହାଡ଼ିସାହିର ସମସ୍ତେ ଦେଖନ୍ତି, ଓଠ ଚାଟନ୍ତି, ମୁଣ୍ଡ ହଲାନ୍ତି । ଡାଆଁଣା ମନ ପରର ଦେଖି ନିଜେ ଝୁରୁଥାଏ ।

କି ମିଳିବ ?

ପଇସାତକ ଉଭେଇଗଲା ଦୋକାନୀର ବାକ୍ସରେ । କେତେ ଡେରି ହେଲଣି, ବୋଉ କଣ ଝୁରୁଥିବ ପଡ଼ି ପଡ଼ି ! ତରବର ହୋଇ ଗଲା ବାଟେ ସେ ଫେରି ଚାଲିଲା । ଦି' ପାଖେ ଉଞ୍ଚ ଉଞ୍ଚ କୋଠା ଅନ୍ଧାର କରି ଠିଆ ହୋଇଛି । କବାଟ ବାଟେ ଘରର ଗହଳି ଦିଶୁଛି । ଥିଲାଘରର ଘରକରଣା, ନିତି ଦେଖି ଆଖି ଅଭ୍ୟାସ ହୋଇଯାଇଛି । କି ଚଳା ଏଠି ? କାହିଁର ଦିନ ? ଏଠି କଣ ଏମିତି ଜରୁଆ ମା କତରରେ ପଡ଼ି ଧକେଇ ହୁଏ ? ଅଝାବର ଝେଣ୍ଟା ଦାନ୍ତ ନିକୁଟି ଗୋଡ଼େଇ ଆସେ ଘରର ଚାରି କଣରୁ ? ଠିଆ ହେବାକୁ ବହପ ନାହିଁ । ମିଛରେ କହିବେ ଚୋରଣୀ । ମେହେନ୍ତାଣୀ ଟୋକୀ କଣ ଉଣ୍ଡୁଚି ? ପାନ ଚୋବେଇ ଚୋବେଇ ନିକୁଟିଲା ଆଖିରେ ଚାହିଁରହିଛନ୍ତି ଟୋକାମାନେ । ଅସ୍ୱସ୍ତି ଲାଗେ । ବଡ଼ଲୋକ ଘର ଛୁଇଁ ପଡ଼ିଲେ ଛୁତରେ କ'ଣ ଗୋଟାଏ ମାଡ଼ିବସେ ।

ଘରର ଝରକା ବାଟେ ରନ୍ଧାଶାଳର ବାସ୍ନା । ସାତ ଚକୁଳ ଚଉଦ ଦେଁ । ଅଦେଖା ଖାଦ୍ୟର ପରଚସ୍ତ, ରୁଚ୍ଛାକୁ ଭେକ କରେ । ନଳା ପାଖେ କୁକୁର ନାକେଙ୍କାଉଛନ୍ତି । ବାଡ଼ ଠୁକୁଠୁକୁ କରି, ଦେହସାକ ବନା ଘୁରେଇ, ଖଣ୍ଡିଆ ଖାବୁଡ଼ା ଭୁକାଘ ଦଳ । ବଡ଼ କୋଠା କରେ କରେ ଭଙ୍ଗା ମଣିଷଙ୍କ ଥାଟ ଏକର ସେକର ଦୋହଲୁଛୁ ।

ପିଣ୍ଡାରେ ବସି ମାରୁଆଡ଼ବାବୁ ଗୋରୁଙ୍କୁ ମିଠେଇ ଖୋଉଛୁ । ନେଙ୍ଗୁଡ଼ ଓହଲେଇ ଭୁକାଘ ଘନଟା ନେହୁର ହେଉଛନ୍ତି । ଗୋ-ମାତା ଜଭ ଦେଖାଇ ଘୃଟିଦେଉଛୁ ଜଲଖିଆଗୁଡ଼ିକ । କଲାଭଅଁର ଅାଖିରୁ ସ୍ନେହ ଝରୁଛୁ ! ଘାଗର ପିନ୍ଧ ଗୋଡ଼ ଝୁମୁ ଝୁମୁ କରି କବାଟକୁ ଆଉଜ ଠିଆ ହୋଇଛୁ ମାରୁଆଡ଼ ଝିଅ । "ହରଗଲ, ଆହୁର ଦଅ ବାପା, ଆହୁର ଦଅ ।" "ହଜୁର୍ ଖାଇ ନାହିଁ କୋଉଦନୁଁ, ମରୁଛୁ ହଜୁର୍—" "ଭଗୋ, ଭଗୋ—" ଗୋମାତା ପାକୁଳ କରୁଛୁ, କାନ ହଲେଉଛୁ । "ହେ ଟୋକା, କାହିଁକ ଠିଆହେଇ ଅନେଇଁଚୁ ସେଠିଟାରେ ? ଭଗୋ, ଭଗୋ—" "ଘର ଭିତରେ ଦଅ ବାପା, ଡାଆଣାଗୁଡ଼ାକ ପେଟରେ ପଶିଯିବେ—"

ସତେ ତ କାହିଁକ ଅନେଇଁ ରହୁଛୁ ସେଠିଟାରେ ସେ ! ଚହଲ ବଢ଼ିଲାଣି । ବୁଲାବକାଳଙ୍କ ପାଟି ଓ ଝୁମୁକା ଶବ୍ଦ । ଜନସ୍ରୋତ ନେ ଆଣ । ତଳକୁ ମୁହଁ ପୋତ ପୁଣି ଘରମୁହାଁ ବାଟେ ବାଟେ । ମା ଅନେଇଁ ବସିଥିବ । କ ଅବସ୍ଥା ହେଲାଣି ତାର ! ହଠାତ୍ ଛଲଛଲେଇ ଆସିଲ ମା ପ୍ରତ ତାର ସବୁସାକ ସହାନୁଭୂତ । ଆପଣାକୁ ଗାଳଦେଇ, ଚଳ, ପୁନ ଫେରି ଗୃଲଲ ତାର ଭଙ୍ଗା କୁଡ଼ିଆକୁ ।

"ଓଃ, କଲେ ପୁନ ! ଯୁଗେ ବେଳ ! ଆରେ, କଏ ଦେଲ ମ ? କୋଉଠୁ ପାଇଲ୍ବା, ହଇଲେ ? ଆହା, ଝିଅଟି ମୋର ଲକ୍ଷୀମନ୍ତ । ଅରକ୍ଷିତ ଚୁଆକୁ ଦଇବ ଭରସା—ଆହା—"

ମୁଢ଼ି, ଗୁ ମା'କୁ ଦେଇ ସାରଲାଣି । ଭାତ ବସେଇ ଦେଇଛୁ । ଗୁଣ୍ଡି ଗୁଣ୍ଡି ହୋଇ ଗୀତ ବୋଲି ବୋଲି ପଇଡା ବାଛୁଛୁ ।

କେମା ଆଉଜ ବସିଛୁ । ଆଶ୍ଚର୍ଯ୍ୟ ଲାଗୁଛୁ, କୋଉଠୁ ପୁନ ସବୁ ସରଞ୍ଜାମ ଘେନ ଗୃଲଆସିଲ ! ଗୋଲମାଳିଆ ମୁଣ୍ଡ କଛୁ ଠିକ୍ କରି ପାରୁ ନାହିଁ । ପଗ୍ଭର ପଗ୍ଭର ତୃଣ୍ଡ ଘୋଳା ହେଲାଣି, ଝିଅଟା ଖାଲ ହସୁଚ କଛୁ କହୁନାହିଁ । ଆଜ ସେ ଘରଣୀ ହୋଇଛୁ । ଏଇ କେତେ ଦନ କେତେ କାମ କଲାଣି ସେ ।

ଝିଅ ନୁହେଁ ତ, ରକ୍ତ ଖଣ୍ଡେ । ମା ହୋଇ କ ସୁଝି ତାକୁ ଦେଇପାରୁଛ ? ବଡ଼ ହେଲଣି, ଘରେ ରହିବ, ଚେତିବ ।

ପ୍ରଶ୍ନ ଚନ୍ଦ୍ର ପର ଅବନାଶବାବୁଙ୍କ ବଡ଼ କୋଠା । ଅନେଇଁ ଭିତର ଖୋଜିଲେ ଖାଲି ଧୂର୍ଘଣ୍ଟାସ । ପୁନର ଉଦ୍ୟାନ୍ତ ତାହାର ସମାଜର କେଉଁ ମେହେନ୍ତରର କୋଉଁ । ଅଳିଆ କାଢ଼ିବ, ଅସନା ଗୋଟେଇବ, ମଇଳା ସଫା କରିବ । ପଞ୍ଚ ବୁଢ଼ୁ ବୁଢ଼ୁ କୋଉଁ ମଦ ପିଇ, ମାତି ଅସମ୍ଭାଳ । ଏମିତି ଝଡ଼ ଝଡ଼ ଧୋକଡ଼ୀ ହେବ ତା'ର ପୁନ ବ !

"ହଇ ଲୋ, କହିଲୁ ନାଇଁ, କଏ ଦେଲା ବା ? କହିବୁ ନାଇଁ ?"

କଏ ଗୋଟାଏ ଆସୁଛି । ସେହି; ତାନ ଦନ ଯେ ତଳ ଦେଇ ଯାଏ; ମୁନିସିପାଲିଟି ମିସ୍ତ୍ରୀ ।

"ହୁଁ, କେମା ମେହେନ୍ତାଣୀ ! ମଜା କରି ଶୋଇଚୁ ? ବେଶ୍, ବେଶ୍ । କାହିଁ, କଜେ ନ ଗଲୁ ତ ବଦଲା କାହିଁ ? ପାଇବୁ ଏ ମାସରେ ରଇ ଥା । କେମିତି ଛଟାଗାଳ ବସି ଖଦି ପୁଉଁଚୁ—ରଇ ଥା, ରଇ ଥା—"

କଥା କହୁ କହୁ ପଞ୍ଚମକୁ । ଦୁର୍ବଳିଆ ଦେହରେ ନାତି ସେହି ଶୋଧା ଶୁଣିବାକୁ କେମାକୁ ବିଷ ପରି ଲାଗୁଛି । ଶତୋଳ ଧରୁଛି । ମନ ହେଉଛି, ପାଟିରେ ବଳ ଥାଆନ୍ତା କ ସେ ସ୍ୱର ଲମ୍ବେଇ ଦଅନ୍ତା ଏମୁଣ୍ଡୁ ସେମୁଣ୍ଡ । କାହାର ସେ ଧାରେ ନା ଖାଏ ? ମିସ୍ତ୍ରୀ ବ ପ୍ରସ୍ତୁତ ହୋଇ ଆସିଛି । ଗ୍ରୁଇଡଲେ ଠିଆ ହୋଇ ଝାଳ ମାରିବ, ପିକା ଟାଣିବ, କଜିଆ କରିବ ! ଗୁଣ ଚନ୍ଦ୍ରି ପାନେ ଦେବାକୁ ବଇଦ ସେ କଜେ ।

କେମା ପାଟି କରୁଛି, "କ ହୋ ବାବୁ, ତମ ତମ ହଉତ କାଇଁକ ? କାମ ନ କଲେ ପଇସା କାଟିବ । ଘରେ ଆସି ଚୋଡ଼ କରୁତ କାଇଁକ ? ଦେଖୁ ନା ମୋ ଅବସ୍ଥା ! ମୋର ଆଉ କଏ ଅଛି କାମ କରି ଯିବ ?"

"ଭାରି କୁହାଳିଆ ପଡ଼ିଚୁ କେମା ମେହେନ୍ତାଣୀ ! କାମ ଗ୍ରୁଡ଼ିଦବୁ, ଆଗରୁ କହିଲୁ ନାହିଁ କାହିଁକ ? ମାସ ମଝିରେ ଅଇସ୍ତ୍ର ମୁଁ ଲୋକ ପାଇବ କାହୁଁ ? ଗ୍ଳଲିଖିରେ କଥା କହୁଚୁ ନା ସିଆଣିଆ ପଡ଼ିଚୁ ଭାରି ! ହେଁ—"

"ମୋ ଦେହ ମତେ ଅସାଧ । କହି ଦେ ଲୋ ପୁନ; କ'ଣ ହାଣ୍ଡିରେ ପୂରେଇ ଫାଣ୍ଡିକ ନ ଆସି ହୁକୁତ କରୁତ—"

ସାତ ହୋଇଗଲଣି, ମା ଖାଇବସିବ । ପୂନ କହିଲା, "ଯାଅ ବାବୁ, ତା କଥାରୁ କ'ଣ ପାଇବ ? ଜବୁଆ ମଣିଷ, କଣ ଠିକଣା ଅଛି କହ ? ତମେ ଯାଅ, କାଲିଠୁଁ ମୁଁ ଯିବି; ତା କାମ କରିଦେବି—"

"ସତ କହୁଚୁ ନା, ତାମସା କରୁଚୁ ଲୋ ଟୋକି ! ସତରେ ତୁ ଯିବୁ ?"

"ହଁ, ମୁଁ ଯିବି । ତମେ ଯାଅ ।"

"ଦେଖ୍, ଫେର୍ ଯଦି କେହି କାମକୁ ନ ଯିବ ଭଲ ହବ ନାହିଁ କହିଦଉଚି—"

ପୂନକୁ ଚାହିଁଦେଇ ମୁହଁରେ ହାତ ବୁଲେଇ ଆଣିଲା ମିସ୍ତ୍ରୀ । ଝାଳ ବାଲି ବାଲି ହୋଇ ସୁନ୍ଦର ଦିଶୁଛି । ନୂଆ ଆମଦାନି—ବିଶ୍ୱାସ ହେଉ ନାହିଁ ।

"ସତେ ଯିବୁ ତୁ ?"

"କହିଲି ପରା—"

ମିସ୍ତ୍ରୀ ଚାଲିଗଲା । କେମା ଡାକିଲା, "ପୂନ—"

"କ'ଣ ପାଇବୁ ଲୋ ତୁ ବୋଉ ! ତୁ ଖାଇ ବସ—"

□ □

# ଏଗାର

ଆଜି ସେ ଆସୁଛି—ସୁର ।

ମାନମୟୀ ଆପଣାର ଅନ୍ତର ଭିତରେ ବାରମ୍ବାର ତାର ପଦଶବ୍ଦ ଶୁଣେ । ଚଞ୍ଚଳରେ ଉଚ୍ଛଳି ପଡ଼ି ପଦାକୁ ଅନାଏଁ । ପୁଣି ବସି ଅପେକ୍ଷା କରେ ।

ତାର ବନ୍ଧୁ ବିଷ୍ଣୁ କାଲି ଚାକର ହାତରେ ବହି ଖଣ୍ଡିଏ ପଠେଇ ଦେଇଥିଲା । ସେଥିରେ ଚାରି ଆଙ୍ଗୁଳି ଚିଠି । ସୁର ଆଜି ଆସିବ । କିଛି ନୂଆ ଅର୍ଥ ଅଛି କି ତହିଁରେ ? ବିଛଣାରେ ଆଉଜି ପଡ଼ି ମାନମୟୀ ସେହି ଚିଠିଟାକୁ ଥରକୁ ଥର ଦେଖେ । ବିଷ୍ଣୁର ଗୋଲ ଗୋଲ ଅକ୍ଷରଗୁଡ଼ାକ ତାଳି ମାରି ତାକୁ ହସରେ ଉଡ଼ାଏ । କ'ଣ ହେଇଗଲା ? ସୁର ଆସିବ ତ ଆସୁ । ଖେଳେଣା ଆଲମାରିରୁ ଗୋଟାଏ ଖେଳେଣା କୁଆଡ଼େ ହଜିଥିଲା, ପୁଣି ଲେଉଟି ଆସିବ ହୁଏ ତ ।

କିନ୍ତୁ ଏତେଦିନ ତା'ର ଅନ୍ତର୍ଦ୍ଧାନ ଫଳରେ ମାନମୟୀ ବହୁତ ଭାବିଛି । ଥିବା ନ ଥିବା ଏକାଠି ସେହି ମୂର୍ତ୍ତିରେ ଆରୋପି, ଅନ୍ୟ ସମସ୍ତିଙ୍କ ସହିତ ତୁଳନା କରି ଦେଖିଛି; ସେ କେବଳ ଖେଳେଣା ନୁହେଁ । ବାରମ୍ବାର କେତେ ଦୀର୍ଘଶ୍ୱାସ, କେତେ ଭାବନା, କେତେ ଆଶା । ଯେ ହାତମୁଠାରେ ନ ରହେ, ତାକୁ ଖେଳେଣା କୁହାଯିବ କାହିଁକି ? ସୁର ତାର କିଏ ?

ଯେତେ ତଡ଼ିଦେଲେ ଗୁଅଁର କଳାଭଅଁର ପରି ବାରମ୍ବାର ସେହି ସ୍ମରଣ ଫେରି ଆସି ତାର କାନ ପାଖେ ଭଁ ଭଁ କରେ । କ'ଣ ସେ କାହାର କରିଛି ଯେ, ଲୋକେ ତାକୁ ହଟହଟା କରିବେ ? ବିଷ୍ଣୁ ଥଟ୍ଟା କରେ । ଅନ୍ୟମାନେ ରହସ୍ୟ କରନ୍ତି । ସୁର କଥା କୁଆଡ଼େ ସେ ବେଶି ପଚାରେ ବୋଲି । ଭାବିଲେ କାନମୂଳ ଲାଲ ହୋଇଯାଏ, ମୁହଁ ଝାଳେଇ ପଡ଼େ । ଏତେ ଜଣଙ୍କ ସଙ୍ଗେ ଚିହ୍ନା, ତା ସଙ୍ଗେ ବି । ସମସ୍ତିଙ୍କ ସଙ୍ଗେ ଟିକିଏ ବେଶି, ତା ସଙ୍ଗେ ଟିକିଏ ଅଳ୍ପ । ସୁର ତାର କାହାର ନୁହେଁ । ସାମାନ୍ୟ ପୃଥକ୍ ହେଲେ ବି ସମାଜକୁ ସେ ପାର୍ଥକ୍ୟ ସ୍ଥାନ ଦଶିବ ନାହିଁ । ସେ ଖୁବ୍ ବଡଲୋକ ପିଲା, ପ୍ରଚୁର ସମ୍ପତ୍ତି; ତେଣୁ ତା'ର ଦାନଗୁଡ଼ାକ ଏକରି ସେକରି ଫୋପାଡ଼ି ମାରେ ଏବଂ ସେ ଗୋଟାଏ ସମସ୍ୟା । ଯେତିକି ଅଳ୍ପ ସେ ଚାହେଁ, ସେହି ଦୃଷ୍ଟିରୁ ଅନୁଭବ କରି ହୁଏ କେଡ଼େ ଉପାସୀ ତା'ର କ୍ଷୁଧା; କିନ୍ତୁ ସେ ଗୁରେଇବୁରେଇ ହୁଏ ନାହିଁ । ମମତାର କଥା ପକେଇଲେ, ଝକ୍ ଝକ୍ ଦାନ୍ତରେ ଶାଣଦିଆ ହସ ହସିଦେଇ ସବୁ ସାନ କରିଦିଏ । କେତେ ଦିନ ଆସେ ନାହିଁ, ଦେଖାଏ ସତେ କି ସେ କେଡ଼େ ଉଚ୍ଚରେ !

କଲ୍ଲୁ ଅରେ ଅଧେ ଏକୁଟିଆ ଥିଲାବେଳେ କୌଣସି ଛଟକରେ ଯେତେ-ବେଳେ ଆଙ୍ଗୁଠିରେ ଆଙ୍ଗୁଠି ଛୁଇଁ ହୋଇଯାଏ, ଗୁଡ଼ିକନା ଲଗେ । ମୁହଁ ଟେକ ଅନେଇଁଲେ ଦଶେ ସୁର ଆଉ ପ୍ରକାରେ କେମିତ । କେତେବେଳେ ହଠାତ୍ ସେ କଅଁଳ ହୋଇଯାଏ ତା'ର କଥାବାର୍ତ୍ତାରେ । କଥା ପଡ଼େ, ତଳଓଠ ଥରୁଛି । ମୁହଁ ଉପରେ ଲୁଚିହେଲା ଚୋପାନର ଘଷମ, ନିଶ୍ୱାସର ବେଗ । ମାନମୟୀ ତା'ର ଦୁଇ ଆଖିରେ ଶୁବ ପୂରେଇ ଦୃଏ । ଇଚ୍ଛା ହୁଏ, ଏମିତ ଧରି ରଖିଥିବ ଆଖିଏ ଆଖିଏ । ସୁର ଏହାପରି ପଳୁଥାନ୍ତି, ସେ ତା'ର ମନଇଚ୍ଛା ଥରେ ଥରେ ସାନ କଣ୍ଠାରେ ତାକୁ ଫୋଡ଼ି ଦେଉଥାନ୍ତି । ଫଟା ବେଲୁନ୍‌ପରି ଚେପା ହୋଇ ତାହାର ଗୋଡ଼ ତଳେ ଭୂଇଁରେ ଲୋଟିପଡ଼ନ୍ତି ସେ । ତା'ପରେ ଆପଣାର ଅଳତା ବୋଳା ସରୁ ପାଦଟି ଅଲପେ ଉଠାନ୍ତି, ଥରେ କରି ଚାପି ଧାଅନ୍ତି । ଚରଦନ ତା'ର କଣ ବାନ୍ଧ ରଖିଥାନ୍ତି । କଳା ଚୂଡ଼ିଆଣୀର ଛୁଆରେ ଆଖିରେ ଝଟକମକ ମାରି, ଉଦ୍ଦୀପ୍ତ ହୋଇ, ବାରମ୍ବାର ସେ ଗୁହାଁ ରହେ । ଦେଖେ ସେ ସୁର ବଦଳିଗଲାଣି । ଆଉ ଜଣେ କଏ ସେ, ପବନରେ ଉଡ଼ିଯାଉଛି ଝରକା ବାଟେ ।

ସେ ଅଦ୍ଭୁତ, ସେ ଦୁରୂପ । ତେଣୁ ସେ ସାଧାରଣ ପଣର ବାହାରେ ।

ଓଲଟି ଛତବିଛତ କରେ—ଏଡକ ।

ତନ ମାସ ତଳେ ସହରକୁ ଅନ୍ଧାର କରିଦେଇ ସେ ଗାଁକୁ ଯାଇଥିଲା । ରୁମାଲରେ ନାଁ ଲେଖା ହେଉଛି, ଫୁଲ ପଡ଼ୁଛି ନାଁକୁ ନା ଛନ୍ଦା ହୋଇ । ନ କହି ସୁର ଗୁଲିଗଲା । ତା ପାଇଁ କେତେ ଆଲୋଚନା । ଅନେକେ କହୁଥିଲେ, ସେ ଗଲାଣି ବାହା ହେବାକୁ । ମାନମୟୀ ତା'ର ଶୋକରେ କାନ୍ଦିଥିଲା । ସେହି ଅଦ୍ଭୁତ ବାହା ହୋଇ ନାହିଁ । ପୁଣି ଫେରି ଆସିଛି; ଅଥଚ ଏମିତ ତା'ର ଅକଲ ଯେ, ଏଠିକ ଆଉ ନ ଆସି, ଆଗ ଯାଇଥିଲା ବସ୍ତୁ ପାଖକୁ । ବସ୍ତୁ—ବେଙ୍ଗପରି—ଚଷମା ଆଖି—ମୋଟା—ଓଳା—ବସ୍ତୁ ପାଖକୁ ଆଗ ସେ କାହିଁକ ଗଲା, ଏଠିକ ନ ଆସି ?

କ ସମସ୍ୟା ! ଗହନ, ଦୁରୂହନ । ପଢ଼ି ପଢ଼ି ଛଟପଟ ଲାଗୁଥାଏ । ବସ୍ତୁ ପଠେଇଥିବା ଉପନ୍ୟାସର ପୃଷ୍ଠା ଓଲଟାଇ ଲୁବଯାଉଥାଏ ଆପଣାର ଉପନ୍ୟାସ ହୁଅନ୍ତା କପରି । ନାୟିକା—ସେ । ନାୟକ—ଅବଶ୍ୟ ସୁର । ତନ ମାସର ଅଦର୍ଶନ ତାକୁ କେତେ ପାଖକୁ ବୋଲି ଆଣିଛି । ନାୟକ ପଣରେ ପ୍ରତିଷ୍ଠା କରିଛି । ଗୋଟାକୁ ଗୋଟା ଖଣ୍ଡ ଖଣ୍ଡ ଅନୁଭୂତ ଯୋଖି ହୋଇ ହେଉଥାଏ ତା'ର କାହାଣୀ । କେତେବେଳେ ଆପଣାକୁ ହିଙ୍ଗାସୁଥାଏ ଅପଣାର ଅନାସ୍ଥା ପାଇଁ,

କେତେବେଳେ ଘୂରକୁ । ସେହି ଚିନ୍ତା—କେତେ ନଷ୍ଟମାଝୀ ସେ, କେତେ ନିର୍ଦ୍ଦୟ ମଣିଷଜାତି !

"ଦେଇ—!" ଯଶୋଦା ଠିଆ ହୋଇଛି । ଧଡ଼ପଡ ହୋଇ ମାନମୟୀ ଉଠି ବସିଲା ।

"କିଏ ଆସିଚି କିଲୋ ଯଶୋଦା ? ଆସିଚି ?"

"ଧୋବା ଆସିଚି ଦେଇ । ହେଇଟି, ଖବର କାଗଜ ।"

"ଯା ଭାଗ୍ ।"

"ଇସ୍ । ଏ ଦାମୀ ଶାଢ଼ୀଟା ସ୍ୟାହି କେମିତି ହେଲା ? ମା ଲୋ, ମତେ ସାଆନ୍ତାଣୀ ଗାଳିଦେବେ । କହିବେ, ତୁ ଛଡ଼ିଚୁ ।" ଯଶୋଦା ବିଳାପ କଲା, "ହେଁ କ'ଣ ହେଇଚି, ଦେଇ—"

"ତୋ ମୁଣ୍ଡ ହେଇଚି । ଦେଖୁନୁ, ପୁଷି ସେହି ବୋତଲକୁ ଓଲଟେଇ ପକେଇଲା । ଯା, ନେଇ ଯା—" ଯଶୋଦା ସବୁ ପରିଷ୍କାର କରୁଛି । ତାର ଚିନ୍ତାଧାରାରେ ଗୋଳମାଳ ଘଟୋଉଛି ।

"ଆଚ୍ଛା ଝସର ଖସର ! କ'ଣ କରୁଚୁ ସେଠି ? ଯାଉନୁ କାହିଁକି ?"

ବିରକ୍ତ ହୋଇ ଖବର କାଗଜ ଓଲଟୋଉଛି । ସଭାସମିତି, ବକ୍ତୃତା, ବିଜ୍ଞାପନ । ଦୃଷ୍ଟିଆର ଯୋ ଯା କାଗଜ ଉପରକୁ ଉଠିଛି । ସେଠି ସେ ନାହିଁ । ସେଠି ସୁର ନାହିଁ ।

ଘରର ବଡ଼ତି ପାଇଁ ଏଇଥିରୁ ଗୁଡ଼ାଏ ବହୁତ ଆସେ । ଜାତି ଜାତି ଖବର କାଗଜ, ପତ୍ରପତ୍ରିକା । ଡାଣ୍ଡଘରେ ଆଲମାରି ଆଲମାରି ବନ୍ଧା । ସାଜସଜା-ପରି ଏଥିରୁ ବି ଗୁଡ଼ାଏ । ନ ହେଲେ ଶ୍ରେଣୀର ମର୍ଯ୍ୟାଦାରେ ହାନି ଘଟିବ ।

ଯଶୋଦା ଶୁଣିବ ନାହିଁ । ଘର ସଫା କରୁଛି । ଖବର କାଗଜ ଧରି ଆର କୋଠିକୁ ଚାଲିଗଲା । କୁଣ୍ଡର ଫୁଟିଲା ଫୁଲଗୁଡ଼ିକୁ ଆଉଁସି ଦେଇଗଲା ।

ଆଜି ସେ ଆସିବ । ଆଜି ବି କଣ ସବୁଦିନ ପରି ? ଏମିତି ଚାଲି ଲେଉଟାଣିବେଳେ ହଠାତ୍ ସେ ଆସି ପହଞ୍ଚେ । ରେଡ଼ିଓ ବାଜୁଛି । ଚା' ପାତ୍ର ସାମ୍ନାରେ ଥୋଇ, ଆରାମ କରି ବସି ଅଘୋରବାବୁ ସମ୍ବାଦ ଶୁଣୁଛନ୍ତି ।

"ଓଃ ! ଧଅ ମ ବୁଲେଇ ଝିଅ; ସବୁବେଳେ ଖାଲି ଖବର । ଦେଖ, ଗୀତଫିତ କିଛି ନାହିଁ କି ?" ଅଘୋରବାବୁ ହସିଦେଲେ ।

"ଖବର କାଗଜଟା ଧରି ବୁଲୁଛୁ ଯେ ମାନି, ପଢ଼ା ସରିଲଣି ? ତତେ କିଏ ଦେଲା ? ମୁଁ ଏଣେ ଖୋଜୁଛି ।" ମାନି କାଗଜ ବଢ଼େଇ ଦେଲା । ରେଡ଼ିଓର ସୁଇଚ୍ ମୋଡ଼ି ମୋଡ଼ି ସନ୍ଧାନ କରି ବସିଲା, ସାରା ପୃଥିବୀରେ କେଉଁଠି ବାଜୁଛି ଗୀତ ତା'ର ମନମାଫି ।

"ହେଇ ଦେଖ୍ ମାନି, କେତେ ବାହାରିଛି ଦେଖ୍ । ଦିନୁଁ ଦିନ ନୂଆ ନୂଆ ରୂପରେ ସାମ୍ୟବାଦୀ ସମ୍ସାର ଆଗେଇ ଆସୁଛି କେମିତି । ତାହାରି ଆଗୁଆ ଝଣ୍ଡା କଂଗ୍ରେସର ହରିଜନ ନୀତି । ଦକ୍ଷିଣରେ କେତେ ମନ୍ଦିର ଖୋଲିଦେଲେ, ଦେଖିଲୁ—"

ମୁହଁ ଟେକି ସୁନ୍ଦି ହାଇ ମାରିଲା । ଏମିତି ଭାଇ ଯୁଦ୍ଧକୁ ଆହ୍ୱାନ କରେ ।

"ଭଲ କରି ପଢ଼୍, ବୁଝିବୁ ।"

"ମୋ ମତରେ ସମ୍ସାର ହେବା ଉଚିତ୍ ଆମରି ଘର ପାଖେ । ଏହି ବାଦୁଡ଼ି ଚେଁ ଚେଁ ତେନ୍ତୁଳୀଗଛଗୁଡ଼ାକ ମୂଳରୁ ହାଣି ଦିଅନ୍ତେ । ମେହେନ୍ତରସାହିଟା ମୂଳପୋଛ କରି ଏଠୁ ଉଠେଇ ଦିଅନ୍ତେ, ଭଲ ହୁଅନ୍ତା ନାହିଁ ଭାଇ ? କେଡ଼େ ସୁନ୍ଦର ମନ୍ଦିର ଗଢ଼ା ହୋଇପାରନ୍ତା ସେଠି । ଘୂରି କରେ ଫୁଲବଗିଚା । ନହୁବା ଗୋଟାଏ ବଡ଼ ବାଇସ୍କୋପ୍ ଘର, ପାର୍କ, କେତେ କ'ଣ—"

"ନହୁବା ଗୋଦାମ ଧାଡ଼ି ଧାଡ଼ି, ରେଲ୍ ଷ୍ଟେସନ୍ । ଠିକ୍ କହୁଛୁ । ହରିଜନ ନୀତିର ପ୍ରଚାର କାର୍ଯ୍ୟ ପାଇଁ ତତେ ପଠେଇବା ଉଚିତ୍ । ଫ୍ୟାସିଷ୍ଟ୍ । ନାତ୍‌ସୀ ।"

"ରକ୍ଷା କର; ତମ ହାତୁଡ଼ି ପ୍ରହାର କର ନାହିଁ ଭାଇ । ଭୁଲ୍ ଯଦି କହିଲି ଅପରାଧ କ୍ଷମା କର । ହୁଁ, ହରିଜନ ନୀତି ଖୁବ୍ ଭଲ ଲାଗେ ତମକୁ ନିଶ୍ଚୟ; ନ ହେଲେ ବାରମ୍ବାର କାହିଁକି ସେହି କଥା ? ତମକୁ କ'ଣ ଅସଲ ଭଲ ଲାଗେ ? ହାଡ଼ି ହାଡ଼ି ଭଲ ଲାଗେ ? ଗ୍ରେଟିଣା, ମଦୁଆ, ଯାଦୁରୀ, କୋଢ଼ିଆ—"

"ଥାଉ, ଥାଉ; ବେଶି ବକ୍ ନା—"

ରେଡ଼ିଓ ଷ୍ଟେସନ କାଉଁ କାଉଁ, ଘାଉଁ ଘାଉଁ କରୁଛି ହାତ ତଳେ । ମାନମୟୀ ଗୀତଟିଏ ଖୋଜୁଛି । ଅଘୋର ପୁଣି ଖବର କାଗଜ ଉପରେ ଠାଏ ନିବଦ୍ଧ ରହିଲଣି । ମୁହଁରେ ଉତ୍ସାହ । ଏପରି ସୁଯୋଗ ମାନମୟୀ ଛାଡ଼ିଦେଇ ପାରେ ନାହିଁ । କହିଗଲା—"ମଲା, ଚିଡ଼ୁଛୁ କାହିଁକି ? ସତରେ କଣ ଏହି ଅପଚ୍ଛନ୍ଦ ହାଡ଼ିସାହି ତମକୁ ଭଲ ଲାଗେ ? ହରିଜନ ନୀତି ତ ଏହି ତମ ସାମ୍ନାରେ । ଯାହାକୁ ବିଶ୍ୱାସ କର ନାହିଁ, ତାକୁ ପ୍ରଚାର କରିବାର ମାନେ ?—"

"ଏଁ ବିଶ୍ୱାସ କରେ ନାହିଁ !" ଉଦାର, ପ୍ରସନ୍ନ ମୁହଁରେ ଆଶ୍ଚର୍ଯ୍ୟର ଝଲକ ।

"ବିଶ୍ୱାସ କରେ ନାହିଁ ! ତୋ ପରି ମୁଁ ନୁହେଁ, ବୁଝିଲୁ ? ସ୍ୱାର୍ଥ ଛାଡ଼ି ଅନ୍ୟର ଦୃଷ୍ଟିରେ ଦୁନିଆକୁ ଦେଖିବାକୁ ଚେଷ୍ଟା କରନ୍ତୁ ଯଦି, ତୁ ବି ମୋ ପରି ହବନ୍ତୁ । ତତେ ଯେତେ ବୁଝେଇଲେ, ଯେତେ ପଢ଼େଇଲେ, ତୁ ରହିଗଲୁ ଗୋଟାଏ ଗ୍ଲେଟିଆ ଫ୍ୟାସିଷ୍ଟ । ତୋ ଦେଇ ହେବ ନାହିଁ—"

ମାନମୟୀ ହସିଲି । "ବାପା ତୁମ ଉପରେ ଭାର ଦେଇଥିଲେ ପରା, ମେହେନ୍ଦ୍ରସାହୁ ଜମି କିଣି ପକେଇବାକୁ ! ସତେ ତ, ମୁଁ ଭୁଲିଯାଇଥିଲି । ଯା, ଆସ କରୁଥିଲ, କଣ ହେଲା ସେଇ; ଅନୁମତି ମିଳିଲା ? ସତରେ—ବୋଉ ପଚାରୁଥିଲା । ଯାଆନ୍ତା ଏକାଥରେ ନଟ ଛୁଟି । ଗ୍ରେଡ ଉପରୁ ଅନ୍ତତଃ ମଣିଷ ହିଙ୍କାର ପାଆନ୍ତା—" ଅଘୋରବାବୁ ଗମ୍ଭୀର ହୋଇ ଖବର କାଗଜରେ ବୁଡ଼ିଗଲେ । ମାନମୟୀ ତାର ଗୀତର ସନ୍ଧାନ ପାଇଲା । ବିକଳ ହୋଇ ଚଳାର କଲା ପ୍ରାଣ ମନ୍ଥି ଚକଟି ଗୋଟିଏ ଉର୍ଦ୍ଦୁ ରାଗିଣୀ ।

"ଓଃ—" ଅଘୋରବାବୁ କହିଲେ—ଆସ୍ତେ କର, କାନ ଫାଟି ଯାଉଛି ।

"କଣ ହେଲା କହିଲ ନାହିଁ ଭାଇ, ସେହି ହାଡ଼ିସାହି କିଣିବା କଥା । ଯାହାଙ୍କ ହାତରେ କାମ ଅଛି, ଏଠି ସମସ୍ତେ ତ ଆମର ଜଣାଶୁଣା, ସାଧୁ ଉଦ୍ୟମ ବି, ବାପାଙ୍କ ଆଦର୍ଶବାଦ । ଦୁଃଖର କଥା, ବାପାଙ୍କ ଆଦର୍ଶବାଦରେ ତୁମେ ଅନୁପ୍ରାଣିତ ହୋଇପାରୁ ନ ? ବାପା ଯଦି ଜାଣିବେ ସେମାନଙ୍କ ପାଇଁ ସହାନୁଭୂତିରେ ତୁମେ ତୁନି ହୋଇ ବସିଛ, ଆଉ କଏ ଶସ୍ତାରେ ସେ ଜମିତକ କିଣି ନେଉଛି, ତେବେ କେବେ ଖୁସି ହେବେ ନାହିଁ । ତୁମେ ଜାଣ, ମୁଁ ବି ଜାଣେ । ଏଇ ଠିକ୍ ବେଳ ମିଳିଛି । ସହର ଗଢ଼େଇ ନାଁରେ ଆମ କୋଠାକୁ ଲାଗି ଏତେ ବଡ଼ ବସ୍ତିର ମାଟିତକ ହାତକୁ ଆଣିବା । ତେବେ ତୁମେ ତ ସେଥିରେ କାମ କରୁଛ; ମୋଠୁଁ ବେଶି ଜାଣ ତୁମେ । କ'ଣ ହେଲା ଭାଇ, କହିବ ନାହିଁ ?"

"ଧେତ୍, ବାରମ୍ବାର ଖାଲି ବିରକ୍ତ କରୁଚୁ । ତୋର ତୁ ଗୀତ ଶୁଣୁ । ଏ ସବୁ କଥାରୁ ତୁ କ'ଣ ପାଇବୁ—"

"ବାଃ, ଖବର କାଗଜ ପଢ଼ିବାକୁ କହୁଚ, ଆପଣା ଘର କଥା ପଚାରି ଜାଣିବାକୁ କଛି ଦୋଷ ଅଛି ?" ଉର୍ଦ୍ଦୁ ରାଗିଣୀ ପ୍ରଚୁର ଦୁଃଖ ଢାଳି ଯାଉଛି ।

ଆଲୁଲାୟିତା ବେଗମ୍ ନାସ୍ରିନା, ଅଙ୍ଗୁର୍ ଗଳାରୁ ଝରୁଛି ଶିଞ୍ଜିନୀ— ମଣ୍ଡିତ ପ୍ରାଣସ୍ପର୍ଶୀ କରୁଣ ଯମୁନା; କାଲି ସଭାକୁ ପରାସ୍ତ କରିବାକୁ ହେବ । ମାନମୟୀ ଭାବିଲାଗିଲା । ଧୀରେ ଧୀରେ ରାଗିଣୀର କେଉଁ ଝଙ୍କାର ତାର ମନରେ ଭେଦିଗଲା, ମନ ଗଳିଗଲା ଛୋଟିକ । ସୋଫାରେ ଆଉଜି ପଡ଼ି ଅଧବୁଜା ଆଖିକରି ଘନ ଘନ ଦୀର୍ଘଶ୍ୱାସ ।

ଟେଲିଫୋନ୍ ଝଣ୍ଝଣେଇଲା । ଉଠିପଡ଼ି ଅଘୋର ପାଖକୁ ଗଲା ।

"ହେଇ – ସୁର ଆସୁଛି – "

"ଏଁ—"

"ଆଃ ! ଜଲ୍ଦି ଆସିଲେ ସିନା ଯା'ନ୍ତେଇଁ କ୍ଲବ୍‌କୁ ଟେନିସ୍ ଖେଳି ! ବସେଇ ରଖିଲା । ଯା, ବୋଉକୁ କହି ଦେ, ପୂଝାରୀକୁ କହ ।"

ଗ୍ଲାସ ଉପରେ ହାତରୁଣ୍ଡ଼ି । ଦେହ ଭିତର କେମିତି ହୋଇଯାଉଛି । ମୁହଁ ଥରେ ରଙ୍ଗା—ଥରେ ଶେଥା ।

□ □

## ବାର

ପାହାନ୍ତିଆରୁ ପୂନ ଉଠିଲା । ଆଜି ତାର ଗୋଟାଏ ଦିନ । ସେ କାମକୁ ଯିବ ।

ଜନ୍ମଦିନ ଆଉ ମରଣର ଦିନ ପରି ଆଜି ବି ଗୋଟାଏ ସ୍ମରଣୀୟ ଦିନ ତାର । ଯେତେବେଳେ ମଣିଷ ପେଟରେ ଜନ୍ମ ହୋଇଥିବା ମଣିଷ ବୁଆ ଓହ୍ଲେଇଯିବ କୁକୁର, ଘୁଷୁରି ଘରକୁ, ହାତରେ ମଇଳା ଘାଣ୍ଟିବ, ଦେହରେ ମଇଳା ଟୋକେଇ ବୁଲେଇବ । ଦୁନିଆର ଆଉ ଦଶ ଜଣଙ୍କ ବଲ ବଲ ହୋଇ ଅନେଇଥିବ, ଆଉ ଉଠିପାରିବ ନାହିଁ ଉପରକୁ ।

ଚଉଦ ବର୍ଷର ମୁଣ୍ଡରେ ଭବିଷ୍ୟତ ପଶେ ନାହିଁ । ପୂନ ଛନ ଛନ ହେଲା । ଗୋଟାଏ କୁତୂହଳ, ଗୋଟାଏ ସ୍ଫୂର୍ତ୍ତି । ସାଙ୍ଗର ଲୋକଙ୍କ ପରି ସେ ବି ଖଟିବ, ରୋଜଗାର କରିବ । ଆଉ ମା ବେକରେ ପଥର ହୋଇ ଝୁଲିରହିବ ନାହିଁ । ଫିଟି ଯାଇଯିବ, ଉଡ଼ି ଯାଇଯିବ । ମା'କୁ ଲୁଚେଇ ଦି' ପହରେ ଆମ୍ବ ଗୋଟେଇ ଗଲା ପରି, ସନିଆଁ ସାଙ୍ଗରେ ଦି' ଅଣିଆ ଟିକଟରେ ସହରର ବାଇସ୍କୋପ୍ ଦେଖି ଗଲା ପରି । ମା ଜାଣିବ ପଛରେ । ଫେରିଲେ ସେ ବିଗିଡ଼ିବ । ତାପରେ ଟିକିଏ ସାଲୁସ ସାଲୁସ, ଟିକିଏ ଖୋସାମତ । ସବୁ ସୁଧୁରି ଯିବ, ସବୁ ଭଲ ହୋଇଯିବ ।

ଆଜିର ଦିନଟା କେତେ ଆଗରୁ ଆସିବା ଉଚିତ ଥିଲା । ଆସି ପାରି ନାହିଁ । ବାଧା ଦେଇଆସିଛି ଯେ, ସେ ମନ୍ଦୁଜଦରେ ଶୋଇଛି । ତାକୁ ଉଠେଇବା ଦରକାର ନାହିଁ ।

ତରତର ହୋଇ ବେଶ ହୋଇପଡ଼ିଲା । ମୁହଁ ଧୋଇଲା, ମୁଣ୍ଡ କୁଣ୍ଡେଇଲା, ଲୁଗା ପାଲଟିଲା । ଦଳର ପଟୁଆରରେ ବଡ଼ ମଣିଷ ପରି ଆଜି ସେ ବାହାରିବ । କଅଁଳ ମନରେ ତରଳ ଔତ୍ସୁକ୍ୟ । କେଜାଣି କେଉଁ ତୀର୍ଥଯାତ୍ରା ଆଜି ତାର !

ପାଟି ଶୁଭୁଛି, ସେମାନେ ଆସିଲେ । କାଲିଠୁଁ କହି ରଖିଥିଲା ।

"କଲେ ପୂନ, ଯିବୁ ବୋଲି କହୁଥିଲୁ ସତରେ ନା ମିଛରେ ବା –"

"ହଇ ଲୋ, ରୁ କଣ—?" ଟଙ୍କ ଆଉ ରଙ୍ଗ ହସି ହସି ଗଡ଼ିଲେ । "କଲୋ, ଯାହା ଦେଖି ଯିବୁ କି ?" ଯା ଯା, ମଇଳା ଛିଣ୍ଡା ଖଣ୍ଡେ ପାଲଟିପକା;

ତା ଉପରେ କ'ଣ ଏଣ୍ଟେ ଗୁଡ଼ା । ଛୁଟା ଲାଗିବ । ଗୁଣ୍ଡୁଣି କାହିଁ ? ଟୋକେଇ କାହିଁ ? ହଉ, ଚଞ୍ଚଳ ଆ, ସେମାନେ ଦେବେ ସେଠି ।'' ପୁନ ଅପ୍ରସ୍ତୁତ ହେଲା । ମନେପଡ଼ିଲା, ମା ଯେମିତି ବେଶ ହୁଏ । ଅଧେ ଉତ୍ସାହ ଉଭେଇଗଲା । ଆଉ ପଛେଇ ହୋଇ ହେବ ନାହିଁ । ସେମାନେ ଅପେକ୍ଷା କରୁଛନ୍ତି, ହସୁଛନ୍ତି । ଘର ଭିତରକୁ ପଶି ମା'ର କଳା କନାଖଣ୍ଡ ଦେହେଇ ହୋଇ ପକେଇଲା ବେଳକୁ ଦେହରେ ସୁଉଁକନା ଲାଗିଲା ।

ଅଣ୍ଟାଭିଙ୍ଗି ଠିଆ ହୋଇ ଟଙ୍କ ଡାକୁଛି, ଚଞ୍ଚଳ ଆ । ଘରୁ ବାହାର ପଡ଼ିଲା ବେଳକୁ ଅସମ୍ଭବ ସାହସରେ ମନ ହାଲୁକା ଲାଗିଲା । ବକର ବକର ହୋଇ ଦଳ ଚାଲିଛନ୍ତି । ତାହାର ଭିତରେ ହଜଯାଉଛି ସେ । ତରତର ଚାଲି । ଏକାମୁହାଁ ମଣିଷ । ସକାଳ ଖୋଲିଯାଉଛି । ଟନ ଛୁଆ ବୁଢ଼ା ଟନ ପୋଟଳା ଧରି ପିମ୍ପୁଡ଼ି ଗାର ଖୋଜି ଖୋଜି ଚାଲୁଛି । ମନ୍ତ୍ର ବୋଲି ବୋଲି ନଈକୂଳରେ ଦେଉଳ ଆଡ଼କୁ କେହି କେହି ଚାଲିଛନ୍ତି । ସୁନ୍ଦର ଶାନ୍ତ ସକାଳ । ଭଗବାନଙ୍କୁ ସ୍ମରଣ କରିବା ବେଳ ।

ଆଗରେ ସେ ବଡ଼ ଘର । ମଇଳା ସଫା କରିବା ଲୋକେ, ରାସ୍ତା ସଫା କରିବା ଲୋକେ ଏକାଠି ହୋଇଛନ୍ତି । ହାଜରା ପଡ଼ୁଛି । ଗହଳି ଲାଗିଛି । ସନିଆଁ ଚମକି ଆସିଲା ।

"କଲେ ପୁନ ରୁ ବ ?"

"କ'ଣ ହେଲା ?"

ଆହୁରି କଥାଭାଷା ହୋଇଥାନ୍ତା । ସନିଆଁ ସବୁଦିନେ କେତେ ଉପରୁ ବେକ ଭିଙ୍ଗି ଅନାଏ । ଆଜି ତା'ର ଆପଣାର କାନ୍ଧ ଉଞ୍ଚ ହୋଇଯାଇଛି । ସମସ୍ତେ ବ୍ୟସ୍ତ, ଗପିବାକୁ ସନିଆକୁ ସମୟ ନାହିଁ । ସନିଆ ଚାଲିଗଲା । ମିସ୍ତ୍ରୀ ଆସିଲା—"ସତେରେ ତୁ ଆସିଲୁ ?"

"କହିଥିଲି ପରା ବାବୁ !"

"ହଉ, ତୋ ମା ବଦଳି ତୋ ନାଁ ଲେଖେଇ ଦଉଚି । ପୁଣି ତୋ ବୋଉ ଆସିଗଲେ ଅଲଗା ହୋଇ ତୋର ବି ନାଁ ରହିବ । ଦର୍‌ହମା ପାଇବୁ, ବୁଝିଲୁ ?"

ଏଣିକି ତେଣିକି ଚାହିଁ ପୁଣି ପାଖକୁ ଆସି, ସହାନୁଭୂତି ଦେଖାଇ ମିସ୍ତ୍ରୀ କହିଲା—ଟୋକେଇ, ଗୁଣ୍ଡୁଣୀ ଆଣି ନାହୁଁ ପରା ! ଆ, ମୁଁ ଦେଇଦଉଚି ।

ପୁନି ତାର ସାଙ୍ଗେ ସାଙ୍ଗେ ଗଲା । କରପତିଆ ଡାକ ନେଇ ମିସ୍ତ୍ରୀ କହିଲା—ରୁ ଖାଉ ଭଲ ଟୋକାଟିଏ । ତୋ ମା ପରା ନୋହୁଁ ।

'ଆଉ କାହା ପରା ବାବୁ ?'

"ହୁଁ, ତୋ ନାଁ ଟି କଣ ?"

"ପୁନି ।"

"ବାଃ, ଖାଉ ଭଲ ନାଁ ଟିଏ ।" ମିସ୍ତ୍ରୀ ତାର ମୁଣ୍ଡରେ ହାତ ବୁଲେଇଲା । "ଖାଉ ଭଲ ଟୋକାଟିଏ, ଖାଇବା ପିଇବା ବିନା ଶୁଖି ଯାଇଚୁ । ଦେହକୁ ଖଣ୍ଡେ ଭଲ ଲୁଗା ବି ନାହିଁ । ଆହା ! ମୁଁ ତ ସେଥିକୁ ଡାକୁଚ, ଏଠିକି ଆଇଲେ, କାମ କଲେ, ରୋଜଗାର କଲେ ସିନା ଭଲରେ ଚଳିବୁ; ନହେଲେ କେମିତି, ଏଁ ?"

ଆଉଁସି ପଟକାଉଚ; ଲୁଆଁ-ଅଲୁଆଁ ବାଲୁ ନାହିଁ । ଏଠି ତାର ଭିନେ ରୂପ । "ହଁ, ହେଇ ଦେଖିଲୁ—ଆଜଠୁ ଏ ଟୋକେଇଟା ତୋର, ଏ ଗ୍ରୁଞ୍ଜୁଣିଟା ତୋର । କାହାକୁ ଦବୁ ନାହିଁ କି ହଜେଇବୁ ନାହିଁ, ବୁଝିଲୁ ? ଯାହା ଦରକାର, ମତେ କହିବୁ—' ଲଜକୁଳା ମୁହଁଟିକି ଉପରକୁ ଟେକି ଧରୁଛି । "ମତେ କହିବୁ, ପଛେ କଥାଖିଆ ହେବା ଯେ— ।"

ତେଣେ ମଣିଷଙ୍କ ଘୋ ଘା ଶୁଭୁଛି । ମିସ୍ତ୍ରୀ ଡାକୁଛି—"ଜଲ୍‌ଦି ବାହାର୍, କାମ କରି ଯିବୁ ।" କଣ କାମ, କୋଉଠିକି ଯିବ ? ଭିଡ଼ ଭିତରକୁ ମିସ୍ତ୍ରୀ ପଶିଯାଉଛି । ପଛରୁ ଡାକ ହସିଦେଇ ପୁନି ପଚାରିଲା—ଟିକିଏ ବତେଇ ଦିଅନ୍ତ ନାହିଁ ବାବୁ—।

"ହଁ, ହଁ, ନୂଆ ମଣିଷ; ତାଲିମ୍ କର । ସବୁ ବତେଇ ଦେବ ଲୋ ସେ—" ପାଖ ଲୋକ ଥଟ୍ଟା କଲେ । ହସରେ ଉଡ଼େଇଲେ । ଜୁଳୁ ଜୁଳୁ କରି ଅନେଇଁ ଠିଆ ହୋଇଥିଲା ବେଳକୁ ମିସ୍ତ୍ରୀ ଚୋଡ଼ କାଢ଼ୁଛି, "ହେଃ, କେତେବେଳ ହେଲାଣି ଦେଖୁଚୁ ନା; ବସି ଫଟେଇ ହଉଚୁ ? ଏଇମାନେ ତତେ ଘର ଚହ୍ଲେଇ ଦେବେ । ଯା, କାମ କର ।" ହୋ କରି ଏକାଠି କେତେ ପାଟି । ପଦାକୁ ବାହାରି ଆସିଲା । ଟୋକେଇ ଧରି, ଗ୍ରୁଞ୍ଜୁଣି ଧରି ସହରଯାକ ଲୋକ ବିଛେଇ ହୋଇ ପଡ଼ୁଛନ୍ତି । ଖରା ଫିଟୁ ଫିଟୁ ଖାଲି କାମ—କାମ ।

ଅ, ଆ ଆରମ୍ଭ ହୋଇଗଲା । ଏଇ ଟୋକେଇଟା, ଏଇ ଗ୍ରୁଞ୍ଜୁଣିଟା ତା'ର । ଏହି ତା'ର ଜୀବନଯାତ୍ରାର ପ୍ରତୀକ । ଏହି ଲୋକେ ତା'ର କାମର ସାଙ୍ଗୀ । ନୂଆ ଅଭିଯାନ ମନ୍ଦ ଲାଗି ନାହିଁ । କୁତୁହଳ ବଢ଼ି ଚାଲିଛି ।

ତା ପରେ : 'ଆ ଲୋ ହୁଣ୍ଡୀ, ଦେଖୁଚୁ କ'ଣ ? ଜଲ୍‌ଦି ଯାଉଲେ ଆଉ ଘର ଅନ୍ଧ ପଡ଼ୁ !'' ରଙ୍ଗ ଡାକନ୍ତି କାଲ । ଧଡ଼୍‌କିନା ଟଙ୍କି ପଛ କବାଟ ଖୋଲିଦେଲା । କାବୁଲ ହୋଇ ଦେଖି ଶାତେଇ ଶାତେଇ, ପୁଣି ସେ ଅନ୍ଧାର ଖୋଲ ଭିତରକୁ ଅନେଇଲା । ଦୁର୍ଗନ୍ଧ ହାବୁକା ମାରୁଛି, ମୁଣ୍ଡ ଲୁମ୍ପିଯାଉଛି । ଶୋଇ ଶୋଇକା ଅପେକ୍ଷା କରୁଛି ତାକୁ ମେହେନ୍ତରାଣୀର ନଡ଼ଧନିଆଁ ଜୀବନ । ସତେ ତ, ଏଇ ତ କାମ । କୁଆଡ଼େ ସେ ଆସିଛି ? କିଏ ତାକୁ ତଡ଼ିଆଣିଲା ? ସ୍ୱା ପରେ ? ଆଖି ବୁଜି ଚେତନା ହରେଇ, ସେଇ ନରକର ଖାଁପରେ ସେ ଆପଣାକୁ ସମର୍ପି ଦେଲା । 'କାଲୋ, ଠିଆ ହେଇ ରହୁଚୁ କ'ଣ ବା ?'' ଟଙ୍କି, ରଙ୍ଗ କଣ ସବୁ କହୁଛନ୍ତି ? କଣ ସବୁ ଦିଶୁଛି ? କଣ ସବୁ ଶୁଭୁଛି ? ସାମ୍ନାରେ ସେଇ ଅନ୍ଧାର, ଦୁର୍ଗନ୍ଧ । ଝାଙ୍କୈଜପଡ଼ି ପୁଣି ଠିଆ ହୋଇଥାଏ ।

ଉପରୁ ନଳାବାଟେ କିଏ ପାଣି ଢାଳିଦେଲା । ଟଙ୍କି ଡାକପକେଇଛି—''ସନ୍ଥାଳ—ସନ୍ଥାଳ—''

ହଡ଼ୁମୁଦା ହୋଇ ନିଶ୍ୱାସ ବନ୍ଦ ହୋଇଯାଉଛି । ବଳ ସରିଗଲାଣି, ହାତ ଗୋଡ ଚଳୁ ନାହିଁ । ମୁହଁରେ ଲୁଗା ମାଡ଼ିଦେଇ ରଙ୍ଗ, ଟଙ୍କି ହସୁଛନ୍ତି, ପୁନିର ଅବସ୍ଥା ଦେଖୁଛନ୍ତି । ଟଙ୍କି କହିଲା—କାଲୋ, ଭେଟେଣା ହେଲୁ କାଲୋ ? ଆହା, ବିଚରା ଅଦନିଆଁ କୁଣିଆଁ । କ ଦେରେ ଠିଆ ହେଇଚ ! ସତେ ମ—

ରଙ୍ଗ କହିଲା—କାଲୋ କେତେ ଦେଖୁଚୁ ମ ? ଗହ୍ଲିର ଭିତରେ କଡ଼ ଦେଖୁଥିବୁ; ଦେଖିବୁ ରହ ବର୍ଷାଦିନେ । ମାଲୋ, ଏତେ ଛୁଆଛୁକର, ଆଇଲୁ କାହିଁକି ?

ପିଠିଆଡ଼ୁ ଟଙ୍କି ପେଲିଦେଲା । ଦହେଁ କହିଲେ—ଯା, ଜଲ୍‌ଦି ସାର୍—

ନାକ କାନ ବୁଜି, ମୁହଁ ଫଟେଇ ଦେଇ ପୁନି ମଇଳା ବାଲଟି ଟାଣି ଆଣିଲା । ଟାହି ଟାହି କରି ରଙ୍ଗ ଆଉ ଟଙ୍କି ତାକୁ ପୁନିର ବାଲ୍‌ଟିରେ ଅଜାଡ଼ି ପକେଇଲେ । ପୁନିକୁ ପାଟିକଲେ—ବଢ଼ିଣା ମାର୍ ଜଲ୍‌ଦି ଜଲ୍‌ଦି ।

''ହିଁ, ଦେ ଉଠା ଝଅଟି । ସେମିତି କ'ଣ ହଉଚୁ ମ ! ଅଭ୍ୟ କରିବୁ ପଛେ । ସୁଲ୍ । ଆଲୋ, ପିଲ କ'ଣ ମଇଳା କରନ୍ତି ନାହିଁ ? ସେମିତି ଭିବ୍ । ନୂଆ ନୂଆ ସବୁ ଅଡ଼ୁଆ ଲାଗେ । ଆଜି ଦିନକ ତ—''

ଠେଲପେଲ ହୋଇ ତଣ୍ଟିଯାକେ ବାନ୍ତି ଉଠିଆସୁଛି । ଦାବି ରଖୁଛି ଜୋର୍ କରି । ମଇଳା ଟୋକେଇ କାଖରେ ବୋହି ପିଠି ଆଡ଼କୁ କରି ମୁଣ୍ଡ ପୋତି ପୁନି ଚାଲିଲା । ଭାବୁଥାଏ, ଏ କ'ଣ ହେଲା ? କାହିଁକି ସେ ଉଚ୍ଛନ୍ନ ହୋଇ ଘରୁ ପଳେଇ

ଆସିଥିଲ ? ଏତେ ବଡ଼ ଦୁନିଆରେ ଆଉ କ'ଣ କିଛି କାମ ନାହିଁ ପେଟ ପୋଷିବାକୁ ? କଏ ସେ—କ'ଣ ବୋହୁଛି—ଯାଉଛି କୁଆଡ଼େ ? ହଁ।' ପଶିଯାଇ-ଥାଏ । ଆପଣା ପିଣ୍ଡ ଉପରେ ଧିକ୍‌କାର ଆସୁଥାଏ । ଟୋକେଇ କାଖେଇ, ମୁଣ୍ଡକୁ ପୋଡ଼ ପେଟକୁ ଗଣ୍ଡିଏ ରୋଜଗାର କରିବ । ଏଇ ଦଇବର ଭିଆଣ ତା ପାଇଁ ।

ଭାବ ହେଉ ନ ଥାଏ । ଗୋଟାଏ ଦୁଃସ୍ୱପ୍ନ ଭିତରେ ବାଟ ଚାଲୁଛି ଆଖି ବୁଜି ।

"ଇଲେ, ଇଲେ—"ରଙ୍ଗ ପାଟିକଲା । "ସାଇଲା, ସାଇଲା । ଥୋଇ ଦେ ପୁନି, ଥୋଇ ଦେ— ।" ଅତର୍କିରେ ଟୋକେଇଟା ଥୋଇ ଦେଉ ଦେଉ ଛିଆଣ୍ଡ଼ ହୋଇ ମଇଳାଗୁଡ଼ାଏ ତଳେ ପଡ଼ିଗଲା । "ମଲା ମ ଅଲଣ୍ଡିଟା, ଭଲ କରି ବାଲ୍ ବନ୍ଧେଇ ନ ଥିଲୁ କି ଲୋ ?"

ଥରେ ଦେଖିଦେଇ ପୁନି କହିଲା—ଇସି—

"ଇସି କ'ଣ ଲୋ ପିଠିଯାକ ତ ବାଲ୍ ବାଲ୍ କଲୁଣି—ହଉ, ଉଠା—"

ନାକରେ ଲୁଗା ମାଡ଼ି, ଛେପ ପକେଇ ପକେଇ, ବାଟୋଇ ପାଟି କରୁଛନ୍ତି—ଏହେ—ଜଲ୍‌ଦ, ଜଲ୍‌ଦ । ଗୃହଆଡ଼ୁ ପାଟି—ଜଲ୍‌ଦ—ଜଲ୍‌ଦ— ।

ଡର ଡର ହେଉ ହେଉ ହାତ ଅସନା ହୋଇଗଲା । ହାତକୁ ତଳେ ଘଷି ଘଷି, ବିକଳ ହୋଇ ପୁନି ରଙ୍ଗ ମୁହଁକୁ ଟଙ୍କ ମୁହଁକୁ ଅନେଇଲା । ଭରସା ନାହିଁ, ସହାନୁଭୂତ ନାହିଁ । ସେମାନେ ଖାଲି ହସୁଛନ୍ତି ।

"କଲେ, ସେମିତ କାହିଁକି ହଉଚୁ ବା ! ଏମିତ ହେଲେ ତୁ କାମ କରିବୁ ?"

'ଗନ୍ଧ—'

ଟଙ୍କ, ରଙ୍ଗ ହସି ହସି ଗଡ଼ିଗଲେ । "ଶୁଣ ତା କଥାକୁ, ନୂଆ କଥା କହୁଚ—ଗନ୍ଧ !" ଟଙ୍କ ପିଙ୍କା ଯାଚିଲା—"ନେ ପିଙ୍କା ଟେଣ୍ଡେ । ଲଗା, ଗନ୍ଧ ମରିଯିବ ।"

'ମୁଁ ପିଙ୍କା ଟାଣେ ନାହିଁ ।'

"ନ ହେଲେ ଆଜକ ଟାଣ୍ ବା, କେତେ ଗ୍ରେପର ହଉଚୁ ଲୋ ପୁନି !'

"କେବେ ତ କାମ କରି ନ ଥିଲୁ, ପିଙ୍କାର ମର୍ଯ୍ୟାଦା ଜାଣିବୁ କୋଉଠୁ ?" ରଙ୍ଗ କହିଲା—ପିଙ୍କା ଟାଣିବୁ, ମଦ ପିଇବୁ, କାମ କରିବୁ,

ପଇସା ରୋଜଗାର କରିବୁ । ନଇଲେ ଆଉ କ ଗତ ଅଛି ଆମର ? ଟେକି କହିଲା—ଆଉ କିଛି ନାହିଁ । ଏଇ ଆମର କୁଳ-ବେଉସା, ଏଇଠି ଛୁଆଁ ଛୁଆଁ ଲାଗେ ନାହିଁ । ଆଉ ଯୋଉଠିକି ଗଲେ ପାଟି କରୁଥିବେ—ଛୁଇଁ ଦେଲା, ଛୁଇଁ ଦେଲା । ଆଲେ ଟାଣ୍ ବା !

ଅତ ଆଗ୍ରହରେ ଚାଁ ଚାଁ କରି ରଙ୍ଗ ଆଉ ଟେକି ଆପଣା ଆପଣା ପିଙ୍କା ଶୋଷୁଛନ୍ତି । ଉଷୁମିଳାଥା ଘୂଅ ଗନ୍ଧ ଉପରେ ନେଳାଥା କଡ଼ା ଧୂଆଁ ପଚ ଧୂଆଁର ଗ୍ଧୁଲ ପୋଡ଼ିଲା ଗନ୍ଧ ପରି ଗନ୍ଧ । ଆପତ୍ତି ନ କରି ପୁଣି ପିଙ୍କା ମୁହଁରେ ଦେଲା । ଆଜି ସବୁ ଅପ୍ରାକୃତ, ସବୁ ନୂଆ ଆଜିଠୋଉଁ ।

"ଜଲ୍‌ଦି ଥା ମ, କେତେ ମଠ କରୁଚୁ ! ଆଜି କେତେ ଘରେ କେତେ ଯେ ଗାଳି, ଦେଖିବୁ ନାହିଁ, ଆପେ ଶୁଣିବୁ ଯେ ! ଆଇଲୁ ଧଅସି—"

"ଆଲେ ଚଞ୍ଚଳ ଗୃଲ୍ । ସାଇକେଲ ଚଢ଼ି ମିସ୍ତ୍ରୀ ଆସୁଚି କାମ ଚଳିଖିବାକୁ ।" ସେମିତ ଠାଆକୁ ଠାଆ । ଅଧବାଟରେ ରଙ୍ଗ ବାଟବାଙ୍କି ଗଲା । କହି ଦେଇଗଲା—ଅମଣିଆ ବଳଦ, ଭଲ କରି କାମ କରିବୁ, ନଇଲେ ଶୋଧା ଖାଇବୁ ଜାଣି ଥା । ଟେକି ହସି ହସି ଗଡ଼ିଗଲା । କହିଲା—କୁଆଡ଼େ ସେ ଗଲା ଜାଣିଛୁ ? ପୁଣି ପଗ୍ଧରିଲା—କୁଆଡ଼େ ? "ଥାଉ, ଥାଉ, ପଛେ ବୁଝିବୁ; ବୁଟା ପିଲାଲୋକ ।" କୁଆଡ଼େ ଗଲା, ଜାଣିବାକୁ ପୁଣିର ଉତ୍ସାହ ନାହିଁ । ଯୁଆଡ଼େ ଯାଉ ପଛେ ।

ମଇଳାଗାଡ଼ି ଥୁଆ ହୋଇଛି । ସନଆଁ ବସି ଗୋଡ଼କୁ ଗ୍ରୁଟୁଛି, ଚିଠି ମାରୁଛି । "କଲେ, ରୁ ବାହାରି ପଡ଼ିଲୁ କି ? ହଉ, ଭଲ କଲୁ । ଏଣିକି ରୋଜଗାର କରିବୁ । ପକା ଏଥିରେ । କାମ କେମିତ ମଜା ! ଘରେ ବସୁଥିଲୁ କାହିଁକି ?" ଆପେ ତା'ର ଟୋକେଇ ଟେକି ଅଜାଡ଼ି ନେଇ କହିଲା—ଯା ଏଥର । ଗାଡ଼ି ଅଢ଼େଇ ସନଆ ଗ୍ଧୁଲିଗଲା । ଏମିତ ହୁଣ୍ଡାଟା ସେ, ଉଣ୍ଡିରେ ପଦେ ହକ ବ ନାହିଁ ? ଝକଲପଣିଆ ଆଖି ବାଟେ ଠେଲି ହୋଇ ପଦାକୁ ବାହାରିବାକୁ ଚେଷ୍ଟା କରୁଥାଏ । ପୁଣି ଦେଖିଲା, ଗାଡ଼ି ଅଢ଼େଇ ଅଢ଼େଇ ସନଆ ଦୂରରେ ଗ୍ଧୁଲିଯାଉଛି । ଆପଣା ରାଗରେ ଆପେ ପୋଡ଼ିଜଳି ହୋଇ ପୁଣି କାମରେ ବୁଡ଼ିଲା ।

ବାରମ୍ବାର ବାରମ୍ବାର । ସେହି ଗନ୍ଧିଆ ନରକର ଅନ୍ଧାର ଭିତରେ ତାକୁ ବୁଡ଼ି ବୁଡ଼ି ଉଠିବାକୁ ହେବ । ଟୋକେଇ ଭର୍ତ୍ତି ହେଉଥିବ ବାରମ୍ବାର । ବାରମ୍ବାର କାହା ମଇଳାଗାଡ଼ିରେ ଅଜଡ଼ା ହେଉଥିବ । ମୁହଁ, ହାତ, ଦେହ, ସେ ବ ଘୂଅ; ସେ ବ ଅସନା । ଜଗତଟା ଏମିତ । ଗୋଟାସୁଦ୍ଧା । ସାଇତା

ହୋଇ ବଢ଼ିଥିବା ଚଉଦ ବର୍ଷର ଧାରଣା ବିଶ୍ୱାସ, କାହିଁ କେଉଁ ନରକରେ ଝଡ଼ି ପଡ଼ିଲଣି ସବୁ । ମନ ଭିତରକୁ ମୂରୁଗ୍ନ ଚହଟି ଯାଉଛି ।

ଶାସ୍ତ୍ର କହେ—ଦେହ ଗୋଟାଏ ମନ୍ଦିର ।

ପୁନର ମନ୍ଦିରରେ ଦେବତା ନାହିଁ । ସେ ଅଛୁଆଁ ।

ଦି ଥର ବାନ୍ତି କଲଣି । ଦେହ ଦୁର୍ବଳ ।

ସଦାବର୍ତ୍ତିଆ ପାଇଖାନା ପାଖେ ଖୁଣ୍ଟକୁ ଆଉଜି ଠିଆ ହୋଇଛି କରୁଣ ହୋଇ । ଗୃହଆଡ଼େ ଦିଶୁଛି ନାନା ବର୍ଣ୍ଣର ନରକର ରଙ୍ଗ, ତାର ବିବରଣ । ନାଳିଆର କଳା ପାଣି, ଅସନା ପଙ୍କକୁ ଟିଣ ଟିଣ କରି ଉଠେଇ ନେଇ ମେହେନ୍ତରମାନେ ଗାଡ଼ିରେ ଢାଳୁଛନ୍ତି । ସେ ଆଉ ପାରୁ ନାହିଁ । ଆଖି ଆଗରେ ଚକ ଭ୍ରମୁଛି ।

ପଛରୁ କିଏ ରଡ଼ୁଛି, "କି ବେ ଟୋକା, କେତେବେଳଯାକେ ମତେ ଏଠି ଅଟକେଇ ରଖିଥିବୁ ? ଯିବ, ଦେଖିବୁ ଅଇଗ୍ର ?" ମେହେନ୍ତର ପାଟି କରୁଛି । ମଦ ପିଇଛି, ଆଖି ନାଲିଆ ଦିଶୁଛି । ରାସ୍ତାରେ ଲୋକ ଚାଲିଛନ୍ତି, ଘୃଣାରେ ମୁହଁ ବୁଲେଇ ନେଉଛନ୍ତି । ଛେପ ପକେଇ ପକେଇ ଧୋବ ଧାଉଳିଆ ହୋଇ ଚାଲିଛନ୍ତି ଚଳନ୍ତି ପାଇଖାନା ।

"ଶୁଣୁଚ ଟୋକା ? ଯାଉଚ ରଇଥା—"

ସେ ପାଖେ ଟଙ୍କ ଯାଉଛି । ଆତଙ୍କରେ ପୁନି ଡାକିଲା—ଟଙ୍କ, ଟଙ୍କ— !

"ହୁଁ, ଟଙ୍କ ଟଙ୍କ—" ମେହେନ୍ତର ଖଡେଇ ହେଉଚି । ଟଙ୍କ ଆସିଲା । ଭିତରେ ପଶିଲାବେଳକୁ ପଲେ ଘୁଷୁରି । ବିରକ୍ତ ହୋଇ ଘୁଷୁରି ବାହାରି ଚାଲିଗଲେ । ଟଙ୍କର ହାତ କେମିତି କଲ ପରି ! "ଦେ ଧର୍—" ଟଙ୍କ କହିଲା । "ସେମିତି ହ'ନା । ସବୁଦିନେ ନ ହେଲେ ତୋ କାମ କରିବ କିଏ, କହିଲୁ ? ମେହେନ୍ତାଣୀ ଝିଅ, ଏମିତି ବାରନ୍ତ ନା !" ଧି ଖଣ୍ଡ ଛେଲୁଆରେ ଧରାଧରି, ତଣ୍ଟି ତଣ୍ଟି । ପୁନି ମୁହଁରେ କଥା ନାହିଁ । "କରେ ଖୋକା ମାଙ୍କଡ଼, ନୂଆ ମଣିଷ ଦେଖି ଶହିଙ୍କି ଉଠୁଚୁ କାହିଁକି ?" ମେହେନ୍ତର ଗାଡ଼ି ନେଇଚାଲିଗଲା ।

ପୁଣି ପାଇଖାନା, ପୁଣି କାମ । ଖରା କେତେ ଉଞ୍ଚକୁ ଉଠିଲଣି । ଭୋକରେ ପ୍ରାଣ ଧକ ଧକ । ଟୋକେଇ କାନ୍ଧେଇ ଟଙ୍କ ପଛେ ପଛେ ପୁନି ଚାଲିଥାଏ । "ହେଇ ଲୋ, ଏଇ ତୋ ଶେଷ ଘର । ଆ ଯିବା ଆ ।"

ଅବିନାଶବାବୁଙ୍କ ବଡ଼ କୋଠାର ବାରିଦୁଆର ଅପେକ୍ଷା କରି ରହିଛି ତାକୁ ନିମନ୍ତ୍ରଣ କରିବାକୁ ।

□ □

## ତେର

ଗ୍ରାମୋଫୋନ୍ ରେକର୍ଡ଼ରେ ସାନାଇର ଆଲାପ ବାଜୁଛି । ଧ୍ୱନିର ପୃଷ୍ଠପଟ ଗଢ଼ିଦେଇ ମାନମୟୀ ଠିଆହୋଇ ରହିଛି ଗୋଟିଏ ଭଙ୍ଗୀରେ । ଅଧା ଅଜାଣତାରେ ସାମ୍ନା କାନ୍ଥର ବଡ଼ ଦର୍ପଣରେ ଫୁଟି ଉଠିଥିବା ଆପଣାର ଛବିକୁ ଚାହିଁ ଦେଉଛି । ମୁହଁରେ, ଆଖିରେ ବିଭିନ୍ନ ଭାବର ଭଙ୍ଗୀ ଦେଖାଇ, ଦେଖୁଛି ତାର ପ୍ରତିଫଳ ।

ରଙ୍ଗ କାଚ, କାରୁକାର୍ଯ୍ୟ, ରଙ୍ଗିଣୀ ପର୍ଦ୍ଦାରେ ନିବୁଜା ପିଣ୍ଡା-କୋଠରି । ନକଲି ଶଙ୍ଖମଲମଲ ପଥରର ଖଣ୍ଡ ଖଣ୍ଡ କାନ୍ଥ ଚିତ୍ର ହୋଇଛି । ଛବି ଭିତରେ ଛବି । ଖୋଲେଇ ଚଳେଇ ହୋଇ ଗଢ଼ା ହୋଇଥିବା କମଲୁଟମୟ 'ଫର୍ଣ୍ଣିଚର୍' ଉପରେ କେଉଁଠି ନକଲି ତାଜମହଲ୍, କେଉଁଠି କାଠ ପଥରର ଚଢ଼େଇ, ଜନ୍ତୁ ଉଦ୍ଭିଦ । ଫୁଲଗଛ ପ୍ରଚୁର । ଚିନାମାଟିର ସୁନ୍ଦର କୁଣ୍ଡରୁ ହଳଦିଆ ମରଶାଲ୍ ଗୋଲପର ଲତା ବାହାରି ନର୍ତ୍ତକୀ ଚଳିପଡ଼ୁଛି ଫେଲେଣା ମନ୍ଦିର ଉପରେ । ମଝିର ବଡ଼ କୁଣ୍ଡରୁ ଫଲନେରନ୍ ଗୋଲପ ଥୋଡ଼ ଟେକି ବଡ଼ ଫୁଲ ଧରିଛି । ଫୁଲ, ଗଛ ଶୋଭା । କଳ୍ପନାର କୁଞ୍ଜ ସତ ହୋଇଛି ।

ରାସ୍ତା କରର କେଉଁ ଅଜଣା ଚିତ୍ରକରର ଖିଆଲ୍—କ୍ୟାଲେଣ୍ଡରର ଛବି—ପ୍ରସାଧନର ବିଜ୍ଞାପନ—କେଶବର୍ଦ୍ଧକ ତେଲର ।

କିନ୍ତୁ ମାନମୟୀ ପକ୍ଷରେ ଏ ସବୁ ସତ । ସାଜସଜ୍ଜା ଭଲ ଲାଗେ । ଆରାମ୍ ଭଲଲାଗେ । ଏହି ସୁନ୍ଦର ପଟ୍ଟଭୂମିରେ ନିଜକୁ ନାୟିକା କରି, ଉର୍କି ମାରି ମାରି ଖେଳ ଫେଳିବାକୁ ସେ ମନେକରେ ତାର କର୍ତ୍ତବ୍ୟ ।

କାଳର ଅନୁଭୂତି ପାସୋରି ହେଉ ନାହିଁ । ପ୍ରତିଦାନ ପାଇବା ଯଦି ପୂର୍ଣ୍ଣତା ହୁଏ, ତେବେ ତା'ର ହୃଦୟ ପରିପୂର୍ଣ୍ଣ ।

ସୁର ଆସିଥିଲା ।

ପୁଣି ଆସିବ ।

ଆଜି ତାର କି ନିର୍ଘଣ୍ଟ ? ଭାବିଲେ ତୃପ୍ତି ଥରେ । କଳ୍ପନାରେ କଳ୍ପନାରେ ଦେହଟା ଅଳସ ହୋଇ ଚଳିପଡ଼ିବାକୁ ଖୋଜେ । ଇଚ୍ଛା ହୁଏ ଦିନ ଆଉ ବଢ଼ନ୍ତା ନାହିଁ, ସମୟର ଗତି ଅଟଳ ହୋଇ ରହିଥାନ୍ତା ଖାଲି ତାରି ପାଇଁ ।

ସେ ପାଖେ କଥାଭାଷା ଶୁଭୁଛି, ଅଘୋରବାବୁ ଓ ତାଙ୍କ ବୋଉଙ୍କର ।

'କୋଉଠୁ ଚିଠି ଆସିଛି ମ ଅଘୋର, ବାପା ଲେଖିଛନ୍ତି କ ?'

'ହଁ ।'

'କଣ ଲେଖିଛନ୍ତି, ଆଣିଲୁ !'

'ମାନର ବାହାଘର କଥା । ହେଇ ପଢ଼ିନୁ !'

ପାନାଇଁ ବନ୍ଦ ହେଲଣି । ଗ୍ରନ୍ଥ ଭିତର ସ୍ତୁର୍ଣ୍ଣ କଲଣି । ଉପନ୍ୟାସର ନାୟିକା କଣ କରେ ଏତେବେଳେ ? ସେ କଣ କାନ୍ଦେ ? ମୂର୍ଚ୍ଛା ଯାଏ । ହାତରେ ତା'ର ପୁସି ବଲେଇର ଫୁଲୁକା ମୁହଁଟି । ସବୁ ହୋଇ ଦୃଷ୍ଟି ଲାଗିରହିଛି ଗୋଟାଏ ବିନ୍ଦୁରେ । ବଲେଇର ନାଲି ନାକଟି । "ହେ ପୁସି, ଦେଖା, ରଙ୍ଗଗୁଡ଼ାକ ବାଲୁ ବାଲୁ ହେଇଯିବ ଯେ ! ଦେଖା, ଅଡର ଛୁଅିଦବ । ଆଃ—ଓଲଟା—"

ବୋଉ ହସିଦେଉଛି । "ସତେ, ବାହାଘର କଥା ଲେଖିଛନ୍ତି ? ଝିଅ ବାହାଘର କଥା ଭାବ ଭାବ ସ୍ୱତରେ ନିଦ ହଉ ନ ଥିବ ପରା ! ସବୁ ଚିଠିରେ ଗୋଟାଏ ଲେଖା ନୂଆ ନୂଆ ପାତ୍ର । ଏ ଥର କିଏ ରେ ?"

"ଖୁବ୍ ଯୋଗ୍ୟ ପିଲା । ଘର ନାଁ ଡାକ୍ ଥିଲା, ଟିକିଏ ବସିଯାଇଛି ଯାହା, ସେ କିଛି ନୁହେଁ । ଆଜିକାଲି ଏପରି ସଚ୍ଚରିତ୍ର ପିଲା ଖୁବ୍ କମ୍ ପାଇବ । ଖୁବ୍ ଉଚ୍ଚଶିକ୍ଷିତ, ନୂଆ ସ୍ବଳରରେ ପଣିତ—"

"ତୁ କଣ କହୁଚୁ ମ ! ବୋଉ ରହସ୍ୟ କରୁଛି । କୋଉ ଚିଠିଟା ପଢ଼ୁଚୁରେ, ଏ ଥରଟା ନା ଗଲା ଥରଟା, ହଇ ରେ ! ସ୍ବୀକାର କରେ, କ'ଣ ଲାଟ୍‌ସାହେବ ହେଇଚ କରେ ଅଘୋର୍ ?—"

ତା'ର ବାହାଘର କଥା ପଡ଼ୁଛି । ବୋଉ ହସରେ ଉଡ଼ୋଉଛି । ସାନ୍ତ୍ୱନା ସେତିକ । ଏମିତ ଦିନେ ରହସ୍ୟଟା ସତ ପାଲଟିଯିବ । ଜଣେ ଆସି ପହଞ୍ଚିବ; ଧରି ନେବାକୁ କେଉଁ ଅଜଣା ଜୀବନକୁ । କାହିଁକି ଏ ନିଷ୍ଠୁରତା ? ବାହା କରି ତଡ଼ି ନ ଦେବା ଯାକେ କ'ଣ ମଣିଷର ମନ ଶାନ୍ତ ହୁଏ ନାହିଁ ? ବିଶ୍ୱପର—ସେ ଗୋଟାଏ ପୂର୍ଣ୍ଣଚ୍ଛେଦ । କିଏ ଖୋଜୁଛି ? କିଏ ମାରୁଛି ? କାହିଁକି ଏ ଯାତନା ?

"ଲାଟ୍ ସାହେବ ହେଲେ ବି ତୋ ଝିଅ ନାଖି ହେବ ନାହିଁ ବୋଉ ! କମ୍ ପାତ୍ର ତ ହାତରୁ ଯାଉନାହାନ୍ତି !"

"ହଁ ରେ ହଁ । ତୋତୁ ଭାଗ ନେବ ନାହିଁ ମ, ତୁ ଏତେ ଭାବୁଛୁ କାହିଁକି ? ପିଲାଛୁଆ ହେବେ, ତେବେ ବୁଝିବୁ ବୋଉର ମନ କଣ—" କେମିତ କଥଁ ଲେଇ

ହୋଇ ସ୍ୱର ହୋଇଯାଉଛି ବୋଉର ସ୍ୱର । ଏଥର ସେ ନାକ ପୋଛୁଥିବ । "ଦେଲୁ, ଚିଠିଟା ଦେଲୁ ।"

ଦୀର୍ଘଶ୍ୱାସ ।

"ହେ ପୁଷି, ଛୁଙ୍କ୍ ନା, ଛୁଙ୍କ୍ ନା—ଧେତ୍ । ଖାଇଦେଲୁ ଅଚାରଗୁଡ଼ାକ ? ତତେ ଆଉ ଧରିବ ନାହିଁ; ତୁ ଭାରି ଦୁଷ୍ଟ ।"

ହଂସପରି ପହଁରି ଚାଲିଗଲା । ଡାଳି ମାରି କହିଲା – ଆରେ ଚିଠି ଆସିଲାଣି କି ? କାହାର ଚିଠି ? ବାପା ଲେଖିଛନ୍ତି ? ଦେଖେଁ, ଦେଖେଁ । ତରତର କରି ଓଲଟେଇଗଲା । "ହେଇ ତ ଲେଖିଛନ୍ତି; କ'ଣ ଜମି କିଣା ହେବ ଯେ, ସେ ବିଷୟ ବୁଝିବାକୁ ଆସିବେ ।"

ବୋଉ କହିଲେ – "ହଁ, ହଁ; ଏଇ ମେହେନ୍ଦ୍ରର ଯାହା କିଣିବା ବିଷୟରେ ପତ୍ର ! ସତେ ତ, ମନେ ନ ଥିଲା । ଗଲୁ ନାହିଁ ଅଘୋର, ବୁଝି ଆସିଥାନ୍ତୁ । ତୁଟା ଭାରି ଅଳସୁଆ –"

"ହେଇ ପଢ଼, ଦେଖୁନୁ ବୋଉ – ବାପା ଚିଡ଼ିକରି ଲେଖିଛନ୍ତି – ହେଇ ଦେଖ୍ । ମୁଁ ଏଠି ବସି ଧନ୍ଦ ହେଉଥିବି, ଦି ଚାରି ଜଣ ଲୋକଙ୍କ ପାଖକୁ ଯା ଆସ କରି ମଙ୍ଗେଇ ପାରୁନା ତୁମେ ଯେ, ମୁଁ ନ ଗଲେ ନ ଚଳେ –"

ହାତରୁ ଚିଠି ଝାମ୍ପି ନେଇ ଅଘୋରବାବୁ କହିଲେ – ଖୁବ୍ ମାମଲତ୍ ହୋଇଗଲା; ଥାଉ, ଥାଉ – ବୋଉ କହିଲେ – ଠିକ୍ ତ ଲେଖିଛନ୍ତି । କଣ ମିଛ କଥା ? ଅଧେ ସୁବିଧା କରିଦେଇ ଗଲେ । ଦି ଚାରି ଥର ଯାଇ ପକ୍କା କରିଦେଇ ପାରୁନୁ ? କଥାଟା ମାଣ୍ଡୋଉଚ ସିନା ! ଅନ୍ୟ ଲୋକ କିଣି ପାରୁପର୍ଯ୍ୟନ୍ତ ଚେଷ୍ଟା କରୁ ନ ଥିବେ ? ଏତେକରି ଆଗରୁ ପଇସା ଖର୍ଚ୍ଚ କରି ଯଦି ହାତରୁ ଖସିଯିବ, କେମିତି ଦୁଃଖ ହେବ କହିଲୁ ଦେଖି !

'ହଁ, ତା ନୁହେଁ କଣ ।' ମାନମୟୀ ଯୋଡ଼ି ଦେଲା । ଉତ୍ସାହିତ ହୋଇ ବୋଉ ଉପଦେଶ ବାଢ଼ିଦେଲେ – "ପୁରୁଷର ପ୍ରଧାନ ଗୁଣ ଉଦ୍‌ଯୋଗ । ଘରେ ବସିଲେ, ବସି ଖାଇଲେ ନଈବାଲି ସରେ – ।"

"ଓଃ, ପାରିହେବ ନାହିଁ । ବାହାରିଲା ହିତୋପଦେଶ । କାହିଁ, କଣ ତମର ଟଙ୍କାଗୁଡ଼ାକ ଝଲ ଝଲ ହେଉଚ, ବାକ୍ସରେ ରଖିହେଉ ନାହିଁ ? ହାଡ଼ିସାହି ଗୋଟାକ କିଣି କଣ ହେବ ? ସେମାନେ କଣ ଉଠିଯିବେ ନା ଖଜଣା ଦେବେ ଯେ, ଏତେ ତରତର ! ତମର ହୋଇ ନାଁ'କୁ ରହିଥିବ ସାହିଟା, ସେମାନେ ଯେମିତି ଅଛନ୍ତି, ସେମିତି ରହିଥିବେ ।" ଅଘୋରବାବୁ କହିଲେ ।

"କଦାପି ନୁହେଁ ।"

"ନୁହେଁ ତ ଯା ସ୍ନାନ୍, ମତେ ବିରକ୍ତ କର ନାହିଁ ।" ତାର ଚଟି ତାଡ଼ାଟା ଧରି ଝିଅ ଦୂରକୁ ଘୁଞ୍ଚିଗଲେ । ବୋଉ କହିଲେ – କାମ କଥା କହିଲେ ତୁ ଏମିତି ଚିଡ଼ୁ କାହିଁକି ବାବୁ ? –

"ହେଉ, ନିମନ୍ତ୍ରଣ—ନିମନ୍ତ୍ରଣ –" ମାନମସ୍ୱୀ ଆବିଷ୍କାର କଲା । ନିରୂପମା ବାହା ହଉଚି ବୋଉ ! ଆରେ, କେଡ଼େ ଚଞ୍ଚଳ ! ଯା, ନିରୂପମା ବାହାଘର ଠିକଣା ହୋଇଗଲା ।"

ଉତ୍ସୁକ ହୋଇ ମୁହଁ ଟେକି ଅଘୋର ଗୃହିଣୀଙ୍କୁ ଚାହିଁରହିଛୁ । "ଦେଖିଲୁ ତ ବୋଉ ! ବୋହୂକରି ଆଣିଥିଲେ କଣ ତୋର ଖରାପ ହୋଇଥାନ୍ତା ? ଏତେ ଥର ଦୌଡ଼ିଲେ, କଣ ସବୁଦିନେ ବସି ରହିଥାନ୍ତେ ? ଆଜ ଯିବା ତାଙ୍କ ଘରକୁ ଚାଲ । ବୋଉ, କଣ କହୁଚୁ ? ଝିଅ, ଯିବା ନା ?—"

"ଗଲ ତୁମେ ସବୁ ଏଠୁ, ମୁଁ କାମ କରେଁ –"

ବୋଉ କହିଲେ – ଆରେ, ସେହି ଜମି କଣା କଥାଟା ଯା ଆଜ ବୁଝି ଆ, ନ ହେଲେ ସେ ଆସିଲେ ଚିଡ଼ିବେ –

ନ ଶୁଣିଲାପରି ଅଘୋରବାବୁ ବସି ଲେଖି ଲାଗିଲେ । ମା, ଝିଅ ଦୁହେଁ ଚାଲିଗଲେ । ତା'ପରେ ଉଦାସ, କ୍ଲାନ୍ତ ଦୃଷ୍ଟି ଟେକି ଆଉଜି ବସି ରହିଲେ । ସିଗାରେଟ୍ ପରେ ସିଗାରେଟ୍ ଶେଷ ହେଉଛି । ଅଳସ ଜୀବନ ଭିତରେ ଫୁର୍ତ୍ତି ନାହିଁ । କିଛି ଯେତେ ସ୍ୱାବଦେହେଲେ ଗୃହଆଡ଼େ ନିର୍ଘଣ୍ଟର ବନ୍ଧନ । ନିରୂପମା ବାହା ହେଉଛି । ଆଜ ଲାଗୁଛି, ନିରୂପମା ସେତେ ଅଗୁଣର ନ ଥିଲା ପରା ! ମନଟା ନିରମେଇଁ ଆସୁଛି ବୃଥାରେ । କଅଁଳ ଲାଗୁଛି । ମନେ ମନେ ଗୋଟାଏ ସମସ୍ୟା ଆସି ଅଡ଼ୁଆ ଲଗାଉଛି । କଣ ଗୋଟାଏ ଅଜଣା ଦୁଃଖ ।

ଖତେଇ ହେଲାପରି କାନ୍ଥରୁ ଝୁଲୁଛି ସମସ୍ତର ମୁହଁ । ଟିକ୍ ଟିକ୍ ହୋଇ ଘଣ୍ଟା ଚାଲୁଛି । କାମ ନାହିଁ, ପ୍ରେରଣା ନାହିଁ । ସିଗାରେଟ୍ ଧୂଆଁ ଭିତରେ ପାସୋରି ସ୍ମୃତି ଆସି ଛିଇ ଦେଖାଉଛି । ତାହା ଛଡ଼ା ଆପଣାର ପରିବେଷ୍ଟନୀରେ କିଛି ସ୍ପନ୍ଦନ ନାହିଁ । ସବୁ ଫମ୍ପା, ମାନ୍ଦା, ମୁଣ୍ଡା ସୁନା । ଶାନ୍ତି ନାହିଁ ।

□ □

# ଚଉଦ

ଗାଧୋଇବା ବେଳ ଗଡ଼ି ଯାଉଥାଏ । ମେହେଣ୍ଟରଙ୍କ ପାହାଚ ଟୁବ ଗାଡ଼ିଆକୁ ଗାଧୋଇବାକୁ କେତେ ଲୋକ ଆସିଲେଣି, କେତେ ଲୋକ ଗଲେଣି । ପୁନ ବସିଛୁ ତ ବସିଛୁ । ଗାଧୁଆ ସରୁ ନାହିଁ ।

ଯାଙ୍କର କେତେ ଲୋକ ଡାକଦେଇ ଯାଆନ୍ତି — କଲେ ପୁନ, ଉଠିବୁ ନାହିଁ କଲେ ? ହୋସ୍ ନାହିଁ ।

ଗାଧୁଆ ସରିଲେ ରନ୍ଧାବଢ଼ା, ଖିଆପିଆ । ଧନଯାକର କାମ ଅପେକ୍ଷା କରି ବସିଛୁ । ପଡ଼ିଥାଉ ସେ । ପୁନର ଆଉ ଖିଆପିଆରେ ମନ ନାହିଁ । କେଉଁଥିରେ ମନ ନାହିଁ, କେଉଁଥିରେ ସରାଗ ନାହିଁ । ଜୀବନର ସରସପଣ ଉପରେ କିଏ ନରକର କଳା ପାଣି ବୋଳଦେଇ ଯାଇଛି । ଭାବିଲେଣିର ଅନ୍ତ ନାହିଁ । ଯେତେ ଭାବିଲେ ଯେଉଁଠି ସେଇଠି ।

ଘଷି ଘଷି, ଧୋଇ ଧୋଇ ଦେହ ଶେଥା ପଡ଼ିଗଲାଣି । କାଚ କାଚ ଲୁଗାରୁ ଦାଗ ଯାଇଛି, ମନର ଦାଗ ମେଣ୍ଟି ନାହିଁ । ଆହୁରି — ଆହୁରି ।

ସମସ୍ତେ ଯାଇ ସାରିଲେ । ତୁଠ ଖାଲି ହେଲା । ହାତ ଦନ୍ତାକୁ ବାଲିରେ ରଗଡ଼ି ରଗଡ଼ି, ଚମ ଆମ୍ପୁଡ଼ି ହୋଇ ନାଲି ପଡ଼ିଗଲାଣି । ଦର୍ପଣ ପରି ସେହି ଓଦା ପାପୁଲି ଦନ୍ତାକୁ ମୁହଁ ପାଖରେ ଟେକି ଧରି, ଦେହ ଶୀତେଇ ପୁନ କହିଲା, ଛି — ଛି — ।

ପ୍ରାଣର କଥା ଖାଲି ସେହି ଦି ପଦ । ଲୁହ ଟଳ ଟଳ ଆଖିରେ ଅନେଇ ରହି, ସେହି ଦି ପଦ କଥା — ଛି, ଛି ।

ଭଲ ତ ଥିଲା ସବୁ, କଣ ହୋଇଗଲା ! ମାଟିପଟ ଅପବିତ୍ର ହୋଇଛି, ଗାଡ଼ିଆ ପାଣିରେ ବିସର୍ଜନ ଦେଇପାରିଲେ ଭଲ ହୁଅନ୍ତା ପରା ! ଯେତେ ଘୋରି ହେଲେ ସେହି ହାତ ଦନ୍ତା, ଆଜ ଯହିଁରେ ନରକ ଘାଣ୍ଟିଛି ।

ବାସ୍ନାଣୀ ପରି ରଗଡ଼ି ଲାଗିଥାଏ, ରଗଡ଼ି ଲାଗିଥାଏ । ଆଙ୍ଗୁଠି, ନଖ ପାପୁଲି — ରକ୍ତ ବୋହିଲାଣି, ପୋଡ଼ିଲାଣି ।

ନା, ଗାଡ଼ିଆର ପାଣି ସରିଯିବ ପଛେ, ଜମା ଯିବ ନାହିଁ, ଜମା ଭଲ ହେବ ନାହିଁ । ନରକର ଜୀଅନ୍ତା ବିଭୀଷିକା ।

ଛୁ – ଛୁ—

ଉଦୁମୁଦା ଗନ୍ଧ ମୁଣ୍ଡ ଭିତରୁ ଆଉ ଗ୍ରୁଡ଼ୁ ନାହିଁ । ଦେହଘଃକ ଅସନା ବୋଲି ହୋଇ ରହିଲା ଭଲ । ଟୁବ ଗାଡ଼ିଆର ପାହାଚ ଉପରେ ବସି, ହା' ପଶିଲା ଆଖିରେ ପାଣିକି ଅନେଇଁଲେ, ସବୁ ସେଗୁଡ଼ା ମନେ ପଡ଼େ । ଆଖି ଆଗେ ଆଗେ ନାଚୁଛି । ଘୃଣଆଡ଼େ ।

କଣ ହେବ ? କେମିତ ଯିବ ଏ ପାପ ? ସକାଳେ ଝାଉଁଳ ପଡ଼ୁଛି । ଦୁନଆଁ କଳା ନର୍ଦ୍ଦମା । ସେ ଖସି ପଡ଼ୁଛି । ବକଳ ହୋଇ ରଗଡ଼ ଲଗିଛି । ପୂନର ଗାଧୁଆ ସରୁ ନାହିଁ ।

"କଲେ ପୁନ, ରୁ ଆଜ ଉଠିବୁ ନାହିଁ କଲେ ?" କଳଲମଣି ରୁଠକୁ ଓହ୍ଲେଇ ଡାକିଲା । "ତତେ ଶୋକ ଶୋଷ କରୁନାହିଁ ? ତୋ ବୋଉ ଗୋଟି ଗୋଟି କରି ସମସ୍ତଙ୍କୁ ପଗ୍ରୁରୁଚ, କାଟିପର୍ମି ହଉଚ । ରୁ ଯାଉନୁ—"

କଳଲମଣି ସାବୁନ ଲଗେଇ ଗାଧେଇଲା ଆର୍‌ସି, ପାନଆଁ ସାଙ୍ଗରେ ଆଣିଥିଲା । ମୁଣ୍ଡରେ ନାଲିଆ ତେଲ ମାରି, ଗ୍ଛଇତଳେ ବସି ମୁଣ୍ଡ କୁଣ୍ଡେଇଲା ।

"କଲୋ, ତତେ କ'ଣ ଲାଗିଚ କଲୋ ? ବୋଉକୁ ନ କହି କାମ କରି ଗଲୁ; ସାହିଯାକଙ୍କୁ ଗନ୍ତ୍ରଣା ଝାଡ଼ୁଚ । ରୁ ଏଠି ବସିଚୁ ?"

ବୋଉର ମୂର୍ତ୍ତି ମନେ ପଡ଼ିଲା । ସତେ ତ !

"ଗାଳି ଦେଲେ ଦଉ, ମୁଁ କଣ କରିବି ? ତା ପାଇଁ ବଦଲା ଆଉ ଗୋଟାଏ ଚଆର କରିବ କିଏ ? କାମ କରି ଗଲେ କଣ ପାତକ ପଡ଼ିଗଲା ?" ଦାବି ଦାବି କଥା କହୁଛି । ମନେପଡ଼ୁଛି ସବୁ ।

ସେଇ କଥା ତ ସମସ୍ତେ ବୁଝେଇଲେ ଲୋ । ନଜେ ଧମାବୁଢ଼ା ଆସି କହିଗଲେ, "ତମେ ବେସ୍ତ ହନା ପୁନବୋଉ । ତମ ଧିଅ ଏମିତ, ପୁନ କାମକୁ ଗଲା କଣ ନାଙ୍କର କଲା ? ଯେବେ ହେଲେ ତ ଯ ଆନ୍ତା; ଆଜ କଣ, କାଲି କଣ ? କିଏ ବୁଝେଇବ ତାକୁ ? ରୁ ଯା—"

ଦେହଟା ଶୀତେଇ ପଡ଼ୁଚ । ସବୁଦନେ ସେହି କାମ, ସେହି ନରକ ଘାଣ୍ଟିବା ! ସେତକ ପାଇଁ ସେ ଜୀବନରେ ଭାଗୀ । ସବୁଦନେ ସେଇଆ !

"ହଇ ଲେ, ଏ କଣ ହେଲୁଣି ମ ! ଆଖି ଦ'ଟା କୁମ୍ଭାଟୁଆ ପରି, ଧିଅଟା ଶେଥା । ଜର ହବ ଯେ—" ଯାଉ, ଧିଅଟା ପୋଡ଼ିଜଳ ଯାଉ । କଳଲମଣୀ କ ତେଲ ଲଗୋଉଚ ? ଯୂଇଫୁଲର ବାସ୍ନା । ଘୃଣଆଡ଼େ ଯୂଇଫୁଲ

ଫୁଟିଉଠୁଛି ! ରଙ୍ଗ ଶାଢ଼ୀ ପିନ୍ଧି, ବାଳ ମୁକୁଳେଇ, ସୁନ୍ଦର କଜଳମତି ଅଳସେଇ, ଅଳସେଇ କଥା ଗପୁଚି । ସେଠି ମହକ ଅଛି । ସେଠି ଅଛି ଆଶାର ବାଣୀ । ଜୀବନଟା ପୋଡ଼ାଜଳା ଅଙ୍ଗାରକୁଢ଼ ନୁହେଁ । ଓଟାଣ ହୋଇ ଯାଇ ଆଶ୍ରେଇ ପଡ଼ି, ପୁନି ହାତ ବଢ଼େଇଲା; କହିଲା—ମତେ ଟିକଏ ତେଲ—

"ଟିକଏ କଣ କରିବୁ ଲୋ ? ଦେଖା, ତୋ ମୁଣ୍ଡ ବାନ୍ଧିଦେବି ।"

ଆଉଁସି ଆଉଁସି, ସାଉଁଳି ସାଉଁଳି ମୁଣ୍ଡ ବାନ୍ଧିଦେଉଛି, କଥା କହୁଛି ହସି ହସି । ଦେହକୁ ଦେହ ଲଗି ମହକରେ ଆଖି ବୁଜି ହୋଇପଡ଼ୁଛି । ତୀବ୍ର ସୁଖର ପ୍ରବଳ ଆନନ୍ଦ ପାଇଁ ଜୁଆରିଆ ହୋଇ ଆକାଙ୍କ୍ଷା ଉଠୁଛି । ଭାବୁଛି, ଗୋଟାସୁଦ୍ଧା ସେ କଜଳମତୀର । ନୂଆ ଜୀବନ । ସେଠି କଜଳମତୀ ପର ନୁହେଁ ।

ଏହି କଜଳମତୀକୁ କେତେ ଲୋକ ପୁଣି ଦେଖିପାରନ୍ତି ନାହିଁ । କ ଯାଏ ପୁନିର ? ସେ ମଇଳା କାଢ଼ିଛି, ଗନ୍ଧରେ ସିଝିଛି । ଗୁଠରେ ଆଉଜିଛି କଜଳମତୀର କୋଡ଼ରେ । କାନ ପାଖେ କେତେ ସୁଆଦିଆ କଥା ମନ ଜାଣି । କଜଳମତି ନୂଆ କଥା କହୁଚି । କହୁଚି, ସେ ସୁନ୍ଦର । ସଜେଇଦେଲେ ପଣ୍ଡା ପରି । ଲୋକେ ଝୁରି ହେବେ । କହୁଚି, ତା'ର ସୁନ୍ଦର କପାଳରେ ଦୁଃଖ ଲେଖା ନାହିଁ । ମଇଳା କାଢ଼ିବାର ଅସନା ବାଟଠୁଁ ଫୁଲଫୁଟା ଅବାଟରେ ପଡ଼ିଗଲେ ମଉଜ ଅଛି । ଅଭାବ ନାହିଁ, ପେଟ ଭୋକିଲା ନାହିଁ ।

"ହେଇ, ଦେଖ୍ ତୋ ମୁହଁକୁ; ସତେ ପୁନେଇଁର ଜହ୍ନ । ମା'ଲୋ, କେତେ ଲୋକ ଗଦାହେଲେଣି ତତେ ଦେଖିବାକୁ । ହେଇ, ତେଣିକ ନଘା କର । ହସୁଚୁ କଣ ଲୋ; ମୋ ପାଖକୁ ଆସନ୍ତି କ ଜାଣୁ । ଉଠ୍ ଏଥର ଯିବା, ଡେରି ହେଲା—"

ଦ ପାହୁଣ୍ଡ ନ ଯାଉଣୁ, କଜଳମତୀ ବିଳିବିଳେଇ ପାଟି କଲା— "ହଇଲେ ପୁନି ! କଣ ହେଲା ?"

କଜଳମତୀ ଲୁଣ୍ଠେଇ ପକେଇ ହସି ହସି ଗଡ଼ିଗଲା । କଣ ସେ କହୁଚି ? ପୁନି କଲାକାଠ ପଡ଼ିଗଲା । "ନେ ମୋ ଓଦା ଲୁଗାଟା, ମତେ ଭାରି ଲାଗୁଚି, ତୁ ଗୁରେଇ ହେଇ ଚାଲ୍ । ତୋ ବୋଉ ପାଖେ ଛାଡ଼ିଦେଇ ଆସିବି—"

"ସେମିତ କାହିଁକି ହଉଚୁ"

"ତୋ ମୁଣ୍ଡ ଗଣ୍ଡି । ଚାଲ ଆ ।"

□ □

# ପନ୍ଦର

କଜଳମତୀ ପୁନକୁ ଆଣି ଗୁଡ଼ିଦେଇଗଲା । ଫୁସ୍ ଫୁସ୍ କରି କେମାକୁ କଣ ବୁଝେଇ ଦେଇଗଲା । ପୁନକୁ ଶୁଭୁଥାଉଥାଏ ଟିକିଏ ଟିକିଏ । ମୁହଁ ଶୁଖିଯାଉଥାଏ ! ଆଶଙ୍କାରେ ଗ୍ରୁଡ ଧଡ଼ ଧଡ଼ । କଣେଇଁ କଣେଇଁ ଗ୍ରହୁଁ ଥାଏ; ବୋଉ କାଳେ କିଛି କହିବ କି ?

କିଛି ନ କହି, ଥିର ହୋଇ କେମା ଆଉଜି ଠିଆ ହୋଇଛି । କେମା ଡାକିଲା—ପୁନି । ଦେହକୁ କାଠ କରି ପୁନି କଥା ଶୁଣିବାକୁ ଅପେକ୍ଷା କଲା । ଭେଁ କନା କାନ୍ଦୁଉଠି କେମା ବାହୁନିଲା—ଆଲୋ ମୋ ପୁନି ଲୋ !

ବୋଉର ମଥା ବିଗିଡ଼ିଛି । କାନ୍ଦି କାନ୍ଦି ଭସେଇ ଦଉଛି । କିଛି ବୁଝିହେଉ ନାହିଁ । କଜଳମତୀ ଭାତ ଘରୁ ଭାତ ନେଇ ଆସିଲା । କହିଲା—ଛି, କାନ୍ଦୁଛ କାହିଁକି ? ଥାଏ ଧର । ପୁଣି ଅସୁସ୍ଥାଏ । ପୁନି ବକା ପରି ବସି ରହିଥାଏ । ଗୋଡ଼ରୁ ହାତରୁ ପ୍ରାଣ ଗୁଡ଼ି ଯାଉଥାଏ । କେମା ଭାତ ଘେନି ଆସି କହିଲା—ଖାଇ ଦେ ଦଣ୍ଡା— । ପୁଣି ତାର କାନ୍ଦ । କହିଲା—ଭାତ ଖା, ବସିଲୁ କାହିଁକି ?

ଭାତ । ହାତ ବଢ଼େଇଲାବୁ ସବୁ ମନେପଡ଼ିଲା । ଓଲଟେଇ ପୋଲଟେଇ ହାତ ପାପୁଲିକୁ ଦେଖି ଲାଗିଲା । ଏହି ହାତ ଏଇଠି ଲାଗିଥିଲା । କୋଉ ହାତରେ ସେ ଭାତ ଖାଇବ ?

"କଲେ ଖାଉନୁ—"

ଭାତଗୁଣ୍ଡା ପାଟିକି ନେଉଁ ନେଉଁ ଦେହ ବୁଲେଇ ଉଠିଲା । ବିକଳ ମୁହଁ କରି କେମା ବସିରହିଛି । ଭାତରେ ଲୁହ ମିଶିଗଲା । ପୁନି ଖାଇ ପାରିଲା ନାହିଁ ।

"କଲେ ଗ୍ରେପଣ୍ଡ ହଉଚୁ ? ଭାତ ଖାଉନୁ ? କାନ୍ଦୁଚୁ କାହିଁକି ଲୋ ? ମଲା, ଯେବେହେଲେ ତ ଘରେ ରହିଲୁ; କୋଉଠି ବରଘର ଲାଗିଚି ଶାଶୁଘର ଯାଉଚୁ ଯେ, ବାହୁନୁଚୁ ? ଏଥିପାଇଁ ଗୋଟାଏ କାନ୍ଦ କଣ ?"

କେମିତି ଖାଇବ ! ଏଇ ହାତ— ।

ଭାତ ପତରେ ଅସନାକୁଡ଼ ଫୁଟି ଅନେଇଛି । ଭାତ ନୁହେଁ, ସେଇ କଦାକାର, ସେଇ ବିଷାକ୍ତ, ଦୁର୍ଗନ୍ଧ । ଲୁହ ବୋହି ଯାଉଛି । ପାଟିରେ ଭାତଗୁଣ୍ଡା ଗିଳି ହେଉ ନାହିଁ । ଅ’କର ପୁନ କହିଲା – ହଉ ନାଇଁ ବୋଉ ।

“କୋଉଠୁ ହବ ? ଖରାରେ ବୁଲ, ଧିଅ ଗରମ । ଯା, ଶୋଇପଡ଼ ।”

ବେଳ କଟିଯାଉଛି । ଗୁଡ଼ଗୁ ଲମ୍ବି ଯାଉଛି, ଲମ୍ବିଯାଉଛି । ପଛର କଥା ଭାସି ଭାସି ଆଗକୁ ଚାଲିଯାଉଛି । ଆଗର ଅଜଣା ଘଟନା, ନିଜ ମନର ଆକାଙ୍କ୍ଷା ପ୍ରବୃତ୍ତି ମଣ୍ଡି ହୋଇ, ରଙ୍ଗ ବୋଳି ହୋଇ ବଢ଼ି ବଢ଼ି ଆସୁଛି ସାମ୍ନାକୁ । ରହି ରହିକା ସବୁ ଧାରଣା ପୁଣି ଗୋଳମାଳ ହୋଇଯାଉଛି, ଭୁଲ ହୋଇଯାଉଛି । କେବେ ନ ଆସିଥିବା ନୂଆ ଆକାଙ୍କ୍ଷା ମନରେ ଉଙ୍କି ମାରୁଛି । ତମସାର ମୂର୍ତ୍ତି ଭିତରେ ମାଟିର ରାଗିଣୀ ଗୁଞ୍ଜରି ଉଠୁଛି । ଯୌବନ ଆସିଛି । ଦେହର ନିଶା ମନକୁ ଘାରୁଛି ।

ନୂଆ ଅସରାରେ ଓଦା ମାଟିର ବାସ୍ନା । ରଜସଂକ୍ରାନ୍ତିର ମଉଛବ । କ’ଣ ଛାତି ଓଲଟ ପାଲଟ ହୋଇ ବଦଳି ଲାଗିଛି ।

ଛିଣ୍ଡା ହେଁସ ଉପରେ ଘର କଣରେ ପୁନ ସେମିତ ପଡ଼ିରହିଛି । ଶୁଭୁଛି, ବୋଉ ବୁଲିଚାଲି କଲାଣି । ଦିନସାରା ଦୁଆରମୁହଁରେ ସେ ଗୋଡ଼ ଲମ୍ବେଇ ବସିଥିଲା । ସାହିର କିଏ ଗୋଟିଏ ଗୋଟିଏ ଆସିଥିଲେ ଯେ ସମସ୍ତିଙ୍କୁ ଗେରଗର ହୋଇ ବିଦା କରିଥିଲା । ବୋଉ ପହରା ଦେଉଛି । ବୋଉର ଉପଦେଶ ସେ ଶୁଣିଛି । ଲାଜ ଘୋଟିଛି । ଘର ଭିତରେ ଅନ୍ଧାର ପଡ଼ିଲାଣି । ଅନ୍ଧାରର ନିରୋଳାରେ ଶୁଣା କଥା, ଦେଖା କଥା ଘୁମରି, ସଙ୍କେତରେ ଆପଣାକୁ ଥାପି, ସେ ସୁଖ ଖୋଜୁଛି । ଯୌବନର କାଉଁଛ ଲାଗିହୋଇ ଏହି ପୃଥିବୀର ଝିଅଟିଏ । ସମସ୍ତିଙ୍କ ସଙ୍ଗେ ସମାନ ତା’ର ମାଟିର ଗଢ଼ଣ ।

“ବଜାରରୁ ଆସୁଚି ପୁନ, ଥିବୁ ।” ବୋଉ ବାହାରି ଚାଲିଗଲା । ଖାଲି ଅନ୍ଧାର ।

କାନେଇଁ କାନେଇଁ ପଡ଼ିରହିଛି । ନିତି ଦିନର ଚହଲା ଚହଲି ଆଜି ଚହଲି ନୁହେଁ । ସେଥିରେ ସଙ୍କେତ ଅଛି ।



## ଷୋଡ଼ଶ

ଅଘୋରବାବୁ ମଟର ନେଇ ବୁଲି ବାହାରିଛନ୍ତି ।

ଏପରି ତ ବୁଲିବାକୁ ପଡ଼େ ତାଙ୍କ ସମାଜରେ । କୌଣସି ଜରୁର୍ କାର୍ଯ୍ୟ ପାଇଁ ନୁହେଁ—ଏବଂ ଜରୁର୍ କାର୍ଯ୍ୟର ସଜ୍ଞା ସମସ୍ତିଙ୍କ ପକ୍ଷରେ ସମାନ ନୁହେଁ । ସେ ସମାଜ ଯାହା କରେ, ତାହା ଯେ କେବଳ ଆବଶ୍ୟକ ପାଇଁ କରେ, ତାହା ବି ନୁହେଁ; କେବଳ ଗୋଟାଏ ଅଭ୍ୟାସ । ସେହି ଅଭ୍ୟାସ ବଳରେ ସେ ସମାଜ ତଳର ସ୍ତର ସ୍ତର ସମାଜରୁ ଭିନେ—ତେଣୁ ।

ଭିତ୍ତିରେ ଇଟା, ପଥର ପ୍ରଚୁର । ସମ୍ପତ୍ତି ଅଗାଧ । ପ୍ରଚଣ୍ଡ ଆଗ୍ନେୟଗିରି ପରି ମୂର୍ତ୍ତିମନ୍ତ ଓ କ୍ରିୟାଶୀଳ ହୋଇ, ନିଜେ ବାପା ଅର୍ଜନର ଭଣ୍ଡାର ଲଗେଇବାକୁ ସମର୍ଥ ଅଛନ୍ତି । ତେଣୁ ଅଘୋରବାବୁ ବସ୍ତୁବାଦୀ ହେବାର ପ୍ରୟୋଜନ ଅନୁଭବ କରି ନାହାନ୍ତି । ଆଦର୍ଶବାଦୀ ହେବାକୁ ମଧ୍ୟ ତାଙ୍କର ଅଧିକାର ନାହିଁ । କାରଣ, ତାଙ୍କର ବ୍ୟକ୍ତିତ୍ୱ ଉପରେ ପ୍ରଧାନ ଅଧିକାର ତାଙ୍କର ଜନ୍ମଗତ ଶ୍ରେଣୀର । ତେଣୁ ସେ ଯେଉଁପରି ପୋଷାକ ପିନ୍ଧନ୍ତି ପଛେ, ଯେଉଁ କଟାର ଅଥବା ଯେଉଁ କାଟର; ଯେପରି ସମ୍ପ୍ରଦାୟରେ ବୁଲୁଥାନ୍ତୁ, ତୁଣ୍ଡରେ ଯାହା କହନ୍ତୁ; ଅବିନାଶବାବୁଙ୍କ ପୁଅ ଅଘୋର-ବାବୁ କହିଲେ ଜଣାପଡ଼େ, ଦାମ୍ଭିକ ଶ୍ରେଣୀର ଜଣେ ଯୁବକ । ସେ ଶିକ୍ଷିତ, ବିଶ୍ୱବିଦ୍ୟାଳୟର ମାନପତ୍ର ତାର ସାକ୍ଷୀ; କିନ୍ତୁ ବାପା ବୋଉଙ୍କ ବିବେଚନାରେ ତାଙ୍କର ବୁଦ୍ଧି ଆସି ନାହିଁ । ଆହୁରି ଶୃଙ୍ଖଳନକୁ ଅପେକ୍ଷା । ବୟସ ଯୌବନ ଆଣିଦେଇଛି, ସ୍ୱାସ୍ଥ୍ୟ ଓ ବଳର ଅଭାବ ନାହିଁ; କିନ୍ତୁ ଘରର ବିବେଚନାରେ ତାଙ୍କର ବାଲ୍ୟଜୀବନ ଶେଷ ହୋଇ ନାହିଁ, ବାଲଲୀଳା ଖେଳିବାର ବୟସ ଏହି । ଏହିପରି ପାରିପାର୍ଶ୍ୱିକ ଅବସ୍ଥାର ଶୁଭଲଗ୍ନରେ ତାଙ୍କର ବର୍ତ୍ତମାନ୍ ଯୌବନ୍ରାଜ୍ୟ ।

ଟେନିସ୍ ଖେଳ ପରେ ଘରକୁ ଫେରିଥିଲେ । ସନ୍ଧ୍ୟାର ପ୍ରାରମ୍ଭିକ ପାନଭୋଜନାଦି ଶେଷ କରି ପୁଣି ସେ ବାହାରି ପଡ଼ିଲେ । ସହରର ବଡ଼ ରାସ୍ତା ଲମ୍ବିଛି ଏମୁଣ୍ଡ ସେମୁଣ୍ଡ, ଏ ଗଳି ସେ ଗଳି । ଦମ୍ଭ ସମାଜର ଅନେକଙ୍କୁ ସେହି ରାସ୍ତାରେ ବୁଲୁଥିବାର ଦେଖାଯାଏ । ଏ ଦୋକାନ ଆଗରେ ଅଳ୍ପ ଟିକିଏ । "ପିନ୍‌କଣ୍ଠା ଅଛି ?" ମାଇଲିଏ ପରେ ଆଉ କେଉଁଠି - "ଏକ ବାକ୍ସ ବ୍ରୁଟ୍—।" ଷ୍ଟେସନଠି ପାଞ୍ଚ ମିନିଟ୍ ଯିବା ଆସିବା ଲୋକଙ୍କ ଭିତରେ ଅଜଣା କାହାରିକୁ ଦେଖିବା ଅଭିପ୍ରାୟରେ । ପୁଣି ମଟର ଚଳେଇ ରାସ୍ତାଏ ରାସ୍ତାଏ । ବଡ଼ ସହରର ସଭାସରେ ଲୋକେ ଭିଡ଼ ହୋଇଛନ୍ତି । ସେଠି ବି ପାଞ୍ଚ ମିନିଟ୍ ଖର୍ଚ୍ଚ କଲେ

ନିତ୍ୟକର୍ମର ବାହାରେ ତାହା ଗଣ୍ୟ ନୁହେଁ । ତା'ପରେ ଥିଏଟର, ବାଇସ୍କୋପ, ମନ୍ଦିର—ମନ୍ଦିର ବୁଲିଗଲେ, ଧଣ୍ଡା ଆଣିଦେଲେ ମା ଖୁସି ହୁଅନ୍ତି । ଭାବନ୍ତି ଐଶ୍ୱର୍ଯ୍ୟ ବଢ଼ିବ, ପୁଅର ଧର୍ମରେ ମତି ଅଛି । ପୁଣି ମଣିଷ ଗହଳି ସଭାରେ ମଟର ଚଢ଼େଇ ଆଭିଜାତ୍ୟ ପ୍ରଚାର କରି ଏ ଘରୁ ସେ ଘର, ସେ ଘରୁ ଏ ଘର ।

କିନ୍ତୁ ବୁଲି ବୁଲି ସାରା ହେଲେ ବି ଘଟଣା ଘଟେ ନାହିଁ । ମାଟିର ଦୁନିଆଁ ଯଥେଷ୍ଟ ମନେହୁଏ ନାହିଁ । ଜୀବନଟା ଘସରା ଲାଗେ ।

ଆଜିର ସମ୍ବାଦ ନିରୁପମା ।

ବାଟରେ ଦୋକାନମାନଙ୍କରେ ରେଡ଼ିଓ ଦୁନିଆଁଯାକର ଖବର ବିକୃତ ସ୍ୱରରେ ହାଟମୁହାଁ ହୋଇ ପ୍ରଚାର କରି ଲାଗିଛି । ଟାଉନହଲରେ ମସ୍ତବଡ଼ ରାଜନୈତିକ ସଭା । ଚାଲିଲା ମଟର ଅଟକି ରହୁ ନାହିଁ । ମନର ପିଠିଆଡ଼େ ଗୁଁ କୁ ଗୁଁ ଭାବହେଉଛି, ନିରୁପମା ବିଭା ହୋଇଯିବ ।

ନିରୁପମା ତା'ର କିଏ ? କେହି ନୁହେଁ । ଚଳନ୍ତା ସମାଜରେ ଅସଂଖ୍ୟ ନିରୁପମା । କିଏ ସାମ୍ନାକୁ ଆସେ ନାହିଁ । ଘର ଭିତରେ ଥାଇ ତାର ଅଦୃଶ୍ୟ ଅସ୍ତିତ୍ୱ ବାହାରେ କୁତୂହଳରେ କୁହୁକ ଗଢ଼େ । କିଏ ପଦାକୁ ବାହାରେ, ସମ୍ଭାଷଣ କରେ । ବିଶିଷ୍ଟ ସମାଜର ସଦ୍ୟପ୍ରସ୍ତୁତ ବ୍ୟାବହାରିକ କାଇଦାରେ ପରିଷ୍କାର ଦାନ୍ତରେ ହସିଦେଇ, ଧରାଦେଇ—ଛୁଆଁ ନ ଦେଇ, ଉପାସ୍ଥରେ, ତର୍କରେ, ଯୁକ୍ତିରେ ଆପଣା ବ୍ୟକ୍ତିତ୍ୱର ଧାର ଦେଖାଇଯାଏ ।

ସମାଜର ଝିଅ ସମସ୍ତେ । ସମସ୍ତେ ବିଭା ହେବେ । କେହି ତପସ୍ୟା କରି ଅଟକି ରହିବ ନାହିଁ କାହା ପାଇଁ; କିନ୍ତୁ ଭାବପ୍ରବଣତାର ଡୋର ବିଛେଇ ହୋଇ ଲାଗିରହିଛି । ଗୋଟାଏ କିଏ ଗଲେ, ମନରେ ଖାଞ୍ଜ ଲାଗି ଭାବନାର ପୁଞ୍ଜି ବାଦ ସାମାନ୍ୟରେ ଦୋହଲି ଉଠେ ।

ଆପଣା ସଙ୍ଗେ ବହୁତ ଯୁକ୍ତିତର୍କ କରିଥିଲି । ଘଟଣାଟିକୁ ହସରେ ଉଡ଼ାଇବାକୁ ଚେଷ୍ଟା କରିଥିଲି । ସାଧାରଣ କଥା ଭାବି ନ ଭାଳିବାକୁ ମନସ୍ଥ କରିଥିଲି; କିନ୍ତୁ ଗାଡ଼ି ଆସି ନିରୁପମା ଘର ଦୁଆରମୁହଁରେ ଅଟକିଗଲା । ଅଘୋର ଓହ୍ଲେଇଲେ ।

ଅଭ୍ୟର୍ଥନା ଘରେ ଟେବୁଲ୍‌ର କାଗଜପତ୍ର ଉପରେ ମୁହଁ ଅଜାଡ଼ି ଦେଇ, ସମଗ୍ର ଭାବନାକୁ ପୁଞ୍ଜୀଭୂତ କରି ଧ୍ୟାନରେ ବସିରହିଛନ୍ତି ସେ—ଯାହାଙ୍କୁ ଦମ୍ଭିଲ ଶ୍ରେଣୀ ଜଣେ ଅଗ୍ରଣୀ ବୋଲି ମନେକରନ୍ତି । ଲୋକେ ସମ୍ମାନ କରନ୍ତି, ବଡ଼ ସହରର ଜଣେ କର୍ଣ୍ଣଧାର ବୋଲି । କପାଳ ଉପରକୁ କିଛି ଦୂର ପର୍ଯ୍ୟନ୍ତ ଚନ୍ଦା ହୋଇଯାଇ କପାଳର ବିସ୍ତୃତି ବଢ଼ାଇଛି, ତେଣିକି ଅଳ୍ପ ଅଳ୍ପ ଧଳା ବାଳ ।

ପ୍ରଜ୍ଞାପଣର ପରିଚୟ । ଚଷମା ପଛଆଡ଼େ ଗମ୍ଭୀର ଦୃଷ୍ଟି । ଅନେକେ ତପସ୍ୟା କରନ୍ତି । ସିଦ୍ଧିର ଅଧିକାରୀ ଅଳ୍ପ କେତେଜଣ ଭାଗ୍ୟବାନ୍ । ଯୋଗବିଭୂତି ତାଙ୍କର ଏତେ ପ୍ରବଳ ଯେ; ଯେଉଁଥିରେ ଦୃଷ୍ଟିପଡ଼େ, କାହାର ଘର କି କାହାର ଜମି ଜମା କାହାର ଜୀବିକା; ତାହା ସହଜରେ ଉଚ୍ଛନ୍ନ ହୋଇ ଆସେ । ସମସ୍ତିଙ୍କଠୁଁ କଳା ଯେଉଁ, ଧନୁଁ ଧନ ଆପଣାର ଦେହର ବିଜୁଳି ବଢ଼ି ବଢ଼ି ସହରଯାକ ଝଲସି ଉଠେ । ଚଳନ୍ତି ଯୋଗର ମାର୍ଗ ତାଙ୍କର ନଖ ଦର୍ପଣରେ । ଉପାସ୍ୟ ସମ୍ବନ୍ଧେ ସେ ନିର୍ବିକାର ଏବଂ ଅନାସକ୍ତ । ତେଣୁ ଯଥାଯୋଗ୍ୟ ଭେକ ଅନେକ । କେତେବେଳେ ବିଳାତି କନାର ଉତ୍କୃଷ୍ଟ ସାହେବୀ ପୋଷାକ, କେତେବେଳେ ଖଦଡ଼, ଟୋପି ସହିତ ସମ୍ପୂର୍ଣ୍ଣ । କେତେବେଳେ ଢିଲା ପାଇଜାମା, ବିଭିନ୍ନ ପାଗଯୋଗକୁ ବିଭିନ୍ନ ପତାକା ତାଙ୍କର ନୀଳଚକ୍ର, କେତେବେଳେ ୟୁନିଅନ୍ ଜ୍ୟାକ୍, କେତେବେଳେ ତିରଙ୍ଗା, କେବେ କେବେ ଦା ହାତୁଡ଼ି । ଭଗତ୍‌ସିଂଙ୍କଠୁଁ ଆମେରି ପର୍ଯ୍ୟନ୍ତ ସବୁ ପ୍ରକାର ଛବି ସେ ରଖନ୍ତି । ଋତୁପରିବର୍ତ୍ତନ ସହିତ ସମତାଳ ରଖି, ତାଙ୍କର ଅଭ୍ୟର୍ଥନା ଘରର ସାଜସଜ୍ଜାରେ ପରିବର୍ତ୍ତନ ଘଟେ, ଅବିକଳ ବାରମାସୀ ଚଢ଼େଇପରି ।

ଶୈଳେନ୍ଦ୍ରବାବୁ ଏକୁଟିଆ ବସିଥାନ୍ତି । ଆଜିର ବେଶ ଶୁଭ୍ର ଖଦଡ଼ । ସୁସଜ୍ଜିତ ଉଜ୍ଜ୍ୱଳ ନକଲି ଦାନ୍ତରେ ମଧୁର ହସଟିଏ ହସି ସମ୍ଭାଷଣ କଲେ ।

"ଅଘୋର୍, ଆସ ବାବା, ବସ । ଭଲ ତ ସବୁ ?"

"ଆଜ୍ଞା ହଁ ।"

"ବହୁତ ଦିନୁଁ ତମକୁ ଦେଖି ନାହିଁ ଯେ—"

"ଆସିବାକୁ ଖୁବ ଇଚ୍ଛା ହୁଏ; କାମ ଥାଏ—"

ଆଦୁର ହସି ଶୈଳେନ୍ଦ୍ରବାବୁ କହିଲେ—"ଇଚ୍ଛା ତ ଅବଶ୍ୟ ହେଉଥିବ । ଅବିନାଶ ବାରମ୍ବାର ଲେଖେ, ଅଘୋର ତମକୁ ଜାଗିଲା । ତାକୁ ତାଲିମ କରୁଥିବ ।"

ଆହୁର ହସିଲେ । କହିଲେ—ସେ କେବେ ଆସିବ ? ମା ଭଲ ଅଛନ୍ତି ? ବିନୀତ ହୋଇ ଅଘୋର ତାର ଜବାବ ଦେଲା । ସେହି ଦୃଷ୍ଟିରେ ଉତ୍ସାହ ହୋଇ କହି ପକାଇଲା—ବାପା ଲେଖିଥିଲେ, ସେହି ହାଡ଼ସାହି ନେବା କଥା । ଆପଣମାନଙ୍କଠାରୁ ଅନୁମତି ମିଳିଲେ, ସେ ଅଗ୍ରସର ହେବେ । ଆପଣ ତ ଜାଣନ୍ତି ସବୁ କଥା— ।

ନିବିଷ୍ଟ ମନରେ ଶୈଳେନ୍ଦ୍ରବାବୁ ସବୁ ଶୁଣୁଛନ୍ତି । ନିବିଷ୍ଟ ମନରେ ଗମ୍ଭୀର ହୋଇ ଶୁଣିବା ତାଙ୍କର ଅଭ୍ୟାସ । କହିଲେ—ହୁଁ, ମୁଁ ଜାଣେ । ଅନୁମତି ନ ମିଳିବ ବୋଲି ଅବିନାଶ ଆଶଙ୍କା କରୁଛି କାହିଁକି ? କାହିଁ, ତା ପକ୍ଷରୁ

କଣ ବନ୍ଦୋବସ୍ତ ହେଉଛି, ମୁଁ ତ ଜାଣେ ନାହିଁ ! ଅନୁମତି ତ ହାତର କଥା; କିନ୍ତୁ ତା ପରେ ?—

ମନକୁ ମନ କହିଲାଗିଲେ—"ଆଜିକାଲି ଯେଉଁ ସମସ୍ତ ସେଥିରେ ସତର୍କ ହୋଇ ଚଳିବା ଭଲ । ଖାଲି ଜମିଟା କିଣିନେଇ; ଲୋକଗୁଡ଼ାଙ୍କୁ ଯା' ବୋଲି କହିଲେ ତ ଯିବେ ନାହିଁ ! ସେମାନଙ୍କୁ ଉଠେଇବାକୁ ଲୋକଙ୍କର ଅଭାବ ନାହିଁ । ସହର ତରଫରୁ ଅବଶ୍ୟ ଆମେ ଯୋଜନା ଦେବୁଁ ଯେ, ହାଡ଼ିସାହିଟା ଦୂରକୁ ଉଠିଯିବା ଭଲ । ସେଠି ସେମାନଙ୍କୁ ଯଥେଷ୍ଟ ଜାଗା ଅଣ୍ଟୁ ନାହିଁ ଓ ସହର ବି ବଢ଼ିପାରୁ ନାହିଁ । ତାଙ୍କର ହିତଟା ଆଗରେ ରଖି କାରଣ ଦିଆହେବ । ତଥାପି—ଜନମତଟା ଟିକିଏ ଅଡୁଆ । ଅଵନୀଶକୁ ବୁଝେଇ ଲେଖିଦେବୁ । ସବୁ ଧୀରେ ଧୀରେ—" ଯେପରି କି କଣ ଗୋଟାଏ ଅଛି, କହିପାରୁ ନାହାନ୍ତି; ସେମିତି ଟିକିଏ କାଶି ହସିଦେଲେ । ପଚାରିଲେ—"ତୁମେ ଖଦଡ଼ ପିନ୍ଧ ନା କାହିଁକି ?"

ଅଘୋର ଅପ୍ରସ୍ତୁତ ହେଲା । ଶୈଳେନ୍ଦ୍ର କହିଲେ—ମୁଁ ରମେଶକୁ କହିଦେଇଛି ଖଦଡ଼ ପିନ୍ଧିବାକୁ । ଗୋଟାଏ ସାଜ, ବେଶ୍ ଚଳିଯିବ ।

ଅଘୋର ଛଟପଟ ହେଉଥାଏ । ଉତ୍ସାହରେ ପଚାରିଲା—ରମେଶ ଅଛି ?

"ରମେଶ ନାହିଁ । ନରୁ ହେଉଥିବା ସମୟରେ ମାମୁଁ ଘରକୁ ଯାଇଛନ୍ତି କି ନା ! ଫେରି ପାଇଥିବ ବୋଧହୁଏ—"

"ହଁ, ଖୁବ ଭଲ ହେଲା । ସଦାନନ୍ଦ ଖୁବ ଭଲ ପାଉ—"

ତୀକ୍ଷ୍ଣ ଦୃଷ୍ଟିରେ ଥରେ ଅନେଇଁ ଦେଇ ଶୈଳେନ୍ଦ୍ରବାବୁ କହିଲେ—"ତୁମେ ବି ଭାବୁଛ ?···କେବଳ ଭଲ ହେଲେ ତ ଯଥେଷ୍ଟ ନୁହେଁ ! ଉପରକୁ ଉଠିବାକୁ ହେଲେ ଯେତିକି ବୁଦ୍ଧି ଖେଳେଇ ଉଦ୍‌ଯୋଗ କରିବା ଦରକାର, ମୁଁ ଭାବୁଛି, ସଦାନନ୍ଦଠି ସେ ସବୁ ନାହିଁ । ବଡ଼ ସୁସ୍ଥି । ଅଳ୍ପୁଆଲ ହେବାକୁ ମନ ନାହିଁ । ନା ତୁମେ କ'ଣ କହୁଛ ? ଅଘୋରବାବୁ କେବଳ ହସିଲେ । କହିଲେ—ଖୁବ୍ ଭଲ ପିଲା, ଅଗାଧ ସମ୍ପତ୍ତି—"

ଶୈଳେନ୍ଦ୍ରବାବୁ ହସି ହସି କହିଲେ—ଦେଖାଯାଉ—

ବିଦାୟ ନେଇ ଆସିଲାବେଳେ ଶୈଳେନ୍ଦ୍ରବାବୁ ସ୍ମରଣ କରାଇଦେଲେ, "ଅବନୀଶକୁ ଲେଖିଦିଅ; ଗୃହୀଟା ପଠେଇ ଦେଉ ଚଞ୍ଚଳ—"

ଏତିକିରେ ସବୁ ରହିଗଲା । ପୁଣି ଶୈଳେନ୍ଦ୍ରବାବୁ କାର୍ଯ୍ୟରେ ମୁହଁ ବୁଡ଼େଇଲେ । ମଟରରେ ବସି, ଆଶ୍ୱସ୍ତ ହୋଇ ଅଘୋର ଦୀର୍ଘଶ୍ୱାସ ମାରିଲା ଏବଂ ଭାବିଲା, ଏ କଣ ହେଲା ? କାହିଁକି ସେ ଆସିଥିଲା ଏଠିକି ! ସଦାଲାପ

ଟିକକ ଘରୋଇ ନ ହୋଇ, ଚଳେ ଚଳେ ଯେମିତି ଅଣ୍ଡା ବେପାରିଆ ହୋଇଗଲା। ସତେ କ ଏଠି ସେ ଯାଡ ପରଠୁ ପର ! ବାହାରେ ଭଦ୍ରତାର ଅଭାବ ନାହିଁ, ଭିତରେ ସୌହାର୍ଦ୍ଦ୍ୟ ଅଭାବ; ସେତିକ । ନିରୁପମା ନାହିଁ । ସନ୍ଧିଜ ଆଗିର ଅଳୁହା କଥା ନାହିଁ । ଘରେ ଲେଖା ନାହିଁ 'ସ୍ୱାଗତଂ' । ତେବେ—ଅବିଲବେଲକୁ ଲଜ ମାଡ଼େ । ବାପାଙ୍କର ଦୂତ ହୋଇ ଅସିଥିଲା ସେ ସତ୍ପୁତ୍ର, ଶୈଳେନ୍ଦ୍ରବାବୁଙ୍କ ସାହାଯ୍ୟ ନେବାକୁ । କୁହାପୋଛୁ କରି ବ୍ୟବସାୟର ହିତ କରିବା ଲାଗି । ଉତ୍ତର ନେଇଯିବ ଯେ, ଶୈଳେନ୍ଦ୍ରବାବୁ ପ୍ରାର୍ଥନା ମଞ୍ଜୁର କରିଛନ୍ତି; କେବଳ ସର୍ତ୍ତପୂରଣ କରିଦେଲେ ହେଲା । ତେବେ କଣ ସେ ଘର ସଙ୍ଗେ ଏତିକ ସମ୍ବନ୍ଧ ? ମନ ଭିତରୁ ଶୈଳେନ୍ଦ୍ରବାବୁଙ୍କ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା ଭାବ ଆସିଲା । ଅବିଲ, ଅଜଣାରେ ସେ ନିଜକୁ ଖୁବ୍ ଶ୍ରେଷ୍ଠ କରି-ଦେଇଛି । ଶୈଳେନ୍ଦ୍ରବାବୁଙ୍କ ସମ୍ବନ୍ଧେ ସେ ଅନେକ କଥା ଜାଣେ । ବ୍ୟବସାୟୀ ଶୈଳେନ୍ଦ୍ରଙ୍କ ପାଖରେ ସେ ତଳହାତ ହୋଇ ମାଗିଛି ଏବଂ ମାଗିଛି କ'ଣ ବା ?—ଯାହା ତାର ମତର ବିରୋଧୀ, ଗରିବ ଲୋକଙ୍କୁ ନିଆଶ୍ରା କରିବା ବିଧାନ । ସେଥିରେ ଗୌରବ ନାହିଁ । ଅଜଣାରେ, ନିଜ ଇଚ୍ଛା ବିରୁଦ୍ଧରେ ସେ କହିପକେଇଛି । ତାର ଅବସ୍ଥିତ ଉଧାର ନେଇ ଅବିନାଶବାବୁ କହିଛନ୍ତି । ସେ କହି ନାହିଁ ।

ମଟର ଗ୍ରୁଲିଛି । ଭାବପ୍ରବଣ ଧାରଣାରେ ମନେ ମନେ ଆର୍ଦ୍ର ହୋଇ-ଯାଉଛି କବିତାମୟ ଦାରିଦ୍ର୍ୟର ଛବି ଏବଂ ତାହା ପ୍ରତି ସହାନୁଭୂତି ! ବୁଲା କୁକୁରଟାଏ ମଟର ତଳେ ଚୁପିହୋଇ ମଲାଣି । ବାଟଚଲା ବୁଢ଼ାଲୋକଟିଏ ସୁତାଖିଅକେ ମଟର ଦାଉରୁ ବଞ୍ଚିଗଲା । ଦାରିଦ୍ର୍ୟ କଥା ଭାବି ବିକଳ ହେଉ ହେଉ ନୂଆ ଛବି ଦିଶିଲାଣି—ହୃଦ ସଜାଇ ବାଜଉଠିଲାଣି ନିରୁପମା, ନିରୁପମା । ବାଟ ନିଗ୍ରୁଟିଆ ପଡ଼ିଲାଣି । ମଝି ସହରର ଆଲୁଅ ମାଳ ମାଳ କେତେ ପଛରେ । ମଟରଠୁ ଦ୍ୱିଗୁଣ ବେଗରେ ଧାରଣା ଧାଇଁଛି । ନିରୁପମା, ନିରୁପମା । ନଇଞ୍ଚଟକମସ୍ତ ସାମାଜିକ ଉନ୍ନତ ସମ୍ବନ୍ଧର ପରିଚିତ ହୋଇଥିବା ଆପଣା ଶ୍ରେଣୀର ଚନ୍ଦ୍ରା ଝିଅ ମନେ ପଡ଼ୁଛନ୍ତି । ଦୂରରେ ପଛେଇ ରହୁଛନ୍ତି । ଦର୍ପଣ ପରି ନଖ, ପରିଷ୍କାର ପରିଚ୍ଛନ୍ନ ଦେହ, ମାର୍ଜିତ ଆଗ୍ରହ-ବ୍ୟବହାର; କିନ୍ତୁ ସେମାନେ ପାଦକୁ ପାଦ ତାଳ ରଖିପାରି ନାହାନ୍ତି । ସବୁରି ସତେ କ ମାଧା ଗଢ, ନିରୋଧର ସଙ୍କେତ । ଆଶା ଭୁଟୁଛି । ସବୁ ସଂସ୍କାର ଫୋପାଡ଼ି ଦେଇ, ଆପଣାକୁ ଗୋଟେଇ ପୋଟେଇ, ହୃଦୟର ଉପରେ ଆକାଙ୍କ୍ଷା ଧାଇଁଛି ସାମ୍ନାର ଧୂଳି ଭିତରକୁ, ଅନ୍ଧାର ଭିତରକୁ ।

□ □

# ସତର

“ପୁନମାଁ, ହେ ପୁନମାଁ—”

ରାତି ପାହି ଦେଲା । ଜବାବ ଦେଲା ତାର ଦେହ ଗୋଟାକ । ତାକ ଡାକ ଉଠାଇ ଆସୁଛି । ଅନ୍ଧାରରେ ପୁନ ଏକ ଗୋଟାଏ ହୋଇ ନଜରକୁ ତାକୁଛି, “ପୁନମାଁ, ହେ ପୁନମାଁ ।” ହେଉ, ଆଉ ପାଖେ ସେ । ସନିଆ । ଦୂର ଅର୍ଥରେ ସନିଆ ‘ପୁନମାଁ’ ଡାକେ ।

“କବାଟ ଖୋଲ । ମୁଁ ମ, ସନିଆ । ହେ ପୁନମାଁ—”

ହାଲୁକା ମାଡ଼ କବାଟ ଫିଟେଇଦେଲା । ଅନ୍ଧାର ଖଲ୍ ଖଲ୍ ।

ଯେମିତି ଭୂଜ ହୋଇ ପୁନ ବୁଢ଼ିଗଲା । ଦୁଆରବନ୍ଧରେ ଛବି ପରି ଟାଙ୍ଗି ହୋଇଛି ସେହି ଅନ୍ଧାରର ରୂପ । ଅନ୍ଧାର ତାକୁ ମୂର୍ତ୍ତି ପାଲଟିଛି ।

ଚକିତ ହୋଇ ସନିଆ ଲେଉଟିଗଲା । ତାର ପାଦର ଶବ୍ଦ ମିଳେଇ ନ ଯାଉଣୁ, ଧଡ଼ପଡ଼ ହୋଇ ପୁନ ଉଠିପଡ଼ିଲା । ପଛରୁ ଡାକିଲା, “ସନିଆ, ଶୁଣିଗଲୁ କି—?”

“ଅରେ—କଳେ ଅନ୍ଧାରରେ କଣ କରୁଛୁ ପୁନ ? ତୋ ବୋଉ କାହିଁ ? ଏମିତି ବେଳ ଟେଳୁଚୁ ରୁ—”

“ହେ, ମତେ ତୁ କାହିଁ, ତୁ କାହିଁ କହୁଚ—”

“କଣ, ହେଇଚ କଣ ତୋର ? ତୁ ଆତା ହେଇ ଘରେ ପଶିଚୁ—”

“ହଉ, ହଉ; ତୁ ଯା ଏଥର । ଯା ପଳା—”

“ଆଲୋ ପୁନ, ଦେଖିକରି, ନା ନ ଦେଖିକରି ! ଏମିତ ପଳା ପଳା କହୁଚୁ, ପଚ୍ଚେଇବୁ ପଛେ । ତୋ ପେଇଁ କଣ ଆଣିଚ ଆଗ ଦେଖିଲୁଣି ନା ! ଗାଡ଼ି ନେଇ ଖୋଜ ବୁଲୁଥିଲି; ତ’ ପହରେ କୁଆଡ଼େ ରହିଲୁ ? ହେଇ, ଦେଖ୍, ଦେଖ୍, । ଭାବ କଣ କଲୁ ? ଦଆପିଲି ଅଛୁ ମୋ ପାଖେ ।”

“କଣ ଆଉ ଆଣିବୁ ସନିଆ !” ହସିଦେଇ ପୁନ କହିଲା—ସବୁଦିନ ପରି ଅଳିଆଗଦାରୁ ଗୋଟେଇ କଣ କିଛି ଗୋଟାଏ; ନ ହେଲେ ସେଡ଼ାଟାଏ କି ଆରସି ଖଣ୍ଡେ । ସେଇଥି ପାଇଁ ସାହୁ କମେଇ ଏତେ ପାଟିରେ ରଡ଼ି ରଡ଼ି ଆସୁଚୁ— ପୁନମା, ପୁନମା—”

"ଇଲେ ନେ, ଦେଖ୍, କଣ ଆଣିଛ—"

ଆଜ୍ଞା ଖଣ୍ଡେ ଲୁଗା ।

"ଦେଖ୍, କି ଦେଖରେ ହେଉଛି—" ସନିଆ ହଥାପିଲ ମାଣବାରୁ ପୁନି ଫର୍କି ନ୍ଧେଇ ଦେଲା । "ମଲା ମଲା, ଘ୍ରୁନିଆ ହଉଚୁ କାହିଁକି ବା—ଆଚ୍ଛା କଣ ଦେଖ୍…"

କେମିତି ଛିଟଶାଢ଼ୀ ହେଉଛି—କି ଦେଖରେ ମାନବ ତତେ । ଦାନ୍ତ ଚିପି ଚିପି, ଫୁସ୍ ଫୁସ୍ କରି କହିଲା—ଦେଖ୍, ଆଚ୍ଛା କଣ ଦେଖ୍ । ମାଉଁ ଆଉ ଗୋଟାଏ କାଠି, ଦେଖିବୁ—

ଶାଢ଼ୀ ଧରୁ ଧରୁ ପୁନି ଗୋଟାପୁଛା ଥରୁଥାଏ । ଥଙ୍କେଇ ଥଙ୍କେଇ ହୋଇ କହିଲା—ଥାଉ; ରଇ ଥା ।

"ପିନ୍ଧପକା ଝିଅଟି । ଘୂଲ୍, ବାହାର୍ । ଠିଆ ହୋଇ ରହିଲୁ କଣ୍—ହଁ—"

ଭଲ ଲାଗୁଛି ସନିଆର ହାତ । ଏମିତି ଅନ୍ଧାରେ ଅନ୍ଧାରେ । ଭଲ ଲାଗୁଛି, ଅଳସ ଲାଗୁଛି । କଣ ବକିଲାଗିଛି ସେ ବାହାପିଆଟା ! "ହେ—ହୁଁ—" ଟାଣ ହାତ, ବଳୁଆ ବାହା । ନରମ ବଚନକା ବାଡ଼ିବାକୁ ଗରଜ ପଡ଼ୁଛି ତାର । "ବାଃ, ବାଃ । ପୁନି, କେଡ଼େ ସୁନ୍ଦର ବାସୁଛୁ—କଣ ଲଗେଇଚୁ; ଉଁ-ହୁଁ—"

ସନିଆକୁ ଆସ୍ତେ ଠେଲିଦେଇ ପଛୁଘୁଞ୍ଚି, ପୁନି କହିଲା—ସେମିତି କାହିଁକି ହଉଚୁ ମ ! ମନା କଲି ପରା, ଛୁ ନା ବୋଲି ! ବୋଉ ଆସୁଥିବ, ଖାଇଯିବ ତତେ । ଗଲୁ ତୁ ଯା; ଯା ଘ'ର ।

"ହଁ, ଶାଢ଼ୀ ଆଣିଦେଲି । ସେଇଠୁ ମା ଝିଅ ଉଦେଇଁ ତଡ଼ିଦେଇ, କବାଟ କଲିଦେବ ନାହିଁ କି ? ବୁଦ୍ଧି ହେଲାଣି ତୋର । ସେମିତି ମୁଁ ଯିବ ନାହିଁ । ଘୂଲ୍, ତୁ ବି ଯିବୁ । ବୁଲିଯିବା ଘୂଲ୍ । ଖାଲିଟାରେ ବସିଚୁ କାହିଁକି ? ଆ, ବାହାର୍—"

"ଫେର୍—ମତେ ଛୁ ନା; ବୋଉ ଗାଳିଦେବ । କେଡ଼େ ଓଲୁଟାଏ ତୁ ! ଯାଉଚି ମୁଁ, ଦେଖ୍"—ଧାଇଁ ଧାଇଁ ପୁନି ଅନ୍ଧାର ଘର ଭିତରକୁ ପଶିଗଲା । ସନିଆ ଓଲୁ ପରି ଠିଆ ହୋଇଥାଏ । କହିଲା—ଭଲା ରେ !

ପହିଲି ଉପହାର ତାର ଜୀବନରେ । ସେହି ଶାଢ଼ୀ ଖଣ୍ଡକ ଆଣିବା ପାଇଁ କେତେ ପାଞ୍ଚ ଭାବିଥିଲି । କେତେ ଉପାୟ ଯୋଖି ବିପଦ ମୁଣ୍ଡେଇ, ସମୁଦ୍ର ମନ୍ଥି,

ସେ ପାଉଥିଲା ଗନ୍ଧ । ଶାଢ଼ୀ ଖଣ୍ଡ ଧରି ପୁନି ଅନ୍ଧାର ଘରେ ପଶିଲା ଆଉ ରହିଗଲା ସେ ଭକୁଆ ହୋଇ ଯୋଉଠି—ସେଇଠି ।

ଘର ସେ କଡ଼ରୁ ପୁନିର ହସ ଶୁଭିଲା । "ମଲା ମ, ଶ୍ରେଷ୍ଠପଣ୍ଡ ହଉଚ ! ଶାଢ଼ୀ ଖଣ୍ଡେ ଆଣି ଦେଇଚ ବୋଲି । କେଡ଼େ ଓଲୁଟାଏ ମ, ଯାଉନୁ—"

"ଓହୋ—" ସନିଆଁ ଆନନ୍ଦରେ ଡିଆଁଟାଏ ମାରିଲା; ଯେପରି କି ଏଇଥିପାଇଁ ସେ ଅପେକ୍ଷା କରିଥିଲା । ଚୌକାଠରେ ମୁଣ୍ଡ ବାଡ଼େଇ ହୋଇଗଲା ।

"ଦେଖ୍, ପୁନି, ପାହାରେ ଦେଲି । ହେଲେ, ସେ ଶାଢ଼ୀଟାକୁ ରୁ ପିନ୍ଧିବୁ । ଆସି ଦେଖିଯିବି—" ଦୁମ୍ ଦୁମ୍ ହୋଇ ଦୌଡ଼ିଗଲା । ଆସୁ ବିପଦ, ଯେ ଯାହା କହୁ; ପୁନି ତାର ଶାଢ଼ୀ ପିନ୍ଧିବ । ଏମିତି ଆଉରି କେତେ କଣ ସେ ଆଣିଦେବ । ଦେଉ ଦେଉ ଦିନେ ଗୋଡ଼ ତାର ପଡ଼ିଯିବ ଖାଲରେ ଯଦି, ପୁନି ବାହୁନିବ । ତା'ରି ଲାଗି ଆପଣାକୁ ଉଜାଡ଼ିଦେବାକୁ ମନ ହୁଏ । ପୁନିଆର ସବୁଯାକ ମୋହିନୀ ସେହି ମୁହଁ ଖଣ୍ଡିକରେ । ଧର୍ମାବୁଢ଼ାର ମନ୍ତ୍ର ପ୍ରତି ସମ୍ମାନ ଆସୁଥାଏ । ସେହି ଶିଖେଇଛି ନିର୍ଭୀକ ହୋଇ ଆନନ୍ଦ ଖୋଜିବାକୁ । ସବୁ ବିପଦକୁ ସେ ପିଠି ପତେଇ ଦେବ । ଭୟ ନାହିଁ । ମନେ ମନେ ସନିଆ ପୁନି ସଙ୍ଗେ କଥା-ଭାଷା କରି, ମନମାଫି ଉତ୍ତର ପାଇ ପାଇ, ଆପଣାଭୁଲା ହୋଇ ଧାଇଁଥାଏ । ଇଚ୍ଛା ହେଉଥାଏ, ଧର୍ମାବୁଢ଼ା ପାଖକୁ ଯିବ । କହିବ—ମୁଁ ତୋର ଚେଲା, ମୁଁ ତୋର ଗୋଲାମ । ବଡା ଆଉ କଛି । ତା ପରେ ସିଧା ମଦଖଟି । ପୁନି କି କହୁ କଛି; ସେ କଣ ଖୁସି ହୋଇ ନ ଥିବ ? ଆଜିର ଏ ଦିନ—ସେ ଖଣ୍ଡେ ଶାଢ଼ୀ ଆଣି ଦେଇପାରିଛି । କି ଆନନ୍ଦ ! ସ୍ଥା ପରେ ଅବଶ୍ୟ ମଦଖଟି—।

ଖଣ୍ଡେ ଦୂର ନ ଯାଉଣୁ ପୁନିମା ସଙ୍ଗେ ହାବୁଡ଼ା ହାବୁଡ଼ି । ଶାଢ଼ୀ ଦେବା କଥା ତଣ୍ଟି ଯାକେ ଉଠି ଉଠି ଆସୁଥାଏ । ଭାବିଲା, ସେ କଛି କହିବ ନାହିଁ । ପୁନିମା ନଜେ ଦେଖୁ, ନଜେ ବୁଝୁ ।

"କରେ—"

"ଯା, ଯା, ପୁନି ଅନ୍ଧାରରେ ବସିଚ ମାଉସୀ— ।" ଉପାୟ ନାହିଁ, ପେଟରୁ କଥା ବାହାରିଗଲା । "ଅନେଇଁଲୁ ମୋ ଆଡ଼କୁ ସନିଆ ! ଆମ ଘରକୁ ଯାଇଥିଲୁ କି ରେ ଅଲକ୍ଷଣା ! କହ, ସତ କହ; ନଇଲେ ଅଇଗ୍ଭ--"

"କାହିଁକି, ହେଲା କଣ ମାଉସୀ ? ତମ ଘରକୁ ଗଲେ କଣ ପାପ ଲାଗିବ— ?"

"ସେ ସବୁ ସେକ୍‌ଚଲିଆ କଥାଗୁଡ଼ାକ ମତେ ପୁଣ ଲଗେ ନାହିଁ ଜାଣି ଥା । ମୁଁ ନାହିଁ, କେହ୍ବ ନାହାନ୍ତି । କାହିଁକ ବାର ବଜାଗ୍ଭ ମଣିଷ ଯିବେ ମୋ ଘରକୁ ? ମୁଁ ପୂନକ ମନାକରି ଦେଇଛୁ; ତଥାପି ମନାକର ଦଉଚ । ଯେତେ ଦନ ପିଲ ପିଲ ଥିଲ ଯିନା ! ଆଉ ସେ ମିଶିବ ନାହିଁ ତୋ ସାଙ୍ଗରେ—"

ସନଆ କାବା ହୋଇଗଲ । ତେବେ—ପୂନମାର ସ୍ବଭାବ ସେ ଜାଣେ । ଭରସି କର ବଶ୍ବାସରେ ପଗ୍ଭରଲା 'ପୁନ ଘରେ ରହଲଣି କ ମାଉସୀ ?'

"କରେ, କରେ ଚୁଲିପଣା, ତୋ ବାପର କଣ ଗଲ ? ଯା, ଯା; ଭାକ୍ ସ୍ଭକ୍—"

"ବାଟରେ ଦେଖିଲେ ହୁରୁଡ଼ୋଉଚୁ କାହିଁକ ? ମୁଁ ତୋର କଣ କଲ ?—"

ଯିବୁଟି ରୁ; ଆଉ ଦନେ ଯଦ ମୋ ଦୁଆର ମାଡ଼ଚୁ ଦେଖିବୁ ପୁଣି । ଯାବତ ବଜାଗ୍ଭ ଟୋକା, କୁକୁର ଧାଉଡ଼ ଲଗେଇଚ । ଯା, ପଳା—"

"କାହିଁକ ମିଛରେ ମତେ ଗାଳଦଉଚୁ ମାଉସୀ ? ଯାଇଥିଲି ତ କଣ ତୋର ଉଜାଡ଼ ଦେଇ ଆସିଚ, ଯା ଦେଖିବୁ । ପୁନ ପାଇଁ ଖଣ୍ଡେ ଛିଟ ଶାଢ଼ୀ ଆଣିଦେଇଥିଲ ବୋଲ ଯାଇଥିଲ ।" ଆଉ ଯିବ କୁଆଡ଼େ ? ସଇଁ ସଇଁ ହୋଇ ଜେମା ଗର୍ଜିଉଠିଲ । କହିଲ—ଛିଟ ଶାଢ଼ୀ—ଏମିତ ଛିଟ ଶାଢ଼ୀ ଦେଇ ଆସେ ରେ ଗ୍ଭଣ୍ଡୀ ଅଣ୍ଟୁକୁଷ୍ଟ ଘର ପୁଅ ! କୁହାଳଆ ପଡ଼ଚୁ ! ଦେଖ ହୋ—" ଗୋଳମାଳ ଶୁଣି ବାଟୋଇ ଅଟକଲେଣି । ଦ ଜଣ ଚମକ ଆସିଲେଣି ପାଟି କର କର—"କଣ ହେଲ ? କଥା କଣ ?"

"ଦେଖ ତ ଏ କେମିତ କହୁଚ—"

"ହାଁ, ହାଁ ; ଲଗା ତାକୁ । ଆରେ ଥୋପା ମ—ବଢା ଗଲ କାହିଁ—"

"ଆଉ ଦନେ ଯଦ ରୁ ମୋ ଘରକୁ ଆସିଚୁ—" ଗର୍ଜି ଲଗିଚ ପୁନର ବାଘୁଣୀ ମା । ସନଆ ପାର୍ । କ ଦୋଷ କରିଛୁ କାହାର ସେ ! କାହିଁକ ଏମିତ ପୁନମା ଉଚ୍ଚୁଛୁ । ଭାବବାକୁ ବେଳ ନାହିଁ । ମଦୁଆ ପାଟି କରୁଛନ୍ତି । ସନଆ ଅନ୍ଧାରରେ ଅଦୃଶ୍ୟ ହେଲଣି ।

ଜେମାକୁ ଘେରେଇ ପକେଇଲେଣି ସାନ୍ତ୍ବନାରେ । ହାମ୍ ବଜାରର ସହାନୁଭୂତ । 'କୋଉଠିକ ଯିବ ? ହିଁ, କଣ ହେଲ ? କୁଆଡ଼େ ଗଲ ସେ

ପିଲା ? କଣ କଥା ?' ମୁହଁକୁ ପୋଛ, ଡରଡର କଣ ପୂଜାର ମା ଘରଆଡ଼କୁ ଚାଲିଲା । ପଛରୁ ମଦୁଆ ପାଟି କରି କରି ଆସୁଛନ୍ତି—"ଏମିତି ପଳେଇ ଯାଉଚ କାହିଁକି ? ହେ। ସାଙ୍ଗୀ; କହିଗଲ ନାହିଁ ?"

ମଦୁଆଟା ଘରଯାକେ ପିଗ୍ର ଧରିବ ନାହିଁ ତ ! ବାଟକୁ ଗ୍ରୁଡ଼ଦେଇ କେମା ଆର ଗଳିକୁ ବାଙ୍କିଗଲା । ପଛରୁ ମଦୁଆ ଘୂଙ୍ଗୁଳେଇ ଆଣ୍ଟୁଛି ଗୀତ ବୋଲିଲା ପରି, "ପଳେଇଲା ରେ ପଳେଇଲା ।"

ଏମିତି ସାହି, ଏମିତି ଘର ! ବାର ଲୋକଙ୍କ ବୁଷ୍ଟି । ମଦୁଆ, ବଜାଣ୍ଡି, ମଣିଷର ଥାଇଚା ନାହିଁ । ହେଁ ହେଁ, ଫେଁ ଫେଁ, ହେରେସୀ, ଫୁଲେଇ, ଜୁଡ଼ାବାନ୍ଧୀ, ଫୁଲନାଇ । ଯେତେବେଳେ ଦେଖିଲେ ସମାନ ତାଙ୍କର ସଂଖ୍ୟା । କର୍ଣ୍ଣ ମଲେ ପାଞ୍ଚ, ଅର୍ଜ୍ଜୁନ ମଲେ ପାଞ୍ଚ । ଉଡ଼ି ଉଡ଼ି ସୁଖ ସରିଯାଏ । ରୋଗ ଘୋଟେ, ଘା ଫୁଟେ, ଆୟୁଷ ତୁଟିଯାଏ । ଅନ୍ଧାରୁଆ ଘର ଭିତରେ ସନ୍ତସନ୍ତିଆ ଫିମ୍ପିମରି ଚଟାଣରେ, ଛିଣ୍ଡା ହେଁସ ଉପରେ କିଏ ସେ ପଡ଼ିରହେ । ନାକରେ କାନ୍ଦ କାନ୍ଦ ଅପେକ୍ଷା କରେ, କେବେ ଦିନ ସରିବ । ଗୋଡ଼-ଦଳା ବାସିଫୁଲ । ତାର ଜାଗା ଖାଲି ପଡ଼ି ନାହିଁ । ମୁହଁରେ ତେଲ, ହଳଦୀ ବୋଳି ହୋଇ ଆଉ କିଏ ହସୁଛି ।

ସେ ନାହିଁ ।

ନା, ଆପଣା ଧିଆଡ ଦେଖିଛି, ଉଡ଼ା ଜୀବନରେ ସୁଖ ନାହିଁ । ପୂଜାକୁ ସେ ଉଜାଡ଼ ଦେବ ନାହିଁ । ମା'ର ମନ । ଛୁଆବାଲି ବଳେଇ ପରି ପରକୁ ଖାଇ ଗୋଡ଼ୋଉଛି; କାଳୁ ବଢ଼ିଲା କଇଁ ପରି ବଢ଼ିଲା ଝିଅ । କେତେ ଦିନ ତାକୁ ଅଟକେଇ ହେବ ! ବର ଦରକାର । ସଜଆ ବାଉ ହେବାକୁ ଚାହେଁ । ସାଧାରଣ ମେହେନ୍ତାଣୀ ଭାରିଯା, ଅପନା କାମରେ ନଖ ଘୋଷରି ହେବ । ମଦ ପାଣି ଖାଇ ଦୁଃଖ ଭୁଲିବ । ତାର ମେହେନ୍ତର ବର । ତାର ବି ସେହି କାମ, ସେହି ପରିଚୟ । ତାଡ଼ି ପିଇ ମାତିବ, ପିଟିବ । ସେହି ବାଟରେ ଯିବେ କୁକୁରଛୁଆ ପରି ତାଙ୍କର ଅକର୍ମା ଛୁଆ, ଅଜ୍ଞବରୁ ଅଜ୍ଞବକୁ, ଦୋଷରୁ ଦୋଷକୁ । କଥା ନ ମାନି ପୂଜା ଗୋଦା ତେଣିକି ଚାଲିଯାଉଛି । କପାଳର ଲିଖନ । ସହରର ଧନ ତାଙ୍କର ନୁହେଁ । ଏଇ ହସଖୁସିରେ ତାଙ୍କର ଭାଗ ନାହିଁ, ଆଶା ନାହିଁ, ବଢ଼ତି ନାହିଁ । କୋଠା ସେ ପାଖର ଅଳିଆକୁଡ଼ ସେମାନେ । ଫଟାହାଣ୍ଡି ପରି କପାଳ ତାଙ୍କର ପୋଡ଼ା ।

କିଏ ଡାକିଥିଲା ପୂଜାକୁ ତାହାରି ପେଟରେ ଜନ୍ମ ହେବାକୁ ?

ଅବିନାଶବାବୁ ଘରେ ବିଜୁଳି ଆଲୁଅ ଜଳୁଛି । ମେଘନାଦ ପାଚେରି ଦିଶୁଛି ଅସୁରର ପିଠି ପରି । ଉପରେ ଥାଏ; ତଳୁ ଟେକା ଗଲେ ତାକୁ ବାଜେ ନାହିଁ ।

ପନ୍ଦରଟା ବର୍ଷ କାଳ ପରି; କିନ୍ତୁ ଏହି ଆଲୁଅର ଆଖିରେ ସେ ବିସ୍ମୃତ । କେମାର ମନ କଣ ହୋଇଯାଉଥାଏ । ପଦ୍ମହି ଡାକିଲା, ପୁନର ସୋର୍ ନାହିଁ । ହୃଦ ମଲମଲ ହୋଇ ପୁନ ଉଠିଲା । "କୁଆଡ଼େ ଯାଇନୋଉଁ ତ ?" "କୁଆଡ଼େ ଯିବ ବୋଉ !" ଆଶ୍ୱସ୍ତ ଲାଗିଲା ।

କେମା ସ୍ୱିଚ ବସେଇ ଦେଲା ।



# ଅଠର

ଏମିତି କହିଦେଲବାଲ ! ପୂଜା ପାଖକୁ ସେ ଆଉ ଯିବ ନାହିଁ; ନୁହେଁ— ସଜନା ଝୁରୁଥାଏ, ପୂଜା ବୋଉର ମିଜାଜ ବିଗିଡ଼ିଛି । ଅକାରଣରେ ତାର ସବୁଗର ମୁହଁ ଉପରେ କର୍ଘାତିଆ ମାଡ଼େ ଦେଲା । କାହିଁକି ? ତାର ଉତ୍ତର ନାହିଁ । ବିନା କାରଣରେ, ବିନା ବଚନକାରେ ଏଠି ସବୁ ଘଟେ । ଭାଗ୍ୟ, ସମସ୍ତ । ଅପ୍ରତ୍ୟାଶିତ । ମଦ ପିଇ କାହାର ମୁଣ୍ଡ ଖରାପ ହୁଏ, କାହାର ବା ମଦ ନ ମିଳିଲେ ହୁଏ । କିଏ ଦୁର୍ବଳ ଦେହରେ ଧନଯାକ କାମ କରି ଟିକକ କଥାରେ ଭୁକ ଉଠେ । ସବୁ ସୁଧୁରିଯିବ । ଧୂଳିଆ ମୁଣ୍ଡ କାମରେ ଲେଟୁଥାଏ, ଯାହାପାଏ ତାହା ଓଟାରି କିଏ ଦୁଇ ହାତରେ । ପରିଣାମର ନକ୍ସା କାଟିବାକୁ ସମସ୍ତ ନାହିଁ ।

ମନଟା ଖରାପ ହୋଇଥିଲା । ସବୁଯାକ ରାଗ ପଡ଼ିଲା ସେହି ଦୁ'ଟା ଲୋକଙ୍କ ଉପରେ; ଯେଉଁମାନେ ଭଲେଇ ହୋଇ ତାର ନିର୍ଯାତନାରେ ସାହାଯ୍ୟ କରିବାକୁ ଚାଲି ଆସିଥିଲେ । ଅନ୍ଧାରୁଆ ଦେଖି ବାଟ ଓଗାଳି, ପଚାରିଲା, କିଏ ତୁମେ ? ଅବସ୍ଥା ଘଟାଇଲା, ଚଳ୍ହାଇଲା ସେ ସଜନା । ଗରମ ହୋଇ ଉଠିଲା । ପିଠ୍ର ନେବାକୁ ମନ କରି ପୁଣି ପୂଜା ଘରବାଟେ ଗଲା । ବୋଷେଇ ବସିଛି । ପୂଜାର ପାଟି ଶୁଭୁଛି ଘର ଭିତରୁ । ହଠାତ୍ ମନେହେଲା, ପୂଜା ତାର ଖାରି ଦରକାର । ସେହି ଛୁଟ ଶାଢ଼ୀ ଖଣ୍ଡକ ପିନ୍ଧି ପୂଜା ପଦାକୁ ବାହାରି ଆସନ୍ତା । ତାହାରି ତୁଣ୍ଡରେ କହନ୍ତା-- ମୁଁ ଆସିଚି । କି ସୁନ୍ଦର ଦିଶୁ ହେଉଚି ! ଚାଲ୍ ଯାଆନ୍ତେ ନାହିଁ ?

ଡାକିବାକୁ ମନ ହେଉଛି । ଅଟକ ରହୁଛି । ଘରେ ବସିଛି ଡର । ତାର ନାଁ ଜେମା । ମନକୁ ବୁଲେଇ ଦେଇ ସାନ୍ତ୍ୱନା ଦେଲା । ଆଜି ପାଗ ବିଗିଡ଼ିଛି, ଆଉ ଦିନେ, ଆଉ ଦିନେ । ସାହିଲୋକେ ଚାଲିଛନ୍ତି, ନୂଆଲୋକ ଚାଲିଛନ୍ତି । ଦିନର କାମର ପ୍ରତିଫଳସ୍ୱରୂପ ଠିକ୍ ଓଲଟି ପଡ଼ି ଭଲ ଶାଢ଼ୀ ପିନ୍ଧି, ଫୁଲ ନାଇ, ହାଲୁକା ମନରେ ଚଳଚଳେଇ, ଚଳଚଳେଇ ବୁଲି ଲଗିଛନ୍ତି ସାହିର ଝିଅମାନେ । କିଏ କୁଆଡ଼େ ଯାଉଛି । ସାହିର ପିଲା, ସଜନା ଦେଖି ଦେଖେ ନାହିଁ । ତାର ମୁଣ୍ଡ ପଛରେ ଦମ୍ଭ ହୋଇ ବସିରହିଛି ପୂଜା ।

ପୂଜା ଘର ଆଗରେ ବହୁତ ଡେରି ହୋଇଗଲା । ନଘା ହେଲବେଲକୁ ଅଚହ୍ନା ଭଲଲୋକ ଦୁ'ଜଣ କୁଆଡ଼େ ଗଲେଣି । ମନ-ଖରାପ ଭଲ ହୋଇ ନାହିଁ । କେଉଁଠି କଣ ଘୋଟିଛି ଆଜି ! ପୂରିଲା ପୂରିଲା ସହର ଭିତରେ କଳ ବିଗିଡ଼ି ଯାଇଛି । ଭଲ ଲାଗୁ ନାହିଁ, କେମିତି କଗୁଚିଆ ଲାଗୁଛି । ମିଲଦିନୁଁ ଏଇ

ସହରରେ ବଢ଼ି, ଆଜ ଲାଗୁଛି ଏଠି ତାର କେହି ନାହିଁ, ଏଠି ତାର ସମ୍ବନ୍ଧ ନାହିଁ । ବଡ଼ ସହର କେବେ ଆପଣାର ହୁଏ ନାହିଁ ।

କୋଠାଭର୍ତ୍ତି ଗହଳମସ୍ତ ଏହି ବଡ଼ ସହର । ନାନା ପଲ୍ଟନରୁ ମାଲ ମାଲ ହୋଇ ବଣ ଫୁଲିଉଠୁଛି । କଳା ଆକାଶରେ ସହରର ଆଲୁଅ ଧାସ । ଦୂରର ଗାଡ଼ ଆଲୁଅ ଦିଶୁଛି ପଛକୁ ପଛ । ହଲ୍‌କା ପରି ଆଲୁଅରେ ଗାର କାଟିଦେଇ ମଟର ପଳେଉଛି । ଗାଡ଼, ଘୋଡ଼ା, ମଣିଷ, କୋଠା । ଅହରହ ଶବ୍ଦ । ବେପାର, ପଇସା, ଟଙ୍କାର ସହର । ଦରିଦ୍ରର ସ୍ଥାନ ନାହିଁ ।

ଦନାକେତେ ତଳେ ଏ ହାଡ଼ସାହି କେତେ ବଡ଼ ଥିଲା । ଜଙ୍ଗଳକୁ ନୂହେଁ ମେଲା ଖୋଲା । ଥାଏ ସେଠି ଖାଲ ଢ଼ିପ, ମଇଳା ଅଳିଆ, ଛଡ଼ା ଛଡ଼ା ହୋଇ ଗାଁ ପରି ସେ । କରବୁ କରବୁ ଅତଡ଼ା ଖାଇଲା ପରି ବଡ଼ ସହର ସବୁ ଖାଇଯାଇଛି । କୋଠା ବସିଲାଣି । କେତେ କୋଠାର କଙ୍କାଳ ଠିଆ ହେଲାଣି । ସ୍ଥିଅର ବୁନଆଦୀ କଏ କୁଆଡ଼େ ଗଲେଣି, ତାଙ୍କର ଆଜ ପତ୍ତା ନାହିଁ । ମନ ଖୁସିଥିଲେ ସନଆ ଏହି ସହରକୁ ଗୃହେଁ, ସହର ହସିଲା ପରି ଦଶେ । ପୁନବୋଉର ଗାଲ ଆଜ ସହରରେ ବାଜ ଲେଉଟି ଆସୁଛି । ଶହେ କଣ୍ଠରେ ସହର ଥଟ୍ଟା କରୁଛି, ଗୁଡ଼ଘର ପିମ୍ପୁଡ଼ିର ନୂହେଁ, ଦୂର୍ ପଳା, ଦୂର୍ ପଳା ।

ମନ ଖୁସି କରିବାକୁ ସାଙ୍ଗୀ ଦରକାର । ଡାକ ଡାକ ଫେରିଲା । ଏତେ ଭେଉରରେ କେହି ମିଳିବେ ନାହିଁ । ସଙ୍ଗରୁ ଧରିଥିଲେ ମଜା ହୋଇଥାନ୍ତା । ମଦ ଖାଇବାକୁ, ବୁଲିସିବାକୁ ପଇସା ଦରକାର । ଯାହା ସଞ୍ଚିଥିଲା, ଝାଡ଼ଝୁଡ଼ ଦେଇ ଛିଟ ଶାଢ଼ୀ କିଣିଛି । ଛିଟ ଶାଢ଼ୀ, ଛିଟ ଶାଢ଼ୀ । ଦନକର ପାଗଳାମି ସବୁ ଟାଣିନେଇ, ବଦଳରେ ଦେଇଛି ରାସ୍ତାରେ ଶୋଧା, ଗାଳି । ଦୁଗୁଣେଇ ହୋଇ ପୁନମା'ର ଶୋଧା ମନେପଡ଼ିଲା । ବିଶ୍ୱାସର ତଳକୁ ଭେଦିଲା ନିରାଶା । ସେ ହାରିଛି ।

କିଏ ଜଣେ ଆସୁଛି । ଓଢ଼ଣା ପକେଇଛି । ସାଙ୍ଗରେ ଗ୍ଲଲୁଛି ଛୁଆ ବଳଟେ । ଭଲ ଶାଢ଼ୀ ପିନ୍ଧିଛି । ବାପ୍ପା ବୋଲି ହୋଇଛି । ଅନ୍ଧାରେ ଅନ୍ଧାରେ ଛପିଲା ପରି ଗ୍ଲଲୁଯାଉଛି । ସନଆ ତାର ପିଛା ନେଲା । ଗ୍ଲଲୁଗ୍ଲଲୁକା ମଶାଣି ଆଡ଼କୁ । ମଶାଣି ବାଟର ଦୋଛକି ସେ ପାଖେ ବରଗଛ ମୂଳେ ଗୁନ ହୋଇ ବସିପଡ଼ିଲା । ରାସ୍ତାରେ ଟଳି ଟଳି, ଗୀତ ବୋଲି ବୋଲି ମଦୁଆ ଗ୍ଲଲୁଛନ୍ତି । ଦୂରରେ ତଳେ ମଶାଣିରେ କିଏ ଜଳୁଛି । ନାଲିଆ ଧାସରେ ମାଲ ଖାଇ ଦଶୁଛନ୍ତି । କାହିଁକି ବସିଲା ସେଠି ସେ ! କଥା ନାହିଁ, ବାର୍ତ୍ତା ନାହିଁ । ସାହର

ମଣିଷ । ଏହି ସହରର କମିଆଁ । ମାହାଳିଆ ବୂଲୁଥିଲେ ଅନୁଭୂତ ମଜା ହାବୁଡ଼େ । କୁତୂହଳ ଗୁଟେଇବାକୁ, ସମସ୍ତ କାଟିବାକୁ । ଫୁଟି ଫୁଟିକା ଜଳିଲାଗିଛି ମଶାଣିର ନିଆଁ । ପବନରେ ଧୂଆଁ ଉଡ଼ିଆସୁଛି । ପୋଡ଼ା ମଣିଷର ଫୁରୁକୁଟିଆ ଗନ୍ଧ । କରଛଡା ଦେଇ ସହର ରହିଛି ଏଠୁ । କୋଠାବାଡ଼ି, ମଣିଷ ଗହଳି । ନଈର ବାଲିଚରରେ ଅନ୍ଧାର ପଡ଼ୁଛି । ମଲା ମଣିଷ ଜଳୁଛି । ଶାଢ଼ୀ ପିନ୍ଧି ବସିରହିଛି କେହି ଜଣେ ବରଗଛ ମୂଳରେ ।

ଦୂରରୁ କଏ କାନ୍ଦୁଛି । ମଶାଣି ଆଡ଼ୁ କାନ୍ଦଣାର ସ୍ୱେଳ । ସଂସାର ସରିଗଲା କାହାର ? ଆଖି ଫୁଟିଗଲା । ଭଉଁରି ଭଉଁରି ଧୂଆଁ ଉଠୁଛି । ନୂଆ ନୁହେଁ, ଅତି ପୁରୁଣା । ଦୂରରୁ କେଉଁଠୁ ନଅଟା ବାଜିଲା । ନିର୍ଜନ ବାଟ । ମଶାଣିରେ କଏ କାନ୍ଦୁଛି । ସହର ଭିତରୁ ତୀର ବେଗରେ ଧାଇଁ ଆସୁଛି ଗୋଟାଏ ମଟର । ବାଁ, ଡାହାଣ ବାଟ ଛାଡ଼ିଦେଇ, ସିଧା ଏହି ଆଡ଼କୁ । ବରଗଛ ତଳେ ଫଡ଼ ଫଡ଼ ଶବ୍ଦ । ବାଦୁଡ଼ିର ପକ୍ଷୀ ନୁହେଁ ମଣିଷର । ଧଡ଼୍ କରି ମଟର ଠିଆ ହେଲା, ଆଲୁଅ ଲିଭିଗଲା । ଧୋବଲା ହୋଇ ଜଣେ ଲୋକ ।

ପାଖକୁ ଯାଉ ଯାଉ ମଟର ପିଠିରେ ଦଉଟା ବୋଲୁଅ । ଠଣ୍, ଠଣ୍ । ଠିକ୍ ଶୁଭୁଛି । ମଶାଣି ଜଗୁଆଳି ପରି କଳାକଳା ପାଟି । ଅଭଦ୍ର, ଅସଭ୍ୟ । "ଆଜ ଧର୍ମପଡ଼ିଚ ବାପଧନ ! ରହ, ଯାଉଚ ରଇ ଥା । ଚାଲ, ଚାଲ, ସବୁର କର୍ ।" ଧଡ଼ପଡ଼ ହୋଇ ମଟର ଚେଇଁଉଠିଲା । ସାନ ପିଲା ଉର୍ଦ୍ଧ୍ୱଶ୍ୱାସରେ ଦଉଡ଼ ଯାଉଛି । ଆଲୁଅ ଜାଳି ମଟର ଧାଇଁ ପଳେଉଛି । ଧୂଳି କଟିଗଲାପରେ ଦିଶୁଛି କିଛି ନ ଜାଣିଲାପରି ମୁହଁକୁ ତଳକୁ ପୋତି ସେହି ଓଢ଼ଣା ଚାଲିଛି ସ୍ତ୍ରୀଟାଏ ସ୍ତ୍ରୀଟାଏ । ସନିଆ ବାହାଦୂରି ନେଲା । ଏହି ଗୋଟାଏ କାମରେ ଆଜିର ପରିଜନ୍ମ ସୁଧୁରିଗଲା ତାର । ମନଇଚ୍ଛା ଠୋ ଠୋ ହସି ପିନ୍ଧି ନେଲା ଓଢ଼ଣାର ।

"ଆଲୋ ହେ, ରହ ରହ । ସାଙ୍ଗ ହେଇ ଯିବା—"

"ମଟର ଚାଲିଗଲା, ଦଉଡ଼ୁ ନାଇଁ ଲୋ—"

ମୁଣ୍ଡରେ ଓଢ଼ଣା ଆଉ ନାହିଁ । ବଡ ମଣିଷଟା ଦୌଡ଼ୁଛି । ଭଁ ଭଁ ହୋଇ କାନ୍ଦି କାନ୍ଦି ଦୌଡ଼ୁଛି ସାନ ପିଲା, ଠିକ୍ ସମାନ୍ତରାଳ ହୋଇ । ଲୋକଟାକୁ ଚହ୍ନିବାକୁ ପଡ଼ିବ । ସନିଆ କୁଦିଗଲା । କଚାଡ଼ି ହୋଇ ପଡ଼ି ପୁଣି ଉଠି ପଡ଼ି ସ୍ତ୍ରୀଲୋକ ଧାଇଁଛି, ପଛେ ପଛେ ସନିଆ । ଉଲ୍ଲାସରେ କୁକୁରପରି, ଗେଧ ମାଙ୍କଡ଼-ପରି ବୋବେଇ ବୋବେଇ ଚାଲିଛି । ସାମ୍ନାରେ ଏହି ବଡ଼ ସହର । ଏଠି ଏତେ ମଣିଷ, ଏତେ ନବରଙ୍ଗ ! ଖୋପ ପରି ଗଳି, ସେଠି ମୂଷା ପରି ମଣିଷ । ସେହି

ଆଡ଼କୁ ସ୍ତ୍ରୀଲୋକ ଦୌଡ଼ୁଛି । ସନିଆ ଭାବିଥିଲା, ଜଗତାପଟ ସମ୍ପୂର୍ଣ୍ଣ ହୋଇଛି; କିନ୍ତୁ ପାଖରୁ ଚମକି ଆସିବାରୁ ସ୍ତ୍ରୀଲୋକ ଠିଆ ହେଲା, ଫଁ କରି ଉଠିଲା । ସେ ମୂଷା ନୁହେଁ; ମୂଷା ସେ ଧରେ—ବିଲେଇ ।

"ମଡୁଆ, ବଜ୍ଜାତ୍, ଗୁଣ୍ଡା କାହିଁକା; କଣ କରି ପାଇଲୁ କି ରେ ? କୁଆଡ଼େ, ଧାଇଁ ଆଉଚୁ କୁଆଡ଼େ—କୁତ୍ସିତ ବୀଭତ୍ସ ଗାଳି । ସନିଆର ସାହସ ଉଡ଼ିଗଲା । ଧୀରେ ଧୀରେ ସ୍ତ୍ରୀଲୋକ ଚାଲିଛି, ଛକିଲାପରି ପଛେ ପଛେ ସନିଆ । ସାହିମୁଣ୍ଡ, ଗସ୍ତାର ନଲ୍‌ଟଣ । ସ୍ତ୍ରୀଲୋକ ଠିଆ ହେଲା । ଶାଢ଼ୀରେ ଧୂଳି ଲାଗିଛି, ବେଶ ନଷ୍ଟ ହୋଇଯାଇଛି । ବୁଲିପଡ଼ି କହିଲା—କିଏ ରୁ, କଣ କହୁଚୁ ? ପାଟି କରିବି, ଦେଖିବୁ ?—

ସନିଆ ଚହ୍ଲି ପକେଇ କାବା ହୋଇ ଠିଆ ହେଲା ।

"ହଇ ଲୋ, ତୁ ରଙ୍ଗି ! ହଇ ଲୋ ତୁ—?"

"ସନିଆ—!" ରଙ୍ଗି ପ୍ରାୟ କାନ୍ଦିଲାପରି ।

"କିଏ କି ଲୋ ସେ ?"

"କିଏ ?"

"ସେଇ ମଟର ଗାଡ଼ିରେ ?" ରଙ୍ଗି ଥଙ୍ଗେଇ ଥଙ୍ଗେଇ ହେଲା । କହିଲା—କୋଉ ମଟରଗାଡ଼ିରେ ?

ସନିଆ ହୋ ହୋ ହସିଲା । "କହୁନୁ ରଙ୍ଗି, କିଏ ସେ, କିଏ ?"

"ମୁଁ କିଛି ଜାଣେ ନାହିଁ, ଭକ୍—"

ଗଳି ଅନ୍ଧାରରେ ରଙ୍ଗି ଲୁଚିଗଲା । ଏହି ସେ ରଙ୍ଗି । ଦିନବେଳେ ପାଇଖାନା ସଫା କରେ, ରାତିରେ ବେଶ ହୁଏ । ସନିଆର କି ଯାଏ ? କିନ୍ତୁ ସେହି ମଟରଟା !

ମେହେନ୍ତର ମଟର ଚଢ଼େ ନାହିଁ । ସନିଆର ଆଖିରେ ସେ ଖେଣ୍ଡାପରି ।

□ □

## ଊଣେଇଶ

ନଅଟା ବାଜିଲାଣି । ସାହି ଛୁନା ପଡ଼ିଗଲାଣି । ଅନ୍ଧାର ଭିତରେ ଜୁଳୁ ଜୁଳୁ ହୋଇ ଆଲୁଅ ଦିଶୁଛି । ଧନୀବୁଢ଼ାର ଟୁଙ୍ଗୀ ଖୋଲିଅଛି । ତାର ଘର, ତାର ଆଶ୍ରମ ସବୁ । ଦୁଆରମୁହଁ ପାଖକୁ ଯାଇ ସାନ ବଖରାର ଗଞ୍ଜେଇ ଧୂଆଁ ଭିତରକୁ ସନିଆ ସ୍ୱର ଛାଡ଼ିଦେଲା ।

"ଧନୀ ଅଜା—"

"କିଏ ରେ ବାପ, ଚାଣିବ ଦମେ ? ଆସ ଆସ ।"

କଳା କେଁସି ହୋଇଥିବା ଫଟା କାଚ ଲାଗିହୋଇ, ଲାଲ୍‌ଟେଣଟିଏ ଜଳୁଛି କେଉଁ ଦୂରରେ । ଘରସାକ ଗଞ୍ଜେଇ ଧୂଆଁ ଲହଡ଼ି ଖେଳୁଛି । ଆଖି ଅଭ୍ୟସ୍ତ ହେଲେ ଦିଶୁଛି ଧାଡ଼ି ଧାଡ଼ି ହୋଇ ଚେକାମଣ୍ଡଳ ପକେଇ ହାଡ଼ିମାନେ ବସିଛନ୍ତି । ମୁହଁ କରି ବସିଛି ଧନୀବୁଢ଼ା ତାର ଦାଢ଼ି ଝୁଲେଇ । ଆଜି ଧର୍ମଚର୍ଚ୍ଚା ପଡ଼ିଛି ।

"ଧନୀ ଅଜା—"

"ହଁ, ବସ । ବଢ଼େଇଦିଅ ଚଲମ କିଏ ଆସିଲେ । କଳ୍କି ଅବତାର କଥା କହୁଥିଲି । ସତ୍ୟ, ତ୍ରେତା, ଦ୍ୱାପର ସରିସାରିଛି, ଆଉ ଅଛି ଏଇ କଳିଟା । ତହିଁରୁ ବା କେତେ ଦିନ ବାକି ଅଛି ? ଆମେ ଶୁଣିଚୁଁ ଏତେ ବର୍ଷ, ସେତେ ବର୍ଷ । ବ୍ରହ୍ମା କର ଲେଉଟେଇଦେଲେ ଯୁଗେ ବଢ଼ିଗଲା । କଳ୍କି ଅବତାର ବାହାରିବା ବେଳ ହେଇଗଲା— ।" କିଏ କହିଲା—"ଆମକୁ କାଳ ପଡ଼ିବ ଧନୀ ଅଜା; କଲ୍କି ଅବତାର ବାହାରିଲେ ଆଗ ଆମକୁ ନିପାତ କରିବେ । ଆମେ ତ ମ୍ଳେଚ୍ଛ, ଆମରି ପାଇଁ ସେ ଜନ୍ମ ହେବେ—"

"ଓଲ୍‌ଟା ବୁଝିଚ ଭଗବାନ । ଯେତେ କହିଲେ, ତମେ ତ ଏଠିକି ଆସ ନାହିଁ ; ଧର୍ମ ଜାଣିବ କାହୁଁ—"

"ମୁଁ କଣ ମୋ ମନରୁ କହୁଚ ନା, କାଲି ମଠକୁ ଯାଇଥିଲି, ସେଇଠି ଏ କଥା ପଡ଼ିଥିଲା—"

"ରୁ ଭୁଲେଇ ପଡ଼ିଥିବୁ ଦାଦି," ଆଉ ଜଣେ କହିଲା, "ଠିକଣା କଥା ଶୁଣି ପାରନୋଉଁ । ଶୁଣ୍, ଧନୀ ଅଜା କହୁଚ—"

ଧନୀବୁଢ଼ା କହୁଥା ଦେଲ, "ସେମାନେ ଚମ୍ପୁକ୍ ଠକୁଚନ୍ତି । କଳ୍‌କ ଅବତାର ଆମକୁ ମାରିବା ପାଇଁ ନୁହେଁ । ଆମକୁ ତାରିବେ, ତାଙ୍କୁ ମାରିବେ । କହୁଦେବ ଏ ଥର । ଆମେ ମଲେ ମଙ୍ଗଳା ପୂଜା କରିବ କିଏ ? ମନ୍ଦ ଗୋରୁ ଉଠେଇବ କିଏ ? କାମ କରିବ କିଏ ? ଦେଶ ଗୋଟାକ ଅଚଳ ହୋଇଯିବ । ଆମେ ଭଗବାନଙ୍କର ବେଶି ପ୍ରିୟ, ଆମେ ବଡ଼ ଭକ୍ତ । ଭଗବାନ୍ ଭକ୍ତକୁ ଜାଣିଶୁଣି ହରବରରେ ପକାନ୍ତି, ଯେମିତ କି ସବୁଥିରୁ ଲକ୍ଷ୍ମ ଉଠେଇ ନେଇ, ଲକ୍ଷ୍ମ ରଖିବ ତାଙ୍କ ଶଠିଁ—" ସମସ୍ତେ ବାହା ବାହା ଦେଲେ । ସନିଆକୁ ଝପ ଲାଗୁଥାଏ । ଆଜି ଦୁନିଆ ଓଲଟିଛି । କେଉଁଠି ସ୍କୁଲବିଦ୍ୟା ଶିଖେଇବ, ଦୁଷ୍ଟାମି ଶିଖେଇବ ନା ଆଜି ଧନୀ ଅଜା ଗଞ୍ଜେଇ ଖୋଳରେ ହୋଇଛି ଧର୍ମଯାଜକ !

"ଲକ୍ଷ୍ମ ରଖିଥିବ ତାଙ୍କ ଶଠିଁ, କାମ କରିଯିବ । ତରକଥିବ ତେରକୁ । ବାର୍ତ୍ତ୍ୟାଚାଭକ୍ତ ଶୁଣି ନା—"

"ନାହିଁ—"

"ଯାହା କହୁଚ, ତାହା ତ ଶୁଣୁ ନା । ଆମର ହେଇ ଏଇ ସାହିରେ ଦେଉଳଟିଏ କରିବା କଥା ଥିଲା ପରୁ, କୋଉଠି ? ଇଟା ଜମା କଲ ? ଗୁରିପାଖେ ଏତେ କୋଠା ଗଢ଼ାହେଉଚ । ସବୁଥିରୁ ସମସ୍ତେ ଗୁଡକା ଗୁଡ ଖଣ୍ଡେ ଖଣ୍ଡେ ଇଟା ବୋହି ଆଣିଲେ, ମାସକ ଭିତରେ ଦେଉଳଟାଏ ଠିଆ ହୁଅନ୍ତା । କାହିଁ, ଏତେ ପୂଜାଏ ଇଟା ଜମେଇଚ, ଶୁଣିଲ ତ ନାହିଁ ।"

"'କରିଦବା, କରିଦବା ହୋ ଏଥର—"

ଧନୀବୁଢ଼ାର ମଥା ବଢ଼ିଗଲାଛି । ନୂଟପଟ ହୋଇ ସନିଆ ଅପେକ୍ଷା କଲା । କୁକୁର ଭୁକିଲେ । ଜୋତା ଶବ୍ଦ ହେଲା । ଅନ୍ଧାର ଭିତରୁ ଦୁଆର ମୁହଁରେ ପାଟି ହେଲା, "ଏତେ ଲୋକ କଣ କରୁଚ ଏଠି ?"

"ଲକ୍ଷ୍ମ ଲଗେଇଚୁଁ । ଧନୀବୁଢ଼ା କହିଲା—"ଆସିବ କି ଭିତରକୁ ? ହୋ ଭଗବାନ, ଗଞ୍ଜେଇ ଅଛୁ ନା ଆଉ— ?"

"ବାହାରକୁ ଆସ—"

"କିଏ ହୋ ତମେ ? ତମ ଘର କୁଠି ? କୁଆଡ଼େ ଯିବ ?"

"ଆମେ ପୁଲିସ—"

"କୁଆଡ଼େ ଆସିଚ ପୁଲିସବାବୁ ! କଣ ହେଲା କଣ ?" ସମସ୍ତେ ପଦାକୁ ଆସିଲେ ।

"ସ୍ୱେଚ୍ଛା ହେଉଛି । ଏ ବାଟେ କଏ ଗଲା ଦେଖିଲ କି ?"

"ଆମେ ତ ସଞ୍ଜ ବୁଡ଼୍‌ବୁଡ଼୍ ଲମ୍ବ ଲଗେଇଛୁଁ । ସଡ଼କ ପଡ଼ିଛି, କେତେ ଲୋକ ଯାଉଚନ୍ତି । ନାମରେ ଆମେ ଭୋଳ୍ । କାହିଁକି କଥା କରନ୍ତୁ – "

"କେହି ଦୌଡ଼ି ଦୌଡ଼ି ଯାଇ ନାହିଁ ? କେହି ଲୁଚି ଲୁଚି ଯାଇ ନାହିଁ ?"

"କେମିତିଆ ମଣିଷ, ତାର ହୁଲିଆ କହି ପାରିବ ?"

"ଜାଣିଥିଲେ ଆମେ ପଚାରି ଆସନ୍ତୁ କାହିଁକି ?" "ଯାଅ ବାବୁ, ଆଗରେ ପଚାର ।" ପୁଲିସ ଗଲେ । ସମସ୍ତେ ଉଠିବାକୁ ହେଲେଣି । ଧର୍ମବୁଢ଼ା କହିଲା, "ସତାର୍ ଆଉ ଟିକିଏ; ବୃଥା କାହିଁକି ସନ୍ଦେହରେ ପଡ଼ିବ । ଭଜନ୍ ଲଗାଅ—"

ଧର୍ମବୁଢ଼ା ଆରମ୍ଭ କଲା, "ଥକାମନ ଚାଲ ଯିବା, ଚକାନୟନ ଦେଖିବା—"

ସମସ୍ତେ ତହିଁରେ ସ୍ୱର ମିଶେଇ ଦେଲେ । ସନିଆ ଅପେକ୍ଷା କଲା । ଧୀରେ ଧୀରେ ମନ ବୁଡ଼ିଗଲା ସେହି ଭଜନରେ ।

ତଳେ ଯାହା ଥାଉ, ସ୍ୱେଚ୍ଛା କି ଡକାସ୍ଥିତି, ମଦୁଆ କି ଲମ୍ପଟ । ସବୁ ବୀଭତ୍ସତା, ସବୁ ଦରିଦ୍ରତାକୁ ପଛକୁ କରିଦେଇ, ତୁଣ୍ଡରେ ହରିନାମର ଅମୃତ । ଧନସାକର ଅନୁଭୂତି ଉଭେଇ ଗଲାଗଲା । ଅନ୍ଧାରେ ଅନ୍ଧାରେ ଗଢ଼ି ହୋଇଗଲା ଗୋଟିଏ ମନ୍ଦିର । ସେଥିରେ ସିଂହଦ୍ୱାର, ଭିତରେ ବସିଛି ଚକାନୟନ । ବାରମ୍ବାର ମଣିଷ ପଥର କାନ୍ଥରେ ମୁଣ୍ଡ ଭୁଷୁଛି । ପ୍ରାଣରୁ ଡାକ ଉଠୁଛି, "ଚକାନୟନ ଦେଖିବା—"

ସମାଜ ନାହିଁ, ମନ୍ଦିର ନାହିଁ । ଅଛି ବ ଜାତି ।

ଭଜନ ଚାଲିଲା । ସନିଆ ଆପଣାର ସମଗ୍ର ବଳ ଏକାଠି କରି ଗଳା ଗର୍ଜି ଗାଇଲା—"ଥକା ମନ ଚାଲ ଯିବା—"

ଉଦ୍ଦେଶ୍ୟ ଭୁଲି ହୋଇଗଲା । ସ୍ୱରର ସ୍ରୋତ ଚରି ଚରି ସହରକୁ ଚଳେଇଲାପରି, ଚହଲେଇଲାପରି କେବଳ ନାମର ଧ୍ୱନି ।



# କୋଡ଼ିଏ

ସଞ୍ଜବୁଡ଼ । ମନ୍ଦିରକୁ ଯିବ ବୋଲି ମାନମୟୀ ପ୍ରସ୍ତୁତ ହେଉଥାଏ । ପୁରୁଣା ଦେଉଳ, ସେଠି ପଥରର ଦେବତା । ଭିତରେ ଦେଉଳିଆ ଫିମ୍ଫିମିଆ ଗନ୍ଧ । ଦୀପସଳିତାର ମିଞ୍ଜି ମିଞ୍ଜି ଆଲୁଅ । ରାସ୍ତାରେ ଧୂଳି, ଭିକାରି, ରୋଗୀ । ମାନମୟୀର କଅଁଳ ପ୍ରାଣ ପାଇଁ ମନ୍ଦିରର କୌଣସି ପ୍ରକାର ଆକର୍ଷଣ ଥିଲା, ତାହା ନୁହେଁ; କିନ୍ତୁ ମଝିରେ ମଝିରେ ବୋଉଙ୍କର ଆଦେଶ ହୁଏ ମନ୍ଦିରକୁ ଯିବା ପାଇଁ ଏବଂ ସେତେବେଳେ ବାଧ୍ୟରେ ପଡ଼ି ଯିବାକୁ ପଡ଼େ । ମାନମୟୀ ସଜ ହେଉଥିଲା । ମୁହଁରେ ସ୍ନୋ ଏବଂ କ୍ରୀମ୍, ଓଠରେ ନାଲି ରଙ୍ଗ, ଦେହରେ ଯଥାସମ୍ଭବ ଅଳଙ୍କାର; ବାଁ ହାତରେ ସରୁ ସୁନା ଘଣ୍ଟାଟି ଯାକେ, ଲୁଗାର ରଙ୍ଗ ଏବଂ କୁଞ୍ଚ । ପଥୁରିଆ ଦେବତାର ପୂଜା କାର୍ଯ୍ୟରେ ଏ ସବୁ ପ୍ରୟୋଜନ ହୁଏ ନାହିଁ; କିନ୍ତୁ ମଣିଷ ଗହଳିକୁ ବାହାରିବାକୁ ହେଲେ ଏ ସବୁ କରିବାକୁ ହିଁ ପଡ଼ିବ । ତେଣୁ ଦର୍ପଣ ସାମ୍ନାରେ ମାନମୟୀ ପ୍ରସ୍ତୁତ ହୋଇଥାଏ । ମୁହଁ ମଠାମଠି କଲାବେଳେ ଦର୍ପଣକୁ ଚାହିଁ ବାରମ୍ବାର ହସେ । କାଚରୁ ଆପଣାଠୁଁ ପ୍ରତିଦାନ ପାଇ ଦେହର ଲୋଭ ବଢ଼େ । ବାହାରେ ମଉଳା ଜହ୍ନ ଆଲୁଅ । ଭିତରେ ଉଜ୍ଜ୍ୱଳ ଆଲୁଅରେ ସେ ଓ ତାର ଦର୍ପଣ । ନିଜକୁ ଆସ୍ତେ ଆସ୍ତେ ଆଉଁସେ । କପାଳ ଉପରୁ ଅବାଧ୍ୟ ବାଳକେରାକ କାନ ଉପରକୁ ଖୋସି ଦେଲାବେଳକୁ ଆଙ୍ଗୁଠିଗୁଡ଼ିକ ମଠେଇ ମଠେଇ ହୁଏ ।

ଯେପରି କି ସେ ଆଉ କାହାର ସ୍ପର୍ଶ ବା କଳ୍ପନାରେ ବିଭୋର ।

ଏହି ବେଳଟି ଆପଣା ସଙ୍ଗେ ମୁହାଁମୁହିଁ । ବଡ଼ ଅଦ୍ଭୁତ ଲାଗେ ।

ବହିଲା ବାଙ୍କ ଭ୍ରୂଲତା ତଳୁ ହସ ଛଳଛଳ ଦୋଟି ଆଖି ଅଭିନନ୍ଦନ ଜଣାଉଛି । ରଞ୍ଜିତ ଓଠର ଶାଣିତ ଧାର ପୃଥିବୀକୁ ବିପଦ ସୂଚେଉଛି । ଏହିପରି ସମୟରେ ପିଠିଆଡ଼ୁ ଗୋଟିଏ ଗ୍ରୀବ ସେ ଦର୍ପଣ ଉପରେ ପଡ଼ିଲା । ମୁହଁ ପାଖେ ମୁହଁ ସ୍ଥିର ହୋଇ ରହିଲା ଓ ତା ପରେ ଗ୍ରୀବର ଦୁଇ କାନମୂଳ ସଂଯୁକ୍ତ କରି ଲାଖିରହିଲା ଗୋଟିଏ ହସ । ସେ ମୁହଁରେ ସୌନ୍ଦର୍ଯ୍ୟ ନାହିଁ, ସୌଷ୍ଠବ ନାହିଁ, ପୋଡ଼ା ଗୋଞ୍ଜଣା, ବିଧାତାର ଟାହି ଟାପରା । ବିରକ୍ତ ହୋଇ ବୁଲିପଡ଼ି ମାନମୟୀ କହିଲା—"ମଲା, ମୁଁ ଚମକି ପଡ଼ିଲି । କଲେ ତୁମ୍ଭ ଯଶୋଦା ! କେମିତି ନାକେଇତ୍ କାହିଁକି ବା !"

ବାସ୍ତବିକ୍ ଯଶୋଦା ନାକେଇଥାଏ । ନଇଁପଡ଼ି ବଣର ଜନ୍ତୁପରି ଦେହ ବଙ୍କେଇ, ଦର୍ପଣରେ ନିଜର ଚେହେରାକୁ ଆଶ୍ଚର୍ଯ୍ୟ ଭଙ୍ଗୀରେ ନିରେଖି ଠିଆ ହୋଇଥାଏ ।

"କିଣ ଫାଜିଲ୍ ହଉଚୁ ନା କିଣ ବା, ଗଲୁ ରୁ ! କୁଆଡ଼େ ଆଇଲୁ, ଏଁ ?"

ଯଶୋଦା ହସୁଥାଏ । କହିଲି, "ତମେ ଖୁବ୍ ସୁନ୍ଦର ଦିଶୁଛ ଦେଈ । ଆଉ ଦେଖିଲ ମୋ ମୁହଁକୁ, କଳା କେନ୍ଦୂରୁ ଶିଖି ଭୂଟିଯାଇଚ ଗୋ ! ଲେଉଟି-ଗଲେ ଗାଁ ଲୋକେ ବି ଚହ୍ନି ନ ପାରି ପାଟି କରିବେ, ଏଇଟା କିଏ, ଏଇଟା କିଏ !"

"ଆଃ, ମରଣ ନାହିଁ । ଆପଣା ରୂପକୁ ବାହୁନିବାକୁ ଆଇଲେ ଏତିକି-ବେଳେ ! ତୋର କାମ ନାହିଁ ଯେ, ଆସିଲୁ ମତେ ବିରକ୍ତ କରିବାକୁ ? ଯା ପଳା—"

"ତମେ ଚିଡ଼ୁଚ କି ? ସତରେ କହୁଚି । ଛନ୍ଦି ରଖିହୁଏ ନାହିଁ ମଣିଷର ଏ ପୋଡ଼ା ରୂପ । ବାଟରେ ଗଲେ, ଘାଟରେ ଥିଲେ, କେତେ ଲୋକ ଆଁ କରି ଅନେଉଥିଲେ । କିଏ ପାନ ଯାଚୁଥିଲା, କିଏ ଯାଚୁଥିଲା ଫୁଲ; ଶେଷରେ ତମରି ବାପା—"

ଚୌକିଟା ଘୋଷାରି ଦେଇ ଉଠିପଡ଼ି ହାତ ଉଞ୍ଚେଇ, ମାନମୟୀ ଧାଇଁଗଲା । କହିଲା, "ରହ, ତୋ ପିଠି ଖାଙ୍ଗୁଚ ଆଜ ।" ବିକଳ ମୁହଁ କରି ଯଶୋଦା ଠିଆ ହୋଇଥାଏ । କହିଲା—ଛି, ଛି, ମତେ ଛୁଅଁ ନା, ଛୁଅଁ ନା । ତମ ଧୋଥରେ କଳା ଲାଗିଯିବ, ଲୁଗା ମଇଳା ହେଇଯିବ । ରାଗ ନାହିଁ ମ ଦେଈ ! ଦାଣ୍ଡଘରେ ବାବୁମାନେ ବସି ତାସ ଖେଳୁଛନ୍ତି । ଜଣେ ବାବୁ ଖଣ୍ଡେ ବହି ପଠେଇଦେଲେ ତମେ ପଢ଼ିବ ବୋଲି ଯେ, ନେଇ ଆସିଲି । ଯଶୋଦା ହସିଲା । ଅଣ୍ଟିରୁ ବହି ଖଣ୍ଡେ ବାହାର କରି କହିଲା—"ହେଇ ଦେଖୁନା— ।"

"ମଲା, ଅଣ୍ଟିରେ ପୂରେଇ ଆଣିଚୁ କାହିଁକି ବା, ଏତେ ଭଙ୍ଗୀ କାହିଁକି ? ଆଣ୍ ଦେ—"

ମୁଁ କି ଜାଣେ ଗୋ ! ଥରି କରି ମୋ ହାତକୁ ବଢ଼େଇ ଦେଇ କହିଲା—ଯା, ଦେଇଦବୁ । ଝିଅଟି ଅଣ୍ଟିରେ ପୂରେଇ ଦେଲି । ଘରୁ ବାହାରିଲା ବେଳକୁ ପୁଝାରୀ ସୁ ଜଳଖିଆ ଧରି ଆସୁଛି । ଆଉ ଟିକିଏ ହେଇଥିଲେ, ସରିଆନ୍ତା ସବୁ ।

ବୋଉ ଅଛନ୍ତି ରୋଷେଇଘରେ, କଣ କରୁଚନ୍ତି । ଭାବିଲି, ବହିଖଣ୍ଡି ପାଇଲେ ଦେଇ ଖୁସି ହେବେ ତ ଓଲଟି—"

"ତୋ ମୁଣ୍ଡ ଗଣ୍ଡି । ତୁ ପଳା—"

ଯଶୋଦା ଚାଲିଗଲି । ଘର ନିର୍ଜନ ।

ଖଣ୍ଡେ ଅରଖ ନୂଆ ଉପନ୍ୟାସ । ପୁରୁଣା ଉପାସ୍ୟ । ପୃଷ୍ଠାତକ ଓଲଟେଇ ପକେଇଲାବେଳକୁ, ଚିହ୍ନା ହାତର ଖଣ୍ଡେ ସାନ ଚିଠି । ମହକ ଉଠୁଛି ।

ସୁର ନୁହେଁ—ସୁର ନ ହେଉ, ଜଣେ ଉପାସକ । ଅଜୟବାବୁ ବହି ପଠେଇ ଦେଇ, ଦୁଃଖିତ ହୋଇ ଲେଖିଛନ୍ତି—ବୋଉ କହୁଥିଲା, ତୁମେ ସବୁ ଆସୁ ନା କାହିଁକି ତୁଲି ? ପାଞ୍ଚଟା ଛକ ତଳେ ଉପରେ । ମେଞ୍ଚାଏ କଟାକଟି । ନିରେଖି ଦେଖି ତଳର ଅକ୍ଷର ବାରିବା ସକାଶେ ନିମନ୍ତ୍ରଣ । ତା ପରେ—ଭଲ ବହି, ପଢ଼ି ବୁଝିବ । ଏବଂ ନିଶ୍ଚୟ ଆସିବ ।

ପଦାରେ ଝସ୍ ଖସ୍ । ଚିଠି ଖଣ୍ଡି ବ୍ଲାଉଜ୍ ଭିତରେ ଆଶ୍ରୟ ନେଲା । ଅତି କ୍ଷୁଦ୍ର ଖୀରୁ ନିବେଦନ । ଦୁନିଆର କଠୋର ଆଖି ଆଗରେ ଝାଉଁଳା ପଲ୍ଲବ କାଳେ ! ପ୍ରସାଧନ ସରି ଆସିଥିଲା । ବହି ଓଲଟେଇ ମାନମୟୀ ଭାବିଲାଗିଲା । ଅଜୟବାବୁ ନିତାନ୍ତ ପର ନୁହନ୍ତି । ହସ ମାଡ଼ିଲା—ଏମିତି ମଣିଷ ସେ—ବାଛୁ ବାଛୁ ଖଣ୍ଡେ ବହି ପଠେଇ ଦେଇଛନ୍ତି; ଆପଣା ପ୍ରାଣର ଅକୁହା କଥାକୁ ଭାଷା ଦେଇ ଯେ ବାରମ୍ବାର କହିଲାଗିଥିବ ଗ୍ରାମଫୋନ୍ ରେକର୍ଡ ପରି ।

ବହି ପଢ଼ି ଅଜୟବାବୁଙ୍କ ମନ ବୁଝିବା ଦରକାର ପଡ଼େ ନାହିଁ, ସ୍ମରଣ କଲେ ସବୁ ମନେପଡ଼େ । ଟେଲିଫୋନରେ ଡାକ ମୁହାଁମୁହିଁ କଥାଭାଷା ହେଲା-ଭଳି ତାଙ୍କର ପ୍ରବୃତ୍ତି ନାହିଁ । ଦେଖାହେଲେ ମୁହଁ ତଳକୁ; କିନ୍ତୁ ପଦାରେ ଜହ୍ନ ଆଲୁଅରେ ଝଙ୍କା ଗଛର ଛାଇ ପରି ସେ ବି ଜଣେ । ଉପେକ୍ଷି ହୁଏ ନାହିଁ । ତାଙ୍କ ପାଇଁ ବି ମୁହୂର୍ତ୍ତ ଆସେ ।

ଝରକା ପାଖେ ପଦାକୁ ଅନେଇଁ ଠିଆ ହେଲା । ଜହ୍ନ ଆଲୁଅରେ ସବୁ ସୁନ୍ଦର ଦିଶୁଛି । ଆପଣା ଭିତରୁ ସ୍ୱପ୍ନ ଉଡ଼ିଯାଇ, ବାହାରେ ଝୁଲିହୋଇ ରହୁଛି ନିଜ ନିଜର ଆସନରେ । ଦୁନିଆ ସୁନ୍ଦର । ମାଟି ଧୂଳିର ଦୁନିଆରେ ଜଣକୁ ପ୍ରଶଂସା କରି ପୂଜା ଦେବାକୁ ଏତେ ଜଣ ଅଛନ୍ତି, ଭାବିଲେ ସୁଖ ଲାଗେ । ଏକୁଟିଆ ଥିଲେ ବି ଅଦେଖା ଉପାସକଙ୍କୁ ସ୍ମରି ଗେହ୍ଲେଇ ହେବାକୁ ଦେହ ଭିତରେ ଜୁଆର ଆସେ । ଦୁନିଆ ସୁନ୍ଦର, ହୃଦୟ ଓସାର, ଉଦାର । ସମସ୍ତେ ବନ୍ଧୁ । ତୁଳନା

କରିବାକୁ ସେ ଶୁଣିବେ ନାହିଁ । ନିର୍ଦ୍ଦିଷ୍ଟ ଚରମପଣକୁ ପଛକୁ ଫୋପାଡ଼ି ଦେଇ ମାନମୟୀ ହାର୍ମୋନିଅମ୍ ଖୋଲି ଗୀତ ବୋଲିଲା ।

ତଳେ ଚାରି ଜଣ ବସି ବ୍ରିଜ୍ ଖେଳୁଛନ୍ତି । ଅଘୋର ଓ ଅଜୟ, ସୁର ଓ ଇନ୍ଦ୍ରଜିତ୍ । ବିଜୁଳି ଆଲୁଅ ଓ ବହଳିଆ ସିଗାରେଟ୍ ଧୂଆଁ ମିଶି ଗୋଳିଆ ହୋଇ, ଗୋଟାଏ ପୁରାତନ ବ୍ୟୋମ, ସବୁ ଢାଙ୍କି ରଖିଛି । ସେଇଠି ମଣିଷ ତାସଖେଳରେ ମାତନ୍ତି । ସମସ୍ତ-ଶକ୍ତି ଯେ କାନ୍ଧରେ ଥାଇ, ହାତରେ ଥାଇ, ସବୁ ଅପ୍ରୀତିକର ଜଞ୍ଜାଳକୁ ଅସ୍ଥି କରି ବାରମ୍ବାର ପ୍ରହାର କରେ, ସେ ଶୋଇପଡ଼େ, ସତ୍ତ୍ୱ ହଜାଏ ।

ବାହାରେ ଜହ୍ନ ଆଲୁଅ ଯାଏ, ଅନ୍ଧାର ଯାଏ, ସ୍ତବ୍ଧ ଆକାଶରେ ମେଞ୍ଚା ମେଞ୍ଚା ତାରା ବୃଥା ଝକମକ କରୁଥାନ୍ତି । ଭିତରେ ନୂତନ ବ୍ୟୋମରେ ମାର୍ଜିତ ମନର ନୂତନ ସୃଷ୍ଟି, କେବଳ ତାସ୍‌ର ସଂସାର ।

ରୁମ୍‌ଲି ଯୁଦ୍ଧ ଲାଗିଥାଏ । ଚିନ୍ତାପଥ ସୁଗମ କରିବାକୁ ଆତୁର ସିଗାରେଟ୍ ।

"ନୋ ବିଡ୍ — ନୋ ଟ୍ରମ୍ପସ୍ —" ସେଇ ତାର ହୁଙ୍କାର, ଆସ୍ଫାଳନ, ସାଙ୍କେତିକ ଭାଷା । ଉତ୍କଟ ଭାବନାର ରେଖା । ଆଶା—ଆଶଙ୍କା — ଆନନ୍ଦ — ପୁଣି ସବୁ ବଦଳି ଲାଗିଛି ଚଳଚ୍ଚିତ୍ର ପରି । ସଭ୍ୟ ଶିକ୍ଷିତ ମୁହଁରେ ସାହୁର ଗ୍ଳାନି ପରି, ଆଦିମ ମଣିଷର ପ୍ରାଣର ପିପାସା ଫୁଟି ଫୁଟି ଉଠୁଛି ହିଂସା—ଜିଘାଂସା—ମୋହ ।

"ନୋ ବିଡ୍--ନୋ ଟ୍ରମ୍ପସ୍..." ଅବିରାମ ସେଇ ଖେଳର ଡାକ । ତାହାର ମଝିରେ ସ୍ୱପ୍ନରେ ବାଲିବାଲେଇଲା ପରି ପଡ଼ିଶାଘର ଖବର ଓ ଦୁନିଆର ଖବରର, ପୁଣି ସେ ଚର୍ଚ୍ଚା ଅଧାରୁ ଭାଙ୍ଗି ପଡ଼ି କେଉଁଆଡ଼େ ଅନ୍ତର୍ହିତ ହୋଇଯାଏ । ସ୍ଥଳେ ଯୁଦ୍ଧର ଫଳାଫଳ, ଯୁଦ୍ଧ କୁଶଳତାର ବିଶ୍ଳେଷଣ, କଣ ଖେଳିଥିଲେ କଣ ପରିଣତି ଘଟିପାରିଥାନ୍ତା । ହେଲି ନାହିଁ, ଆପଣା ବ୍ୟକ୍ତିତ୍ୱର ପ୍ରତିଷ୍ଠା, ଆପଣା ଛଡ଼ା ଅନ୍ୟ ସମସ୍ତଙ୍କର ଭୁଲ୍ । ଏହିପରି ଉନ୍ନତ ଚିନ୍ତା ।

ଗୃହେଣି କର୍ଣ୍ଣଧାର ।

ଅଘୋର ହାରିଯାଉଛି । ତାଚ୍ଛଲ୍ୟରେ ସୁର ଓ ଇନ୍ଦ୍ର ଥରେ ଥରେ ଚାହିଁ ଦେଉଛନ୍ତି । ଚଷମା ଉହାଡ଼ରୁ ଇନ୍ଦ୍ରର ଆଖି ହସୁଛି । ଅଘୋର ଭାବୁଛି, ଅଜୟର ମସ୍ତିଷ୍କର ଉପାଦାନ କଣ । ସମସ୍ତଙ୍କୁ ଚାହିଁଦେଲାବେଳକୁ ନଖ ଓ ଦାନ୍ତର ବାରମ୍ବାର ବ୍ୟବହାର ସେ କରିନେଉଛି ମନେ ମନେ ।

ମାନମୟୀ ଗୀତ ବୋଲୁଛି । ଅଜୟ ଖେଳ ଭୁଲି କରି ଦୀର୍ଘଶ୍ୱାସରେ କ୍ଷୟ ହୋଇଯାଉଛି । ସୁର ନିଶ୍ଚିନ୍ତ ହୋଇ ଖେଳୁଛି । ଇନ୍ଦ୍ରଜିତ୍‌ର ଶାନ୍ତ ମୁହଁରେ ବେଳେ ବେଳେ ବିରକ୍ତି ।

ହାଡ଼ସାହିରେ କେଉଁଠି ପ୍ରବଳ ଗୋଲମାଲ ହେଲା । ଭାବନାରେ ବାଧା-ପଡ଼ିଲା । ଖେଳ ସଙ୍ଗେ ସଙ୍ଗେ ଶୃଙ୍ଖଳା ମାଳା ଟିପ୍ପଣୀ । ଇନ୍ଦ୍ରଜିତ୍ କହିଲା—ଆଚ୍ଛା ଜାଗାରେ ଘର କରି ରହିଚ ତୁମେ ଅଘୋର, ରାସ୍ତାରେ ହାଉ ହାଉ, ପଡ଼ିଶାରେ ମେହେନ୍ତର, ପଦାରେ ପଦାରେ ଗ୍ଲେଶ, ଡକାଏତ; ଅସହ୍ୟ ।

"ହୁଁ, ଥ୍ରୀ ହାର୍ଟସ୍ । କଣ କହିଲ ? ଘରର ଜାଗା—ମେହେନ୍ତର ସାହି । ତୁମର ଛକ ଉପରର ଘର ଖୁବ୍ ଜବରଲା, ନା ! କବିତା ଲେଖିବାକୁ ଖୁବ୍ ଭଲ । ଗୁମ୍ପାଖାନାର ଶବ୍ଦ, ହୋଟେଲର ବାସ୍ନା, ରାସ୍ତାର ଚଳାର; ନା କଣ କହୁଚ ?"

"ଯାହା ଥାଉ, ସେଠି ଏମିତ ଅଭଦ୍ର ପରିସ୍ଥିତ ନାହିଁ । ତୁମର ସୁଧୁରେଇବା ଉଚିତ । ବଡ଼ ଅସ୍ୱାସ୍ଥ୍ୟକର ।"

"ସ୍ଥାନକୁ ନାକଟେକନ୍ତୁ ନାହିଁ ଇନ୍ଦ୍ରବାବୁ ।" ଅଜୟବାବୁ ତାଙ୍କର କଥଁଳ ଭାଷାରେ କହିଲେ, "ଏହି ମେହେନ୍ତରସାହିରେ ବାସକରି ଅନେକ ମହାପୁରୁଷ ହୋଇଛନ୍ତି । ଆପଣାର ବ୍ୟକ୍ତିଗତ ରୁଚିଠୁଁ ଯୁଗର ରୁଚି ବଡ଼ ।"

"ତା ହେଲେ ଆପଣ ବି ମହାପୁରୁଷ ହେଉନ୍ତୁ ।" ସୁରବାବୁ କହିଲେ । "ହେଇ ଅଘୋର, ଲେଖ ତମର ଡାଉନ୍ । ଯେଉଁ ଖେଳଟା ଖେଳୁଛ ତମେ ଆଜି—"

ଗୀତ ବନ୍ଦ ହେଲାଣି, ପର୍ଦ୍ଦା ହଲୁଛି । ଉତ୍ତେଜିତ ହୋଇ ଅଜୟବାବୁ କହିଲେ—"କଣ କହୁଛନ୍ତି ଆପଣ ? ଆପଣଙ୍କର କଣ ସହାନୁଭୂତି ନାହିଁ !"

"ଆଦୌ ନାହିଁ ।" ସୁରବାବୁ କହିଲେ । "ମୁଁ ସ୍ୱାର୍ଥପର ।"

"ମୋର ବି ନାହିଁ ।" ଇନ୍ଦ୍ରବାବୁ କହିଲେ । "ଯାହା ଅସନା, ଯାହା ଅସୁନ୍ଦର, ସେଥିପ୍ରତି ମୋର ବି ସହାନୁଭୂତି ନାହିଁ । ପଚ୍ଚରନ୍ତୁ ଅଘୋର ବାବୁଙ୍କୁ ତାଙ୍କର ବା ଆଉପାରେ; କାରଣ ସେ ପାଖରେ ଅଛନ୍ତି—"

"ଧେତ୍ତ କଣ ମ ! ମନଦେଇ ଖେଳନ୍ତୁ ଅଜୟବାବୁ—"

ପର୍ଦ୍ଦା ଆଡ଼େଇଦେଇ ମା-ଝିଅ ଆସି ପହଞ୍ଚିଗଲେ । ଏକାଠି ଧଡ଼୍ ଧାଡ଼୍ ହୋଇ ସମସ୍ତେ ଉଠିପଡ଼ିଲେ । ତାସ ଖେଳ ଭାଙ୍ଗିଗଲା । ପଦାର ଦୁଜଣ ଅତି ଜୋର୍‌ରେ ଆକ୍ରମଣ କଲେ ଭିତର ସଜା କୋଠିକୁ । ବୋଉ କହିଲେ—"ଚାଲ୍ ଅଘୋର, ମନ୍ଦିରକୁ ଯିବା ପରି ଟିକିଏ—।"

ଅଜୟବାବୁ ଚାହିଁରହିଛନ୍ତି ମାନମୟୀଙ୍କୁ । ପଛଆଡ଼ ସେ ପାପୁଲିରେ ଫୁଙ୍କି ଫୁଙ୍କି ହସୁଛି—

ସୁରବାବୁ କହିଲେ—"ଚାଲନ୍ତୁ, ମୁଁ ବି ଯାଉଛି ।"

"ତୁ ନେଇ ଯା ସୁର । ଆମ ଗାଡ଼ିରେ ବୋଧହୁଏ ତେଲ ନାହିଁ ।"

"ତେଲ ନାହିଁ ?" ବୋଉ ଆଶ୍ଚର୍ଯ୍ୟ ହେଲେ । "ପିଇଲେ କିଏ ତେଲ-ଗୁଡ଼ାକ ? ଓ, ଖୁବ୍ ବୁଲ ହୋଇଥିଲା ବୋଧହୁଏ ?"

ଅଘୋର କହିଲା—ଶୈଳେନ୍ଦ୍ରବାବୁଙ୍କ ଘରକୁ ଦୁଇ ଥର ଯାଇଥିଲି ।

ବୋଉ ଗମ୍ଭୀର ହୋଇ ଚାହିଁଲେ । ଘର କଥାରେ ପିଲାଙ୍କଆଗି ଶିଷ୍ଟତା-ବିରୁଦ୍ଧ ।

ଇନ୍ଦ୍ରଜିତ୍‌ବାବୁ କହିଲେ—"ହଁ, ତାଙ୍କ ସ୍ଥିଅର ବାଘଘର ।"

ମାନମୟୀ କହିଲା—"ବୋଉ, ଆମେ ଟିକିଏ ଯାଆନ୍ତି !"

"ହେଃ, କୁଆଡ଼େ ଯିବ ? ଡେରି ହୋଇଗଲଣି, ଚଞ୍ଚଳ ଆସିବ ସୁର ।" ଅଘୋର ଆକଟିଲା । ସୁର ନିଜେ ଫାଟକ ଖୋଲି ଧରିଲା । ନମସ୍କାର ଯାଉଲା-ବେଳକୁ ମାନମୟୀ ଅଜୟବାବୁଙ୍କୁ କହିଲା—"ଆପଣ ବି ଆସିଥାନ୍ତେ । ଏତେଗୁଡ଼ାଏ ବାଟ ଘରକୁ ଫେରିବେ ତ !"

ସୁର ଷ୍ଟାର୍ଟ ଦେଲା, ଗାଡ଼ି ଚାଲିଗଲା ।

"ଆପଣ କଣ ଯାଉଛନ୍ତି ଅଜୟବାବୁ ?" ଇନ୍ଦ୍ରଜିତ୍ ପଚାରିଲା । "ଆଉ କଣ ? ଖେଳ ସରିଲା । ଯାହା ହେଉ, ଆଜିର ବୋଟ୍ ଶୁଝେଇବାକୁ ଡେରି ହେବ ।

ଅଜୟବାବୁ କହିଦେଇ ଗଲେ—ସଂସାରରେ ଜଟାହିରା ଲାଗିଛି ।

"ଆପଣ ଠିକ୍ ଦାର୍ଶନିକ । ବର୍ତ୍ତମାନ ଅଘୋର, ମୋର ଦରକାର ଖଣ୍ଡେ ବାଡ଼ି । ନ ହେଲେ ତୁମର ସେଉଁ ସାହି ! ସବୁଠୁ ବିପଦ କୁଆଡ଼େ ସେ ଦାଢ଼ିଆ ବୁଢ଼ାଟି; ଚହ୍ନିଚଟି ତାକୁ ? ହାଡ଼ିସାହି କଣିବାକୁ ଯାଉଛ ଯେତେବେଳେ ତାକୁ ଚହ୍ନିରଖିବା ଦରକାର । ହଁ, ତୁମେ ହାଡ଼ିସାହି କଣୁଛ ମୁଁ ଜାଣେ । ତୁମେ ସେମିତି ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଶୈଳେନ୍ଦ୍ରବାବୁଙ୍କ ପାଖକୁ ମୁଁ ବି ଯାଇଥିଲି—"

"ହେଃ, କୋଉଠି କଣିବା କଥା ହେଲଣି ?"

"ଚଞ୍ଚଳ ହଣିପକାଅ । ତୁମ ନାଁ ଶୁଣି ମୁଁ ପଢ଼ିଥିଲି । ସତ କଥା କହିବାକୁ ଗଲେ—ତୁଚ୍ଛ, ସତ କଥା କେହି କହନ୍ତି ନାହିଁ । ତେବେ ମନେ ରଖିଥିବ, ଶୁଭକାର୍ଯ୍ୟରେ ମୁଁ କେବେ ବାଧା ଦେବ ନାହିଁ । ହଉ, ନମସ୍କାର ।"

ଏଇ ଦୁନିଆ—କ୍ଲାନ୍ତ ହୋଇ ଅଘୋର ଢଳୁଥାଏ । ସମସ୍ତେ ଖେଳିଲିବାଲା; ଧୂରନ୍ଧର ସମସ୍ତେ । ଇନ୍ଦ୍ରଜିତ୍ ମଧ୍ୟ ଉଦ୍ଦେଶ୍ୟ ଘେନି ଆସିଥିଲେ ।

ଗ୍ରୀଡ ଉପରେ ଏକୁଟିଆ ସେ ବସିଥାଏ । ଜଣ୍ଟା ମର ଆସିଲାଣି । ପାଦତଳେ ହାଡ଼ପାହି । ନିର୍ଜନ, ନିଗ୍ରୁଟିଆ । ଝାବଳିଗଲି । କାହା ଘରେ କଏ; କାହିଁ ମେହେନ୍ତର ପଲ୍ଲୀ, କାହିଁ ତାର ସଂସାର । ଦୁଇଟା ଦୁନିଆ, ଅଲଗା ଅଲଗା । ଗୋଟାଏ ଆରଟାକୁ ଗିଳିବାକୁ ମନ କରୁଛି । ମନ ଭିତରେ ସହସ୍ର ଆଦର୍ଶବାଦର ସହାନୁଭୂତି ବୋଝ, ସେ ବି ଆପଣାକୁ କରୁଛି ଉଦ୍ଦେଶ୍ୟର ନିମିତ୍ତ । ଯେତେ ଝାଡୁଥିଲେ ନିସ୍ତାର ନାହିଁ । ପିଲାଟିଏ ଆଖିଏ ଆଖିଏ ।

ବହୁକାଳର ଗୋଟାଏ ପୁରୁଣା ଛବି । ନିତ ଦେଖିବା ଅଭ୍ୟାସ । ସେହି ଅନ୍ଧାରରେ ଠାଏ, ପୋଖରୀର ପାଣି ଛଳଛଳେଇ ଲେକେ ଗାଧାନ୍ତି । ଉପରୁ କାହାର ଘର ଭିତର ଦିଶେ, କାହାର ବାରପଟ । ଘନ ଘନକର ଦୃଶ୍ୟ ଗୋଟି ଗୋଟି ହୋଇ ମନେପଡ଼େ, ନୀରବରେ ମନ ଚରୁଥିଲେ । ନିତ ପ୍ରସ୍ତୁତ ଧରୁଛୁଆଁ ନ ଦେଉଥିବା ମୂର୍ଖଙ୍କର ସମାଜରୁ ଘୋଷି ହୋଇ ଫେରି ଆସିଲାପରେ, ଏହି ଆଡ଼କୁ ଖୁବ୍ ଚହଲା ଛବିକୁ ରୂପକ ଥାପି ଖେଳି ଖେଳି ସେ ସୁଖ ପାଏ । ସେଠି ଜାତି ନାହିଁ, ଶ୍ରେଣୀ ନାହିଁ ।

ହାଇଁପାଇଁ ହେଉଥାଏ କୋଠା ଉପରର ସାଧାରଣ ମଣିଷ, ତଳ କୁଡ଼ିଆର ସାଧାରଣ ମଣିଷ କଥା ଭାବି ଖୋଜୁଥାଏ ମମତା ।

□ □

## ଏକୋଇଶ

ସକାଳ ।

ଅଘୋରବାବୁ ଦାନ୍ତ ଘଷୁଥାନ୍ତି । ବୁଲି ବୁଲିକା ଘଡ଼ିଏ ବେଲଯାଏ ବ୍ରସ୍ ଧରି ଦାନ୍ତ ଘଷୁଥିବା ଏକପ୍ରକାର ଅଭ୍ୟାସ । ବେଳ କଟିଯାଏ, ହାଲୁକା ଲାଗେ । ଏହି ସମୟ, ଯେତେବେଳେ ତୁଣ୍ଡରୁ ଦାନ୍ତଘଷା ଧଳା ଫେଣ ବାହାରିଲା ଅବସ୍ଥାରେ, ଅମ୍ଭିଙ୍କ ମନରେ ନାନା ଧାରଣା ଆସେ । ରାତିର ସ୍ୱପ୍ନ ଓ ଦିନର ପହିଲି ଆଲୁଅ ଏକାଠି ହୋଇ ଏକପ୍ରକାର ନୂଆ ଚେତନା ଦେହକୁ ସ୍ପର୍ଶ କରି ରହେ ଥୋଡ଼ାଏ ବେଳ । ବ୍ରସ୍‌ର ବାଡ଼ି ସଙ୍ଗେ ସଙ୍ଗେ ସେ ମିଳେଇଯାଇ ପୁଣି ପୁରୁଣା ଗତି ଫେରିଆସେ ।

ମେହେନ୍ତାଣୀ ଝାଡ଼ୁ ମାରୁଛି । ପୋଚକା ନଳାରୁ ଗନ୍ଧ ବାହାରୁଛି । ସବୁଦିନ ପରି ମୁହଁ ପୋତି ଚଞ୍ଚଳ ଚଞ୍ଚଳ କାମ କରି ଯାଉଛି ମଣିଷଟା । ମଝିରେ ମଝିରେ କାମ ଉପରୁ ପାଟି—"ଦିଅ—ପାଣି—।" ଆଉ ଝପର ଖପର, ଝପର ଝପର । ଅଘୋରବାବୁ ମେହେନ୍ତାଣୀ ଉପରେ ଦୃଷ୍ଟି ଟେକିଦେଲେ । ବୟସ—କହିହେବ ନାହିଁ; ତିରିଶରୁ ପଚାଶ ଯାଏ । ମୁଖା ପରି ମୁହଁ, ହାଡ଼ୁଆ, ଫାଳିକିଆ । ସେଥିରୁ ମନର ଭାବ ଜାଣିବା ଅସମ୍ଭବ । ହାତ କାମ କରୁଛି । ଚାରିଗୋଡ଼ିଆ ହେଲି ପରି ହାମୁଡ଼େଇ ପଡ଼ି ମଣିଷଟା କେବଳ ବୁଲିଯାଉଛି । ସେ ମୁହଁରେ ରସ ନାହିଁ, ସେ ମୁଣ୍ଡକୁ ତେଲ ନାହିଁ । କଳା କୋଚଟ ଲୁଗା ଅଷ୍ଟଚିରା । ଶୁଖିଲି ଦେହର ନଳି ପଡ଼ିଥିବା ଦରିଦ୍ରପଣ ନୀରବରେ ଭେକ ଦେଖାଇ ବୁଲୁଛି । ସେ କିଛି ଆଶା ରଖି ନାହିଁ, ସେ କିଛି ମାଗୁ ନାହିଁ । ସେ ଜାଣେ, କେହି ତାକୁ ପ୍ରଶଂସିବେ ନାହିଁ, କେହି ତାକୁ ଆଦର କରିବେ ନାହିଁ । ଭଦ୍ରମଣିଷର ସମାଜର ମୂଲ ଚଉଳକୁ ସେ ସ୍ୱୀକାର କରେ ନାହିଁ । ଗୌରବର ବଡ଼େଇ କରେ ନାହିଁ । ଦୀପତଳ ଅନ୍ଧାର ଭିତରେ କନାପ୍ରୁତ ନୀତର ବାହାରେ କେବଳ ନୀରବ କର୍ମୀଟିଏ । ସବୁଦିନିଆ ।

ଭାବନା ପୁଣି ନୂଆ ଦିଗ ନେଲା—ତାର କଣ ଇତିହାସ ନାହିଁ ! ସବୁଦିନେ କଣ ଏମିତି ଥିଲା ସେ ? ବିଧାତା ମାଟି ମେଞ୍ଚାକ ହାତରେ ବଳି ବଳି ଗଢ଼ିଥିଲା ମେହେନ୍ତାଣୀ ମୂଳୋହ୍ନୁ, ବେଳୁସୁ ? ତାର ଜୀବନ; ପିଲାଦିନୁଁ ଏ ଯାଏ—ପିଠିଆଡ଼େ ତାର ସଂସାର—ଯେଉଁଠ ତା ମୁହଁକୁ ଚାହିଁ ରହିଥିବେ ହାଣ୍ଡିଚେଙ୍କିଆ କେହି—କିଏ ତାକୁ ଭଲ ପାଉଥିବେ,— କେଉଁଠି ତାର ବି ହେଲେ ଅଛି କି ଥିବ । ତାର ସମସ୍ୟା—।

ମଣିଷ ଗହ୍ୱାରେ ବଗ୍ନ ଘଟିଲା । ଯଶୋଦା ତାର ବଳିଷ୍ଠ ଗଳାରେ ଗର୍ଜନ ଛାଡ଼ୁଛି, "କି ଲୋ, ଆଖି ଫୁଟିଯାଇଚି କି ? ଏଠି ନଳାରେ ମୋଷାଏ ରହୁଚି । କାମ କଣ ଆସିବୁ ନା ଠକି ଆସିବୁ, ଏଁ ?"

ଭୁକଦ୍ଧୋଇ ମେହେନ୍ତାଣୀ ଝାଡ଼ୁ ବୁଲେଇ ନେଲା ।

"ହଇ ଲୋ ଠାପୋଲି ! ହେଇ ଦେଖ୍, ପଛରେ କେତେ ମୋଷା ଛାଡ଼ିଦେଇ ଗଲୁ । ଆରେ ଦେଲେ ରେ, ଭଲ କାମ କରୁଚ ଆ—"

"ଯଶୋଦା—"

"ଯାଉଚି—"

ମେହେନ୍ତାଣୀ ଅଟକି ରହିଲା । ଧଇଁସଇଁ ହେଲା । କେତେ ଶୁଖି ଯାଇଚି ସେ, କଣ ବେମାର ଥିବ ! ପାଣିଖିଆ ବଡାଫାଳ ପରି ହାତଟି ବଢ଼େଇ ପିଠିରୁ କାନ୍ଥ ଟାଣି ନେଇ କଣ ଟିକିଏ ଆଣି ପାଟିରେ ପକେଇଲା । ଅଘୋରବାବୁ ମମତା ଲଗାଇ, ନରମ ହୋଇ ଡାକଲେ—"ମେହେନ୍ତାଣୀ !"

ମୁଣ୍ଡ ଟେକି ଚାହିଁଲା ।

"ବେମାର ଥିଲୁ ବୋଧେ, ଶୁଖିଯାଇଚୁ—"

"ବେମାର ପଡ଼ିଥିଲି ।" ପୁଣି ସେ ଗୁଞ୍ଚୁଣୀ ଚଳେଇଲା ।

"ଶୁଣ୍ ମେହେନ୍ତାଣୀ—" ସେ ଅଟକୁ ନାହିଁ ।

"ଆରେ ଶୁଣ୍ଣିଲୁ, ଦି'ପଦ ସୁଖଦୁଃଖ ହବା—" ଠିଆ ହେଲା ।

"ମୋ ସାଙ୍ଗେ କି ସୁଖଦୁଃଖ ବାବୁ ? ବୁଢ଼ୀହାଡ଼ ଲୋକ । ତମେ କେତେକର, ଆମେ କେତେକର !"

"ତୁ ଜାଣିଚୁ; ଛୁଆଁଅଛୁଆଁ ଉଠିଯାଉଚି; ସମସ୍ତେ ଆମେ ସମାନ । ଆଜକାଲି ଆମେ ସେ ସବୁ ମାନୁ ନାହିଁ । ମଣିଷ ଏକ । ଜାତି ମିଛ । ଗୁଣଆଡ଼େ ସଭା ସମିତି ଲଗିରହିଛି ସେହି ଉଦ୍ଦେଶ୍ୟରେ । ହରିଜନ ଓ ସବର୍ଣ୍ଣ ହିନ୍ଦୁ ଏକାଠି ଖାଇଲେଣି । ମନ୍ଦିର ପ୍ରବେଶ ଅଧିକାର ମିଳିଗଲାଣି ତୁମକୁ କେତେଠି । ଅସ୍ପୃଶ୍ୟତା ନିବାରଣ ଏ ଯୁଗର ପ୍ରଧାନ ଯୋଜନା "ସଭାସମିତିକୁ ଯାଉ ନାହୁଁ ? ଖବର କାଗଜ ଶୁଣୁ ନାହୁଁ ତୁ ! କହୁଚୁ, ତୁମେ ଆମେ ପୃଥକ୍ !"

କି ଉଲ୍ଲାସରେ କହି ହୋଇଗଲା ! କହିଲା ବେଳେ ମୁହଁରେ କପରି ଦୀପ୍ତି; ମନର କପରି ପୁଲକ ! ନୂତନ ଯୁଗର ସନ୍ଦେଶ ବଖାଣିଲା ପରି । କେତେ ସାଧୁଣିଆ ସେ ଭାଷାରେ !

ପୋଡ଼ା କାଠରେ ଧାସ ଚଢ଼ୁଥିଲ ନାହିଁ । ମଡ଼ା ମୁହଁରେ ହସ ଦିଶିଲ ନାହିଁ । ଧୀରେ ଧୀରେ ମେହେନ୍ତାଣୀ ମୋହିଁଲଣି ବାଉ କବାଟ ଆଡ଼କୁ । ଅଘୋରବାବୁ ପୁଣି ଚେଷ୍ଟା କଲେ । କହିଲେ—"ତୁମେ ସମସ୍ତିଙ୍କୁ ଛୁଇଁବ, ପାଖରେ ବସିବ । କେହି ତମୁକୁ ଅଛୁଆଁ ବାଉବେ ନାହିଁ । ଏକାଠି ଖାଇବ । ତୁମେ ଆଉ ହରିଜାଉ, ଦେଉଳକୁ ଯିବ । ଏ ସବୁ କଣ ଭଲ ହେବ ନାହିଁ ?"

ତୁଲପଡ଼ିଲ ସେ । କହିଲ—"କିଏ କହୁଚି ଏ ମିଛକଥା ? କାହାର ଦିନ ସରୁ ନାହିଁ ଯେ ସେଇଥି ପାଇଁ । କାହାର ଗରଜ ପଡ଼ିଚ ଆମୁକୁ ଛୁଇଁବ ? ଖାଲି ଛୁଇଁ ପକେଇଲେ ଘର ଅଜାଡ଼ି ଦବ ନା ପେଟ ପୂରିଯିବ ? ଲୁଖୁର ମୁଣ୍ଡକୁ କେହି ଛୁଇଁବେ ନାଇଁ ବାବୁ ! କେହି ପାଖରେ ପୂରେଇବେ ନାଇଁ ! କିଏ ଭାତ ଦବ ଏତେ ଜାତିଙ୍କ ସାଙ୍ଗେ ଏକାଠି ଖାଇବାକୁ ? ପେଟ ଧନ୍ଦାରେ ତ କଲବଲ, କାହାକୁ ବେଳ ମିଳିବ ଦେଉଳକୁ ଯାଇ ଦିଅଁ ପୂଜିବାକୁ ? ବଡ଼ଲୋକଙ୍କ ଭିଆଣ ସବୁ କଥା ବାବୁ ! ମଣିଷ ଉପାସରେ ମରୁଥିଲେ ବି ଟାପରା ଲଗେଇଥିବେ ।"

"କଣ କହିଲୁ ?" ବିରକ୍ତ ହୋଇ ଅଘୋରବାବୁ କହିଲେ—ଶୁଣା ହେଉଚି; ତମ ସାହି କୁଆଡ଼େ ଏଠୁ ଉଠେଇନେବେ ଦୂରକୁ, କୋଉ ଫର୍ଚା ଜାଗାକୁ । ତୁ ଶୁଣିନାହୁଁ ?

ତାର ଶୁଷ୍କ ଶୀର୍ଣ୍ଣ ମୁଠା ଢିଲା ହୋଇଗଲ । କାବା ହୋଇ ସେ କହିଲ—"ଏଁ ସାହି ଉଠେଇ ନେବେ ! କିଏ କହୁଥିଲ ? କିଏ ଉଠେଇ ନେବେ ?"

"ଜମି ତ ଆଉ ତମର ନୁହେଁ ! ତୁମେ ବସା ବାନ୍ଧି ରହିଚ । କଣ ହେଲା ? ଆଉ ଠାଏ ରହିବ, ଫର୍ଚା ଜାଗା ପାଇବ—" ।

"ଢ଼ ଖଣ୍ଡ କୁଡ଼ିଆ; ସେତକ ବି ଉଠେଇନେବେ ! ହା ଭଗବାନ୍ !"

"ଆଲେ, ଗୁନିଆଁ କାହିଁ ମରୁଚୁ ଲୋ ? ସବୁ ତମର ଭଲ ପାଇଁ । ଏଠି କେମିତି ଗେଣ୍ଡରେ ସନ୍ଧାସନ୍ଧି ହୋଇ ରହିଚ, ଏମିତି ମଣିଷ ରହନ୍ତି ?"

"ବାବୁ, ଆମେ କଣ ମଣିଷ ?'

"ନାହିଁ, ନାହିଁ; ତମର ଭଲ ପାଇଁ । ଏଠି ଜକାଜକି ହୋଇ ରହିଲେ, ଦେହ ଭଲ ରହୁ ନାହିଁ । ତୁ ନଜେ କେମିତି ବେମାର ପଡ଼ିଲୁ ? ଫରଚା ଜାଗାରେ ରହିଲେ, ଦେହ ପା'କୁ ଭଲ ।"

"ସବୁ ତ ଆମର ଭଲ ପାଇଁ; କଣ ନୁହେଁ କି ? ହଉ ଧର୍ମ ଅଛୁ । କୋଉ ପାପକୁ ଏ ଜନମ ଭୋଗିଲୁଁ । ଫେଣେ ଆହୁରି ମ୍ଳାନ ଅବସ୍ଥା ଲେଖିଚି ଦଇବ ! କେବେ ସାହି ଉଠେଇନେବେ ବାବୁ ?"

ଆଣ। ତାକୁ ଚେଳଦଏ ନାହିଁ, ଆଶଙ୍କା ପାଗଲ କରେ—ଅଘୋରବାବୁ ଦେଖୁଥାନ୍ତି । ବାଁରେଇ ଦେଇ କଥା ବୁଲେଇ କହିଲେ—"ସେମିତ କହୁଥିଲି କଏ ନା, କୋଉଠି ଅଛି୍ଛ। ହେଲଣି ?"

"ସେଇଆ କହ ବାବୁ, ସେଇଆ କହ । ଡଉଦେଲେ ଆମେ କୁଆଡେ଼ ଯିବୁ ? ବାଆସ୍ତରଆ ଲୋକ କେତେ କଥା କହନ୍ତି, କୋଉଆଉସ୍ଥ ଦେଖାନ୍ତି । ତେବେ—ବଡ଼ଲୋକଙ୍କ ଦୁନଆରେ ସବୁ କଥା ତ ସମ୍ଭବ । ନ ହେବା କଥା, ହେବା କଥା ସବୁ ସମାନ ।"

କବାଟ ସେ ପାଖେ ଗ୍ରୁଇ ପଣ ମଶୀସଟା କୁଆଡେ଼ ଅଦୃଶ୍ୟ ହୋଇଗଲି । ଅଘୋରବାବୁ ଥକ୍‌କା ହୋଇ ଗୃହିଁଲେ । ପଚ୍ଛଆଡ଼ୁ ମାନମସ୍ତି କହିଲି—କନ୍‌ସର୍ଟ କରେଇ ପାଗଳ ନାହିଁ ସ୍ତଇ, ନୁହେଁ ?

"ଚୁପ୍— !"

"ଆରେ, ଚୁପ୍ କଣ ମ, ଭଲ କଥା କହିଲେ—" ଅଭିମାନ କରି ପଣ ସେ ଗ୍ରୁଲିଗଲି । ତା ପରେ ଅନର୍ଗଳ ହସ । ତା ପରେ ପାଟି, "ବୋଉମ, ହେ ବୋଉ ! ଶୁଣ୍ ଶୁଣ୍ ଗୋଟାଏ କଥା— ।" "ବାହାର କରି— ।" ଅଘୋରବାବୁ ତାର ପିଗ୍ଡ ନେଲେ ।

ଜେମା ମେହେନ୍ତାଣୀ ସ୍ତବ ସ୍ତବ ତାର କାମ କରି ବୁଲୁଥାଏ । ଅନର୍ଥକ ଗୁଡ଼ାଏ ସମୟ ନଷ୍ଟ ହୋଇଗଲି ଏ ଘରେ । ବଡ଼ଲୋକ ପୁଅର ଅଲଣା କଥା ଶୁଣି ଶୁଣି ବେଳ ଗଲି । ଅବାକଲ ତାର ବାପ ପରି । ଝୁଣ୍ଟିପଡ଼ି ଏତେ ସରି ହୋଇ ସାକୁଲ୍ କଥାର ପାଲରେ ପଡ଼ି ମନ ନରମେଇବା ଫଲ ଯଥେଷ୍ଟ ଗୋଟେଇଛି ସେ । ଚହଟଚମାର ବାସ୍ନା ଉଡ଼ୁଯାଉଛି । କ ଯାଏ ସେଥିରେ ?

ଗୋଟାଏ କଥା ସତ । ବେମାର ପରେ ଦେହ ଥରୁଛି, ବାଟ ଗ୍ରୁଲିଲେ ଆଣ୍ଠୁକୁ ଆଣ୍ଠୁ ବାଜୁଛି । ବୋଝେ କାମ, ଗୋଟିକଆ ମଣିଷ ।

ବାସ ଉଠେଇନେବେ ! ବିଶ୍ୱାସ ହେଲି ନାହିଁ । ଅସମ୍ଭବ । ଦ' ବର୍ଷ ହେଲି କୁଡ଼ିଆଟଣ୍ଡ ଛପର ହୋଇନାହିଁ । ଏବର୍ଷ ନ କଲେ ଗ୍ରୁଆଁକୁ ଲ୍ଗିଁ-ପଡ଼ିବ । ପୁନ । କଣ କରୁଥିବ ସେ !

ସ୍ତବନାର ଜମ ନର୍ଦ୍ଦମାର ଫଲରେ କେଉଁଠି ହଜିଗଲି । ପାଇଖାନା କାମ ସାର, ନାଲି କାମ ସାର, ମୁଣ୍ଡ ଉଠେଇଲି ବେଲକୁ ମୁଣ୍ଡ ଉପରେ ସୂର୍ଯ୍ୟ । ଘରେ ଭାତ ନାହିଁ । କାଲ ମାଗିଯିବାରୁ ସାହୁମୂଣ୍ଡର ଦୋକାନୀ ଖେଙ୍କି ଗୋଡ଼େଇଥିଲି ।

ପାଦ ଘୋଷାର ଘୋଷାର, ଗୋଟିଏ ଗୋଟିଏ ହୋଇ ଗ୍ରୁଲିଲି ଘରମୁହାଁ ।



# ବାଇଶ

ସାତ ଦିନ ପୁଣି ଅଟକି ରହିଛି ।

ଆପଣା ଭିତରେ ଘୋର ପରିବର୍ତ୍ତନ, ମନ ବଦଳି ଲାଗିଛି । ନୂଆ ଅଭାବ, ନୂଆ ଆକାଙ୍କ୍ଷା, ଭାବନାର ଜୁଆର । ନିଜକୁ ଚାହିଁ, ନିଜକୁ କଳି ଆଶ୍ଚର୍ଯ୍ୟ ଲାଗୁଛି । ପୁରୁଣା କଥାରୁ ମନ ଖସିଯାଉଛି, ନୂଆ କଥା ପଡ଼ୁଛି ଆଖିରେ । କାନ ପାତିଲି, ଆଖି ସଚେତନ । ଦେହର ସ୍ନାୟୁ ଅପେକ୍ଷା କରି ରହିଛି ଅଳ୍ପ କିଛି ପାଇଲେ, ବଡ଼ କରିଦେଇ ନେଇଯିବ ମସ୍ତିଷ୍କକୁ । ଲୋକ ବୁଡ଼ିଛି । ଦେହ କାଉନ୍ଦା । ଯେଉଁ ଦେହ ଅଛି କି ନ ଅଛି ବୋଲି ଅନୁଭୂତିରେ କେବେ ଗାର ଟାଣି ନ ଥିଲି, ଏବେ ମନର ପ୍ରତି କନ୍ଦି ବିକନ୍ଦିରେ ତାହାର ପ୍ରଭାବ । ମନ ଉପରେ ତାହାର ବୋଝ । କେବଳ ମାଟିର ମାୟା, ଯୌବନର ଇନ୍ଦ୍ରଜାଲ ।

ଏମିତି ବଦଳିବ ବୋଲି ପୁଣି କେବେ ବିଶ୍ୱାସ କରି ନ ଥିଲି । ମନେପଡ଼ୁଛି, ତାର ବାଳକୁ ତେଲ ନାହିଁ, ଦେହକୁ ଲୁଗା ନାହିଁ, ଦେହ ସମ୍ପାଦିବାକୁ ସହର ଭିତରେ ଏହି ଦରିଦ୍ର ସାହି ଭିତରେ ଏ ନଉରୁଣୀ ଘର ଯଥେଷ୍ଟ ନୁହେଁ । ଦେହର, ମନର ସବୁ ଅଭାବ ଆଖିରେ ପଡ଼ୁଛି । ମନେପଡ଼ୁଛି, ମଣିଷପଣିଆ ସାର୍ଥକ କରିବାକୁ ଦରକାର ଜିନିଷ, ଜିନିଷ ପାଇଁ ଟଙ୍କା । ତାଙ୍କର ଟଙ୍କା ନାହିଁ ।

ଦେହର ସୁଖ ଦରକାର, କଳ୍ପନାରେ ଚେର ଦରକାର । କିଛି ନାହିଁ । ମନ ଉଡ଼ିବୁଲୁଛି । ଅବସ୍ଥାକୁ ଭାଙ୍ଗିରୁଜି ଦିଅନ୍ତା । ଆପଣା ରୁଚିରେ ଗଢ଼ିନିଅନ୍ତା ଆପଣା ପାଇଁ ଆଧାର । ବିଧାତାର ପେଞ୍ଚରେ ଯୌବନ ବିପ୍ଳବ ଆଣିଛି; କିନ୍ତୁ ବିଧାତା ଉପାସ୍ୟ ଶକ୍ତି ନାହିଁ ।

ସାତ ଦିନ ଗୋଟାଏ ଯୁଗ !

ବୋଉ ଉପଦେଶ ଦିଏ । ଶୁଣି ଶୁଣି ଖାଲି ହସମାଡ଼େ । ତଳକୁ ଚାହିଁ ବାଟ ଚାଲିବା ଉପଦେଶ । ଝୁଣ୍ଟିବୁ ନାହିଁ, ପଡ଼ିବୁ ନାହିଁ ଖାଲରେ । କିଏ କାହାର ? ଏତେ ମିଳାମିଶା କାହିଁକି ? ପର କଥା ଶୁଣିଲେ ପାଲରେ ପଡ଼ନ୍ତି ।

ଭଲ ଉପଦେଶ । ପୁଣି ଉପଦେଶ ମାନେ । ବୋଉ କାମ କରି ଯାଇ ସାରିଲା ପରେ, ଓର ଉଣ୍ଡି ଯେତେବେଳେ କଜଳମତୀ ଆସେ, ଦୁନିଆର ଶାସ୍ତ୍ର ବଖାଣେ—ପ୍ରଜାପତିର ଶାସ୍ତ୍ର—ଖବର ଝିଲିଝିଲି, ବାସ୍ନା ଜୁଡ଼ୁବୁଡ଼ୁ, ଗୁପ୍ତ କଥା । ପୁଣି ଆଁ କରି ସବୁ କଥା ଗିଳିପକାଏ ଆଉ ବିଶ୍ୱାସ କରେ ଯେ, ସେ ଚମତ୍କାର । ବିଶ୍ୱାସ କରେ, ସେ ଶକ୍ତିମତୀ ହୋଇଛି, ସେ ପୁଣି—ତାଙ୍କୁ ବି ପୂଜା କରିବାକୁ, ପ୍ରଶଂସା କରିବାକୁ ଲୋକ ଅଛନ୍ତି ଏ ପୃଥିବୀରେ ।

ଦୁଆରମୁହଁରେ ପଞ୍ଚବଟୀ କୁଡ଼ିଆର ଗାର । ଡେଇଁ ଯିବାକୁ ଲୋଭ ଦେଖାଇ ଡାକେ ।

□ □

## ତେଇଶ

ଉଚ ସଡ଼କ କଡ଼ରେ ନାଲି ଧୂଳି ବୋଳିହୋଇ ଠିଆ ହୋଇଛି ଶିରୀଷ ଗଛଟା, ମଉଗଜ ପର । ଗୋଡ଼ ତଳେ ମଟରଗାଡ଼ି ଧାଇଁଛି । ସହରିଆ ଗ୍ୟାସୋଲିନ୍ ଗନ୍ଧ ଉଡ଼ି ପଳେଉଛି । ଚହଟି ଆସୁଛି ବୁଢ଼ା ଶିରୀଷର ମଦଗନ୍ଧ ।

ଶୁଆପର ପତ୍ରି ଝାଡ଼ିଦେଇ ବୁଢ଼ା ଗଛ ଟୋକା ହୋଇଛି । କଣ୍ଢକୁଳିଆ ଭୂଷି ଭୂଷିଆ ପବନରେ ଧଳା କହରା ଆଖିବାଳ ପରି ସରୁ ସରୁ ଫୁଲକେଶର କୁହୁକୁହୁକା ହୋଇଯାଇ ଫୁଟିଉଠୁଛି ମରଣଜୟୀ ହସ ।

ସେ ପାଖେ କମ୍ବ ଗଛରେ ଯାଦୁକରର କାରଗର୍ । ହାଲୁକା ସାବ୍ଜା ପତ୍ରରୁଆଣି ଧଳା ଫୁଲ ପେନ୍ଥି ପେନ୍ଥି, ତାର ମଧୁରିଆ ବାସ ।

ମନୋହରିଆ ମା ବାଡ଼ରେ ପାଳଧୂଆ ଗଛ ଧାଡ଼ିକ । ମହୁରର ତାର ସ୍ୱରର ଆଳାପ ପରି ନାଲି ବେଣି ସେଥିରେ ।

ମେଞ୍ଚମେଞ୍ଚିକା କଳଅର ବୁଦାର ଚକ୍‌କଣ ପତ୍ର ସନ୍ଧରେ ଖରା ଧାସ ଝିକିଝିକି ହେଉଛି ।

ଖାଲି ଜକାଜକ କୁଡ଼ିଆ । ସ୍ଥାନେ ସ୍ଥାନେ ସଜନାଗଛ, ପତ୍ର ନାହିଁ, ଖାଲି ଫୁଲ ।

ସେଇ କୋଇଲିଟା । କେଉଁ ତୋଟାଳିଆ ଗଣ୍ଡ ମଫସଲରୁ ସହର ଦେଖି ଆସି, କଳ କାରଖାନା, କୋଠା ଗହଳିରେ ବାଟବଣା ହୋଇ, ପଳେଇ ପଳେଇ ପହଞ୍ଚିଛି ହାଡ଼ପାହରେ । ଆତୁର ହୋଇ, ଭୁହାଇ ଭୁହାଇ କୁହାଟ ମାରୁଛି, ସତେ କି—କହ କହ, ବାଟ ବତେଇ ଦଅ, ଫେରିଯିବି ।

ଶେଷ ବସନ୍ତ । ଖରା ଗୁଇଁ ଲମ୍ବିଯାଉଛି । ଅରମାକୁଢ଼ ଭିତରୁ ନାଗଫେଣା ଟେକି ଧରିଛି ଗୋଟିଏ ନାଲି ଫୁଲ । ସହର ଛେଦରେ କୋଇଲି ବୋବୋଉଛି ।

ମନୋହରିଆ ମା ବାଡ଼କରରେ ଝାଟୁଆ ଗଦେଇବାକୁ ଆସି, ଛୁଣ୍ଡା ଟୋକେଇଟା ଧରି ଅଚକା ହୋଇ ଠିଆ ହୋଇ ଯାଇଥାଏ । ସେ ପାଖରେ ଭଙ୍ଗା ପଲ୍ଲର ପିଣ୍ଡାରେ ଖଣ୍ଡିଆ କୁଷ୍ଠରୋଗୀ ଚେମା ଗୋଡ଼ରେ ଛୁଣ୍ଡାକନା ଗୁଡ଼େଉଥାଏ, ଭିକମାଗି ବାହାରିବ । ତାର ଭାରିଯାକୁ କହୁଥାଏ—"ଦେଖିଲୁ, କୋଇଲିଟା କେମିତେ ବୋବୋଉଚ— ।"

ସନିଆ ତାର କୁଡ଼ିଆ ସାମ୍ନାରେ ଠିଆ ହୋଇ ବଡ଼ ଚାଣ୍ଡୁଥାଏ । କାମକୁ ଯିବା ବେଳ ।

ଆଜି କେମିତି ମଠୁଆ ମଠୁଆ । ଗୃହଆଡକୁ ଗୃହିଁ ଗୃହିଁ ଅଳସେଇବାକୁ ମନ, କେମିତି ଲାଗୁଛି । ନିତିଦିନିଆ କଳର ଅଭ୍ୟାସ ଗୋଳମାଳିଆ ହୋଇଯାଇଛି ।

ମଣିଷ କଳ ନୁହେଁ ।

ମନୋହରିଆ ମା କହିଲା—"କରେ ସନିଆ, ଆଜି ଏତେ ଡେରି ?"

"ଆଜି ଯିବ ନାହିଁ ଦେଠେଇ—"

"ମଲି ମଁ ଅଳସୁଆଟା—"

ନା, ସେ କାମକୁ ଯିବ ନାହିଁ । ଆପଣା ଭୃଣ୍ଡକୁ ଥରେ ପ୍ରଗୃର କରିଦେଲା ପରେ ତାର ନିଷ୍ପତ୍ତି ସିଦ୍ଧ ହେଲା, ଆଜିକ ସେ ରହିଯିବ । ବାଲଗୁଡ଼ାକ ବଡ଼ ବଡ଼ ହୋଇ ଯାଇଛି, ଲୁଗା କାଚିବାକୁ ପଡ଼ିବ । ହାଡ଼ିଭଣ୍ଡାରି ଖୋଜିବାକୁ ଧୂଳିଆ ରାସ୍ତାରେ ବୁଲିଗଲା ବେଳେ ସନିଆ ଅନୁଭବ କଲା, ଶିଂଶପଫୁଲ କେତେ ବାସୁଛି ! ପଲେ ମାଙ୍କଡ଼ ଗଛ ବରଗଛରେ ଦୋଳି ଖେଳୁଛନ୍ତି । ସତେ କି ଲଖ କରି ଟେକା ଫୋପାଡ଼ିବାକୁ ନିମନ୍ତ୍ରଣ କରୁଛନ୍ତି !

ହାଡ଼ି-ଭଣ୍ଡାରି ସବୁରି ତାର କାମକୁ ବାହାରିଛି । ସ୍ଥିର କରି ସେ ବସିବେ ନାହିଁ, ସେତିକି ଉପୁରି ।

"ଗ୍ରିଣ ଅଛି ସବୁରିଭାଇ, ଟିକିଏ ଚାଞ୍ଛି ଦେ—"

"ନାହିଁ, ଆରବେଳା ଆସିବୁ; ଅଇଗ୍ର ହବ ନାହିଁ ।" ତାର ପଦେ କଥା । "ଆଗ ପଇସା ନେ ପଛେ, ସାରିଦେଇ ଯା ସବୁରିଭାଇ—"

"ଭଲ ଲୋକ, ଡେରି ହେଇଯାଉଚି ଦେଖୁନୁ ! ଶୋଧା ଖାଇଲାବେଳେ, ପଇସା କାଟିଲା ବେଳେ ତୁ ପିଠିରେ ପଡ଼ିବୁ ?"

"ଟିକିଏ ନାଁକୁ ତ, କେତେବେଳ ଲାଗିବ ? ବସିପଡ଼ ।"

"ଜମା ହବ ନାହିଁ । କୁଆଡ଼େ କନିଆଁ ଘର ଲାଗିଚି କି ? ସବୁର କର, ଆଉ ଟିକିଏ ଭଲ ପରି ବଢ଼ୁ ।" ସବୁରି ବାହାରି ଗୃଲିଗଲା ।

ଗାଉଁ ଗାଉଁ ହୋଇ ସନିଆଁ ଫେରିଗଲା । ପାଟି କରି ଲାଭ ନାହିଁ । ରାସ୍ତାରେ ଭଣ୍ଡାରି ବୁଲୁଥିବେ; ସେମାନେ ଅଛୁଆଁ ମଣିଷକୁ ଛୁଇଁବେ ନାହିଁ ।

ମାଙ୍କଡ଼ ହୁରୁଡ଼େଇ, ପିଲାଙ୍କ ସାଙ୍ଗେ ଗୋଡ଼େଇ, ଏଣେତେଣେ ହେଉ ହେଉ ବୋଟେ ବେଳ । ତା ପରେ ସନଆ ଗାଧୋଇ ଆସିଲା, ତାର ବାଳକୁ ଚକ୍‌କଣ କରି କୁଣ୍ଡେଇଲା, ଫଟା କାମିଜ ଝିଣ୍ଟି ପିନ୍ଧି, ସଜ ହୋଇ ବାହାରି ପଡ଼ିଲା ଆଉ ଥରେ ସାହି ବୁଲି ।

ପୁନି ଘର ପିଣ୍ଡାରେ ବସିଛି କଏ, ସାଇକଲ ଝିଣ୍ଟ ଡେରି ଦେଇଛି । ତରତର ହୋଇ ମାଡ଼ି ଆସିଲାବେଳକୁ ଦେଖିଲା, ଶେଧ ମାଙ୍କଡ଼ ପରି ମିସ୍ତ୍ରୀ ବସିଚି, ପାନ ଚୋବୋଉଚି । କହୁଚି--ଆସିବୁ କାଲିକି, ଏଁ ! ମାହାଳିଆଟା ଘରେ ବସି କଣ ହବ ? ଦି ପଇସା ରୋଜଗାର ତତେ ଗନ୍ଧୋଉଚି ? ଚଞ୍ଚଳ ବୁଲିପଡ଼ିଲା । ଗାଳି ଦେଇ ଆରମ୍ଭ କଲା—"କବେ ସନଆ, ଭାରି ମଗର୍ ହେଇଚୁ । କାମକୁ ନ ଯାଇ ବୁଲି ଆଇଚୁ କୁଆଡେ ?"

ଦୁଆରମୁହଁରେ ହସିଦେଇ ପୁନି ଘରକୁ ପଶିଗଲା । ସନଆ ବିଗିଡ଼ିଲା । କହିଲା—"କାମକୁ ନ ଗଲେ ପଇସା କାଟିଦବ । ତୋଡ ଦେଖାଉଚ କାହାକୁ ? ତମେ କୁଆଡେ ସ୍ୟାଡ଼େ କାମ ଛାଡ଼ିଦେଇ ଆଇଚ ଶୁଣେ—"

ମିସ୍ତ୍ରୀ ଉଠିପଡ଼ିଲା । ଦୁଇ ତରଫ ମୁହାଁମୁହିଁ ଝଟାପଟା ।

"ତତେ ଠିକଣା କରିଦେବି ରଇ ଥା । ହାଡ଼ଟୋକା, ସିଆଣିଆ ପଡ଼ିଚୁ—"

"ଆରେ, ଠିକଣା ଏମିତି କଲାବାଲା ! ତମ ହାତ ଗୋଡ଼ରୁ ଜଣା-ପଡ଼ୁଚି —"ଦାନ୍ତ ରଗଡ଼ି, ଆଖି ତରାଟି କଥାଗୁଡ଼ା ।

"ଦେଖ୍ ପିଲା, ଉପରେ ପଡ଼ି କଜିଆ କରୁଚୁ, ମତେ ଚଡ଼ୋଉଚୁ । ଛୁଆଁ ଅଛୁଆଁ ମାନିବ ନାହିଁ । ପିଟି ଦେବି ଜାଣି ଥା—।"

"ହି ହୋ, ତମର ଭାରି ଜାତି ଅଛି ! ଛୁଆଁ ହେଲେ ମାରି ହେଇଯିବ !"

ଲୋକେ ଜମିଲେଣି । ମିସ୍ତ୍ରୀ ସାଇକଲ ଚଢ଼ି ଚାଲିଗଲା । କହିଗଲା, "ତତେ କାମରୁ ଯେବେ ନ ନିକାଲିଚି, ମତେ ଫେର୍ କହିବୁ ।" "ଆରେ, ନିକାଲିବୁ କଣ, ମୁଁ ଆଉ ଧନେ ଚାକିରିକି ଯିବି ନାହିଁ । ବଳେ ଗୋଡ଼ ତଳକୁ ଆସି ଖୋସାମତି କରୁଥିବୁ; ଜମା ଯିବି ନାହିଁ । ତୋ ଷଣ୍ଢପଣିଆ ଘରେ ସାଇତି ରଖିବୁ ଯା—।" "ହେ ସନଆ—ହେ ସନଆ—" ସାହି ଲୋକେ ଥାପଡ଼ୋଉଚନ୍ତି । "ତୋ ମୁଣ୍ଡକୁ ପିତ୍ତ ଉଠିଚି କି ରେ ! ହଇ ରେ, ବାବୁ ଲୋକକୁ ଏମିତି କହନ୍ତି ?" ଖଣ୍ଡେ ଦୂରରେ ସାଇକଲ ଧରି ମିସ୍ତ୍ରୀ ଠିଆ ହୋଇ ଜଳୁଛି । ସନଆ କହିଲା—ପଚାର ସେ ଭଲ୍ଲୋକକୁ, ସାହି ଭିତରକୁ କୁଆଡ଼େ ଆଇଥିଲା ଏତେବେଳେ ?" ମିସ୍ତ୍ରୀ

ଝୁଙ୍କରିଲଣି । ସନିଆଁ ହଁ ହଁ ହେଉଛି । ବାହାଦୁରି ନେବାକୁ ବ୍ୟାଖ୍ୟା କରୁଛି, ଲୋକେ ହସୁଛନ୍ତି । ତାର ତୁଣ୍ଡାପଣକୁ ଝିଙ୍କାସୁଛନ୍ତି—ବଡ଼ଲୋକ ସାଙ୍ଗେ ଖେଳବ—ପାଇବୁ. ପାଇବୁ ରହ ।

ଘର ଭିତରେ ବସିଛି ପୁନି । ମନ ହେଉଛି, ପୁନି ସାଙ୍ଗେ କଥାଭାଷା ଦ'ପଦ ହେବ । ଲୋକେ ହସୁଛନ୍ତି । କେଉଁ କଥା କେଉଁଠିକି ଗଢ଼ାଇଲଣି । ଲୋକ ଦେଖନ୍ତରେ ସେଠିକି ଯିବାକୁ ମନ ହେଉ ନାହିଁ ।

କିଏ ଜଣେ ଉପଦେଶ ଦେଲା, "ଯା ରେ ପୁଅ, ତୋ ବାଟେ ବାଟେ ଯା । ପୁନିବୋଉ ନାଇଁ; ତାର ଦୁଆରେ ହୁଡ଼ାହୁଡ଼ି ହବାକୁ ତମକୁ ସୁବିଧା ମିଳିଲା ?"

ସକାଳଟା ଏମିତି ବରିଡ଼ଗଲା ମୂଲରୁ । ସନିଆ ଲେଉଟିଗଲା । ମନରେ ଏତିକି ସାନ୍ତ୍ୱନା ଯେ, ରାତିରେ ସେହି ମଶାଣିର ଦୃଶ୍ୟର ପ୍ରତିଶୋଧ ନେଲା ଭଳି, ତାର ମୁହଁରେ ମିସ୍ତ୍ରୀବାକୁ ବେଳମାନ ପାଇ ଯାଇଚି ।

ଘରେ ପହଞ୍ଚିଲାବେଳକୁ ରାଗଟା ତରଳି ତରଳି ଅଭିମାନ ଯାକେ ଆସିଲାଣି । ପେଟ ପୋଷିବାକୁ ଆଉ କଣ ଉପାୟ ନାହିଁ ? ହାତ ଗୋଡ଼ ଅଛି, ଦେହରେ ବଳ ଅଛି, ବୟସ ଅଛି । ଏଡ଼େ ବଡ଼ ସହର, ଏତେ କାମ । ବିଧାତା ଏପରି କଣ ଚେଷ୍ଟା କରିଛି ତାର ଶରୀର ପାଇଁ ଯେ, କେବଳ ମଇଳା କାମ ଛଡ଼ା ଆଉ ସବୁଥିକୁ ସେ ନପଟ, ନପାରଗ !

ଗୁମ୍ ହୋଇ ପିଣ୍ଡାରେ ବସିପଡ଼ିଲା । ଫମ୍ପା ଘର ଛିଗୁଲେଉଛି । ସାମ୍ନାରେ ଦୁନିଆର ଜଞ୍ଜାଳ । ବାପ ନାହିଁ, ମା ନାହିଁ, କେହି ନାହାନ୍ତି । ଖାଇଲାବେଳକୁ ଅନ୍ୟ ଉପାୟ ନାହିଁ । ପୁଣି ସେହି ମଇଳା କାମ, ସେହି ମିସ୍ତ୍ରୀ; ସେ ଦାଉ ସାଧୁଥିବ । ଦାଢ଼ୁଆ ନଖରେ ଆମ୍ବୁଡ଼ି ଛିଣ୍ଡେଇ, ମୋଟା ଆଙ୍ଗୁଠିରେ ମକଚ ତାର ମୁହଁ ଉପରେ ତାର ଅଙ୍କିତ ସ୍ୱପ୍ନର ପାଖୁଡ଼ାଗୁଡ଼ାକୁ ହସି ହସି ଧ୍ୱଂସ କରୁଥିବ । ପୁନି ସଙ୍ଗେ ସହାନୁଭୂତି ହସାହସି, ଗୁପ୍ତ ଫୁଲେଇ ଭିଡ଼ କାମ ବଢ଼ିଗିବ । ସନିଆ ଶରଣ ନେବ ଫେର୍ ତାହାର !

ଖାଇଲାବେଳକୁ ହାଡ଼ ଜଳେ ।

ଦମ୍ଭ ପ୍ରତିଜ୍ଞା କରି ଉଠିପଡ଼ିଲା । ସହରରେ ବୁଲି ଅନ୍ୟ କାମ ସେ ଖୋଜି ନେବ । ପୁନି ପାଇଁ, ତା ପାଇଁ । ଯେଉଁଠି ମଇଳା ଘାଣ୍ଟିବା ଥିବ ନାହିଁ । ମନମାଫି କାମ । ଦୁହେଁ ପାଖକୁ ପାଖ ।

ହାଣ୍ଡିଟୋକା ସନିଆଁ ଇଟା ଗହଳିରେ ଧୂଳିଆ ସହରରେ କବିତା ଖୋଜି ବାହାରି ପଡ଼ିଲା ।

ପୋଖରୀ ଆରପାଖେ କୋଠା ଗଢ଼ା ହେଉଛି । ମୂଲିଆ ଲାଗିଛନ୍ତି । ସନିଆ ଠିଆ ହେଲା । "କାହିଁକି ଠିଆ ହେଇଚୁ ? କଣ ଦେଖୁଚୁରେ ?"

"ଉଠୁଚ, ବାଗ ଖୋଜୁଚ । ଟିକଏ ହଘା ନ ଦେଲେ, ଇଟାଗୁଡ଼ାକ କୁଆଡ଼େ ଅନ୍ତର୍ଦ୍ଧାନ ହେଇଯିବ—" ଆରମ୍ଭଟା ଭଲ ହେଲା ନାହିଁ । ବିରକ୍ତ ହୋଇ ସନିଆ କହିଲା—"ମଲ, ଗୁହ୍ଁ ଗୁହ୍ଁ ଭଲ ଲୋକକୁ ଚୋର କରୁଚ ! କେବେ ଦେଖିଥିଲ, ତମ ଇଟା ଛୁଇଁଥିଲି ?"

"ନାଇଁ ହୋ, ଖୁବ ଭଲ ଲୋକ ହୋ ତୁମେ; ଯାଅ, ଯାଅ ।"

"ହେ ବାବୁ, ତଡ଼ୁଚ କାଇଁକି ? ଆସିଥିଲି ପଚାରିବାକୁ, ମୁଁ କାମ କରିବି; ମତେ ରଖିବ ?" ମିସ୍ତ୍ରୀ ପାଟି କରୁଚ—"କାମ କର, କାମ କର । କଥା ଗପିଲେ ବେଳ ଗଡ଼ିଯିବ ।"

"ମିସ୍ତ୍ରୀବାବୁ, ମୁଁ ମୂଲ ଲାଗିବି; ମତେ ରଖିବ ?"

"କି ଜାତ ? ମେହେନ୍ତର ନା ! କୋଠା ଗଢ଼ା ସରୁ, ପାଇଖାନା ହଉ, ତଲେ କାମ କରିବାକୁ ଆସିବୁ ଯେ; ଅବକା ଯା—"

ହୋ ହୋ ହସ । ଲୋକେ ସେ ମିସ୍ତ୍ରୀକୁ ତାରିଫ୍ କରୁଛନ୍ତି । ମୁହଁପୋଡ ସନିଆ ଫେରିଗଲା ।

କାମ—କାମ—କେଉଁଠି କାମ ଅଛି ତା ପାଇଁ ? ଏଇ ବଡ଼ କୋଠା, ଅବନାଶବାବୁଙ୍କ ଘର । ବଡ ଫାଟକ ବାଟେ ଅଘୋରବାବୁ ବାହାରି ଆସୁଛନ୍ତି । ଶାନ୍ତ ମୁହଁରେ ପୂର୍ଣ୍ଣ ସହାନୁଭୂତ ।

ସହାନୁଭୂତ ! ନରମ ହୋଇ ସନିଆ ଡାକିଲା—"ବାବୁ—"

ପ୍ରାଣର ଆବେଗ ଆଖି ଠେଲି ଉଛୁଳି ପଡ଼ୁଛି । ଆଶା କରି ଅନେଇଛି । ଅଘୋରବାବୁ ପକେଟରେ ହାତ ଭର୍ତ୍ତି କଲେ ।

ସନିଆ ସହିଲା—"କାମ ଖୋଜୁଚ ବାବୁ; ଗରିବ ଲୋକ—"

"ଭଲ କଥା । ଭିକ ମାଗିବା ମୁଁ ମୋଟେ ପସନ୍ଦ କରେ ନାହିଁ । ଅନର୍ଥକ ଭିକାରୀ ସମସ୍ୟା ବଢ଼ିଯାଉଛି ଆମ ସହରରେ । କାମ କର, ଖା । ଖୁବ୍ ଭଲ କଥା ।…ମତେ କଣ କହୁଚୁ ?"

"କାମ ଖଣ୍ଡେ ଦିଅନ୍ତୁ ବାବୁ । ଯାହା ବତେଇବେ, ତାହା କରି ପାରିବି; ଦେହ ମେହେନତ୍—।"

"ତୁ କ'ଣ ଜାଣୁ ?"

"ଏଇ ପାଖ ସାହିରେ ଥାଏଁ ବାବୁ—"

"ଓ ! କାମ ତ ନାହିଁ !"

"ଆପଣଙ୍କ ପାଖେ ସୁଦ୍ଧା ରହିବି ବାବୁ !"

ବାବୁ ସ୍ବୀକାର କରନ୍ତି । କାମଗୁଡ଼ାକ ସସ୍ତାରେ ଥିଆ ହୋଇ ନାହିଁ ।

ଏମିତି ବାର ଜାଗା । ମିସ୍ତ୍ରୀ ଓ ମଇଲା କାମ କବଳରୁ ସ୍ବାଧୀନ ହେବା ଲାଗି, ସହରସାରା ବୁଲି ପଶୁରି ପଶୁରି ସାର । ସବୁଠି ଏକା ଜବାବ୍—"ତୁ କ'ଣ ଜାଣୁ ?"

ଖରା ଢଳି ପଡ଼ିଥାଏ । ବୁଲି ବୁଲିକା ଗୋଡ଼ ଘୋଳ ହେଲାଣି, ମୁହଁର ପାଣି ମରିଗଲାଣି । କ୍ଲାନ୍ତ ବଢ଼ିବା ସଙ୍ଗେ ସଙ୍ଗେ ମନର ଦୃଢ଼ପଣ ଛୁଣ୍ଡିପଡ଼ି ସଡ଼କ ଧୂଳିରେ ହଜିଯାଉଛି । ସନିଆ ପୁଣି ସନିଆ ହୋଇ ଫେରି ଆସିଲା । ହାଣ୍ଡି ଟୋକାଟିଏ । ଗୋଟାଏ ଦିନ ଅଳସ କଣ ଘରେ ଖଟି, ବୋଲିଣା ଶୁଣିସାରିଲାଣି ! ସକାଳ ପାହିଲେ ପୁଣି ତାର କାମକୁ ଫେରିଯିବ ।

□ □

## ଚଉଦ

ପୁନବୋଉ ହଲ୍ଲା ଉଠେଇଛି, ମେଦିନୀର ସାହି ଉଠେଇ ଦେବାକୁ ବସୁର ଗୁଲିଲଣି । ପୁନବୋଉର ଘର ଆଗରେ ଭିଡ ବସିଛି । ସଡ଼କ ପାଖ ପାଖ । ପରିଷ୍କାର ପରିଚ୍ଛନ୍ନ ହୋଇ ସଫା ଲୁଗା ପିନ୍ଧି ମୁଣ୍ଡର ଚୁଟି ଜକ ଜକ କରି ସ୍ତ୍ରୀ-ଲୋକମାନେ ବସି ଆଲୋଚନାରେ ଯୋଗ ଦେଉଛନ୍ତି । ରଙ୍ଗୀ, ଟଙ୍କି, କଜଳମତି, ସାଇକଢ଼ୀ ଓ ଅନ୍ୟମାନେ କେତେ । ମନର ଉଗ୍ରଭାବ ସହଜରେ ପ୍ରକଟେଇବାକୁ ଭୁଣ୍ଡର ଉପାୟ ସେମାନଙ୍କର ଅସଭ୍ୟ ଗାଳି, କଟାସମା, ହାଉ—ହାଉ । ଲୋକେ ବିଶ୍ୱାସ କରୁନାହାନ୍ତି । କହୁଛନ୍ତି, ପିଠି ଉପରେ ପଜ ଝଡ଼ିପଡ଼ିଲେ ଆକାଶ ଭାଙ୍ଗିପଡ଼ୁଛି ବୋଲି ପୁନବୋଉ ଗ୍ରୁନଆଁ ହେଉଛି । ମାଟି ଘରର କାନ୍ଥ ଓ ଛପର, ଇଟା ଘର ମଝିରେ ସାହୁଖଣ୍ଡିକର ଅବସ୍ଥିତ । ସାମ୍ନାରେ ବଡ ସଡକ ଓ ପଛଆଡ଼େ ମଣିଷ କିଲିବିଲି, ଗେଞ୍ଜାଗେଞ୍ଜି ଘରସବୁ—ଜାଅନ୍ତା ମଣିଷ ଆଖିରେ ଏ ସବୁ ନଦା ଜନପ । ଧୂଆଁ ନୁହେଁ, ନାମ ନୁହେଁ ଯେ କାହାରି ଖିଆଲରେ ଉଡ଼ି ଗୁଲିଯିବ ।

ପୁନବୋଉର ମାୟାବାଦ କାହାରିକୁ ପରତେ ହେଉ ନାହିଁ । ତେଣୁ ସେ ଅନୁପସ୍ଥିତ ଶତ୍ରୁ-ଗୋଷ୍ଠୀ ଉଦ୍ଦେଶ୍ୟରେ ଆହୁରି ଟାଣୁଆ ଗାଳି ବରଷି ଆପଣା ଯୁକ୍ତିର ଜୋର୍ ବଢ଼ୋଉଛି । କଜଳମତି କିମ୍ବା ସାଇକଢ଼ୀକୁ କୁରୁଡ଼ୋଉ ନାହିଁ । କହୁ ନାହିଁ । କହୁ ନାହିଁ ଅନ୍ୟ ଦିନ ପରି ଯେ, ତା ଘରେ ବଢ଼ିଲା ଝିଅ; ବାଜେ ବଜାରୀ ଲୋକ ତା ଘରକୁ ଆସିବା ସେ ପସନ୍ଦ କରୁନାହିଁ । ବକ୍ତୃତା ଦେଉଁ ଦେଉଁ ସେ ନେତାପଣର ଆତ୍ମପ୍ରସାଦରେ ବଡ ହୋଇଯାଇଛି । ଆପଣାର ସ୍ୱାର୍ଥ ପାଣୋଉ ସମର୍ଥିଙ୍କ ସଙ୍ଗେ ଏକ ହୋଇ, ବିପକ୍ଷଦଳ ବିରୁଦ୍ଧରେ ମତ ସଂଗ୍ରହ କଲା ପରି ପାଟି କରୁଛି—

"ଶୁଣୁଚୁ ଲୋ କଜଳମତି ! ଶୁଣୁଚୁ ଲୋ ସାଇକଢ଼ୀ !—ଏ ନିଆଁ-ନଗାଙ୍କ ମନରେ ଏତେ କଥା ଅଛି ! ଆମେ ତାଙ୍କର ଏତେ ସେବା କରୁଛୁ, ସେମାନେ ଚନ୍ଦ ବୁଲେଉଚନ୍ତି ଆମକୁ ଏଠୁ ତଡ଼ିଦେବେ ବୋଲି; କଣ ପଚ୍ଚୁରୁଚ ?"

"ତୁ କାହିଁକି ନାଚୁଛୁ ମାଉସୀ ! ଖାଲି କହିଦେଲେ ହେଇଗଲା ? ସେ ମନ ତ ଖୋଜୁଥାଏ ସବୁ କଥା କରିବାକୁ; କୋଉଠି ହେଇଯାଏ ?"

"କହିବୁଁ ନାହିଁ ? ଗ୍ରାଉରେ ଚଢ଼ି ଜଭ ଓଟାଣ ଆଣିମୁଁ । କାହାଣ ଆମେ ଖାଇ ନା ଧାରୁଁ ?"

"ହଉ, ହଉ । ଦଣଲୋକ ବସି ବଲେ ଜଣାପ କଣବେ ନାହିଁ କ ? କଏ ଆଗ କଣ କରୁଚ କରୁ ।" ସନଆ ବାଟରେ ବୁଲୁଥିଲ; କୁଦଆସି ବଡା ଖଣ୍ଡେ ଧଣ ପାଟିକଲ—"ଆମେ ସବୁ ଥାଉଁ ଥାଉଁ—"

ପୁନବୋଉ ଘୋଳହୋଇ ପଡ଼ିଥାଏ । କାନ୍ଥକୁ ଆଉଜ ବସି ଧକେଇ ହେଲ । କଳଲମଣି ପୁନ ପାଖକୁ ଆସି କହିଲ—"କଣ ସବୁବେଳେ ଘର କଣରେ ପଶିଚୁ ମ ! ପଦାକୁ ବାହାରବୁ ନାହିଁ ?"

ରଙ୍ଗ, ଟଣ୍ଡ କାନପାଖେ ଫୁସ୍‌ଫୁସ୍ ହେଲେ । କହିଲେ—"କାଲଠୁଁ କାମକୁ ଯିବୁ ଟି ?"

"ବୋଉକୁ କହ ।"

"ମଲ, ଗ୍ରେପଣ୍ଡ ହଉଚୁ ! ବୋଉକୁ କହ—କାହିଁକ ? ଆଉ ପିଲ ହେଇଚୁ କ ?"

"ହେ ମାଉସୀ ! କାଲ ପୁନକୁ ନେଇ କାମକୁ ଆମେ ଯିବୁଁ; କୋଉ ବାବୁ ଛମକୁ କଣ କହିଲ, ପଇସା ଆସିବୁଁ ।"

କେମା ଘାଲେଇ ପଡ଼ିଚ । ଦୁର୍ବଳ ଦେହରେ ବହୁତ ବକଲ ପରେ ସେ କ୍ଲାନ୍ତ ।

ଘର ଭିତରେ ଫୁସ୍‌ଫୁସ୍ କଥା, ହସାହସି ଚାଲିଛି । ପଞ୍ଚାଏ ବସି ପୁନକୁ ଖଣ୍ଡିଉଡ଼ା ଶିଖେଇଉଛନ୍ତି । ସଞ୍ଜ ବୁଡ଼ିଲଣି । ପୁନବୋଉ କହିଲ—କ ଲୋ, ତେମେସବୁ ବସିଥିବ କ ଲୋ ? କାମ ନାହିଁ ? ଘରକୁ ଯିବ ନାହିଁ ? ସ୍ବା ପରେ ପୁଣି ସେ ଗାଳଦେବ । କାହାଣ ଉପଦ୍ରେଧ ସେ ରଖେ ନାହିଁ । ପୁନବୋଉର ମିଞ୍ଜାସ ଜାଣି ସମସ୍ତେ ଚାଲିଗଲେ । ପୁନ ବସି ଭାବୁଥାଏ, ସେ କାମକୁ ଯାଇଛି । ଆଭଣ୍ଡ ଅନୁଭୂତ ତାର ମନର ଚନ୍ତାକୁ ରୋକ ପାରୁନାହିଁ । ବଂଶ ପରମ୍ପରାରେ ଦେହଘଷା ହୋଇ ରହିଯାଇଛି ସେ, ରକ୍ତବାଟେ ମନର ଚେତନାରେ । ସେ ଦୃଶ୍ୟ ମନେ ପଡ଼ୁ ନାହିଁ । ମନେ ପଡ଼ୁଛି, ବାହାରର ଦୁନଆଁ, ସାଙ୍ଗସୁଖ, ନଜେ ଉପାର୍ଜନ କରୁଛି ବୋଲ ଆତ୍ମାଭିମାନ । ବୋଉର ଇଙ୍ଗିତ କଟକଣାରୁ ବାହାରି ତାର କାନର ଗଣ୍ଠି ଫିଟେଇ ମନଇଚ୍ଛା ପଦାରେ ବୁଲିବାର ଆନନ୍ଦ । ଜୀବନର ସହଜଛନ୍ଦରେ ପଦାକୁ ଠେଲ ହେଉଛି । ସେହି ବାଟ ଗୋଟାଏ ।

ସେଠି ରଙ୍ଗ, ଟଙ୍କା, କଳକଳମଣି, ସବୁଆ ।
ମିସ୍ତ୍ରୀ ସଦୁପଦେଶ ଦେଇଛୁ ।
"କାଲିକ ମୁଁ କାମ କରି ଯିବି ବୋଉ ।"

"ଫେର୍ ଯିବୁ ! ଥରେ ଯାଇ ହେଲା ନାହିଁ, ଫେର୍ ଯିବୁ ? କାହିଁକି ଯିବୁ ? କଣ କଅଣ ହଉଚ ?" ବିକଳ ମୁହଁ କରି ଜେମା ଝିଅ ମୁହଁକୁ ଅନେଇଲା ।

"ଗଲେ କଣ ହେଲା ବୋଉ ? ଥରେ ହାଣ୍ଡି ପଦାକୁ ବାହାରିଲେ ଯୋଉ କଥା, ସବୁଦିନେ ପଦାକୁ ବାହାରିଲେ ସେଇ କଥା । ସେଇ କାମ ତ, ବଳେ ଦେହଘଷା ହେଇଯିବ ନାହିଁ କ !"

"କଏ କହିଲା ଲୋ ? ଏ ଚୁଲା ବୁଦ୍ଧି ତତେ କଏ ଶିଖେଇଲା ! କୋଉ ଡାକୁଣୀ ପିଶାଚୁଣୀ ତୋ କାନରେ ମନ୍ତ୍ର ଫୁଙ୍କି ଦେଇଗଲା ! ଛି ଛି; କୁଆଡ଼େ ଯିବୁ ରୁ ?"

"ସେମିତ ବେସ୍ତ ହ'ନା ବୋଉ । ଦେଖିଲୁ, ତୋ ଧିଅ କଣ ହେଲାଣି ! ସବୁଦିନେ ରୁ କାମରେ ଯାଣ୍ଣି ହଉଥିବୁ, ମୁଁ ଘରେ ବସିଥିବି ? କାହିଁକି ? ବସି ବସି କଣ ମୁଁ କରିବି ? ଏମିତ କେତେ ଦିନ ଚଳିବ ? ଆମେ କଣ ରଜା ହେଇଚୁ କି ମହାଜନ ହେଇଚୁ ?"

"ରୁ ମୋ ସାଙ୍ଗେ ସେମିତ କଗ ନା ପୁନି—"

"ଘରଚୁଆଣି ହେଇ ନାହିଁ, ନ ହେଲେ ନ ସରେ । ଜଣକର ଖାଇବା ମାନିଆ ରୋଜଗାର, ସେଥିକ ଦିଟା ପେଟ । ଜମା ଅଣ୍ଟୁ ନାହିଁ । ଖାତ ନାହିଁ କି ଲୁଗା ନାହିଁ । ମିଛରେ କାହିଁକି ମୂଲ ନଷ୍ଟ ହଉଥିବ, ମୁଁ ଘରେ ବସିଥିବି; କହିଲୁ ?"

ଜେମିତ ପାକଲ ବୁଢ଼ୀ ପରି ଝିଅ କଥା କହୁଚ ! ପୁନିର ବୁଦ୍ଧି ହେଲାଣି । ପୁନି ବଡ଼ ହେଲାଣି । ରେପିଲା ଗଛକୁ କୁଣ୍ଢ ପାଏ ନାହିଁ । କଣ ବୋଲି ତାକୁ ବୁଝେଇବ ? ଦାନ୍ତ ରଗଡ଼ି, ଆଖି ତରାଟି ଜେମା କହିଲା—"ବୁଝି ଖବର୍ଦ୍ଦାର୍, ରୁ କାମକୁ ଯିବୁ ନାହିଁ ।"

ପୁନି ହସିଦେଲା ।

ରାତ ଅଧ ହୋଇଥାଏ । ବଳବଳେଇ ଉଠିପଡ଼ି ପୁନିକୁ କୁଣ୍ଢେଇ ଜେମା ବାହୁନ ବସିଲା—"ଆଲୋ ମୋ ପୁନି ଲୋ—"

"କଣ ହେଲା ବୋଉ ! କାହିଁକି ସେମିତି ହଉଚୁ ?" ଦେହ ଥରୁଛି, ଝାଳ ଫିଟିଯାଉଛି । ପୁଣିର ବୋଉ ହାଉଳି ହେଉଛି । "ସେମିତି କାହିଁକି ହଉଚୁ ?"

"ଏଁ ?"

ପୁନି ଆଉଁସି ଲଗିଛି । "କଣ ହେଲା ବୋଉ ?"

"କିଛୁ ନାଇଁ ମ, କଣ ଅସାର ସ୍ୱପ୍ନ ଦେଖିଲି ଯେ ! କିଛୁ ନାଇଁ । ଶୋଇ-ପଡ଼ ।" "ପୁଣି ତୋ ଦେହ ଖରାପ ହେଲାଣି । ମୁଁ କଣ କରିବି !"

"ସେମିତି କାଇଁକି ହଉଚୁ ବା ? ଶୋ, ଶୋ ।" ପୁନିର ମୁଣ୍ଡ ଥାପଡ଼େଇ ଥାପଡ଼େଇ କେମିା କହିଲା—ତୁ କାମକୁ ଯିବୁ ନାହିଁ ଟି । ସୁନାଟି ପରା, ମୋ ସାନଭୂହା ମାନ—।

"ହେଉ ତୋର ଅବାଗିଆ ଆଣ୍ଟୁଆ କଥା । ଖାଲି ତୁ କାମ କରି କରି ଏତେ ସରି ହଉଥିବୁ, ମୁଁ ବସିଥିବି । କାହିଁକି ଯିବି ନାହିଁ ? ଗଲେ କଣ ହବ ? ହଉ, ତୁ କିଛି କହ ନା; ଶୋଇପଡ଼ ।"

□ □

# ପଚିଶ

ସକାଳୁ ପୁନି ବୋଉକୁ କହିଦେଇ ଗଲା ନାହିଁ । କାମ କରି ବାହାରି ଚାଲିଗଲା ।

"କଲେ ପୁନି !" "କଲେ ପୁନି !" ଯୁଆଡ଼େ ଗଲେ ତାରି ନାଁ । ନୂଆ ହୋଇ ଲୋକେ ତାକୁ ଆବିଷ୍କାର କରୁଛନ୍ତି ଯେପରି କି । ଅନୁଭବ କରୁଛି, ସେ ନୂଆ ହୋଇଛି । ନ ହେଲେ ଚହଲା ଲୋକଙ୍କର ଏତେ ପ୍ରକାର କଥାର ଛଟା, ଏ ବିଚିତ୍ର ଚାହାଣୀ କାହିଁକି କେବଳ ତାହାରି ଉପରକୁ ।

"ଭଲ କଲୁ ଆସିଲୁ ।" କଜଳମତି ପାଖକୁ ଲାଗିଆସିଲା । "ରୋଜଗାର କରିବାକୁ ବୟସ ଆସିଚି । ଏଇ ତ ବେଳ । ଘରେ ବସିଥିଲେ ପଚାରେ କିଏ କାହାକୁ ?" ମନ୍ତ୍ର କଲା ପରି କାନପାଖେ କଜଳମତି ଗୁଣ୍ଡରେ ନୂଆ ହୋଇ ଦୁନିଆ ଲୋକଙ୍କର ନୂଆ ପରିଚୟ । କେଡ଼େ ସୁନ୍ଦର ସେମାନେ, କି ସହାନୁଭୂତି, ଉଦାର ଆଉ ଖୋଲା ହାତମୁଠା ଚହଲାର ଗ୍ରାହକ । ଗୁହାରି ଗୁହାରି କଜଳମତିର ନିମନ୍ତ୍ରଣ, "କେବେ ତ ଆସୁ ନାହିଁ । ସଞ୍ଜକୁ ଆସନ୍ତୁ, ମୋ କଥା ବୁଝନ୍ତୁ ସତ କି ମିଛ । ତୋ ବୋଉ ଯୋଉ ଓଲି, କଟକଟା, ବୁଝେଇଲେ କଣ ବୁଝିବ ? ଏଣେ ଦେହରୁ ନେଙ୍କୁଡ଼ି ଛୁଣ୍ଡୁଥିବ ତେଣେ କଥାରେ ତାଳଗଛ । ଆସିବୁଟି ? ଗୁଣ ଅଛୁ, କହୁ ଥା —"

ପୁନି ମୁଣ୍ଡ ହଲେଇଲା । ଏଡ଼େ ସୋଗ ସେ ଏଡ଼ିବ କିପରି ? ହଁ, ସେ ଯିବ ।

ପଛରୁ ରଙ୍ଗ, ଟଭ — "ବୁଢ଼ି ଖବରଦାର୍, ସେ କଜଳମତି କଥାରେ ପଡ଼ିବୁ ନାହିଁ ଟି । ତତେ ଖଟେଇବ, ତୋରିଠୁଁ ନିଜେ ଲାଭ ଉଠେଇବ । ଦେଲାବେଳକୁ ଫଟା ପାହୁଲା ନାହିଁ । ଖାଲି କଅଁଳକଥା; ତାକୁ କଣ କରି ପାଇଚୁ କି ଲୋ —"

"ମୋର ସେ କଣ କରିବ ମ —"

କଳା କହରିଆ ଦାନ୍ତ ଦି ପାଟି ଦେଖେଇ ରଙ୍ଗ, ଟଭ ହସାହସି, ଠେଲାଠେଲି ହେଲେ — 'ଇଲେ ସତେ ମ, ମୋଟେ ଜାଣେ ନାହିଁ ମ — ତୁ ବି କଣ କମ୍ ମଉନମୁହିଁ ଟିଏ ଲୋ ! ଦେଖ୍, ଖବରଦାର୍ । ବୁଲିବୁ ଯଦି ତ ଆସିବୁ ଆମ ସାଙ୍ଗରେ । ଭଲ ଭଲ ଠାଆ ଖାଲି କଜଳମତିକୁ ଜଣା, ଆମକୁ ନୁହେଁ ? କହୁବୁଟି ଲୋ ରଙ୍ଗ ତୋ! କଳାମାଙ୍କଡ଼ କଥା —"

"ରୁ କହୁନୁ ତୋ ଗୋଗ ମାଙ୍କଡ଼ କଥା—"

ଆଜିର କାମକୁ ସେତେ ଭୟ ନାହିଁ । ଅସନା ଲାଗୁଛି, ଘୃଣା ହେଉଛି; କିନ୍ତୁ ପହିଲି ଚମକ କଟିଯାଇଛି । କଣ ତା ପାଇଁ ଅପେକ୍ଷା କରୁଛି ତାର ଧାରଣା ରହିଛି ଆଗରୁ । କାମ ଯାହା ହେଉ, ପରିସ୍ଥିତିକୁ ଯୋଡ଼େଇ ପକେଇ, ମନ ଭିତରେ ଉତ୍ତେଜନାର ଜୁଆର ଖେଳୁଛି । ଭିତରର ପାପର କେଉଁଠି ସମତାଳ ରହୁନି ବାହାରର ଏହି ଆବର୍ଜନାକୁଢ଼ରେ । ବାଟେ ବାଟେ ଅସନା କାମକୁ ଅସନା ଗପ । ରଙ୍ଗର ପାଟିରେ, ଟୋକିର ପାଟିରେ ଅର୍ଗଳ ନାହିଁ । ପୁନିକୁ ମଝିରେ ରଖି, ଦୁହେଁ ଦୁହିଁଙ୍କର ଅନୁଭୂତ ଗାଇ ଯାଉଛନ୍ତି । ପୁନିର ମୁହଁରେ ତାଡ ଖେଳୁଛି, ଆଖିରେ ବକୁଳ । କାମ କଟିଯାଉଛି, ସମସ୍ତ କଟିଯାଉଛି ।

କେଉଁଠି ଏତେଦିନ ଏ ପ୍ରବଣତା ଲୁଚି ରହିଥିଲା ! ତାକୁ ଖୋରାକ ମିଳୁଛି । ମନ ଓଲଟା ଗାଇ ପରି । ସରୁ ଗଳି ପାଖେ ରଙ୍ଗ ତରତର ହେଲାବେଳକୁ ଟୋକି ତାର କାନ ଧରି ପକେଇଲା । ଅସନା ହାତ, ଅସନା ଲୁଗା ଏକାଠି ବୋଲାବୋଲି । "ରହ ରଙ୍ଗ, ସବୁଦିନେ ଏକୁଟିଆ ଯାଉ କୁଆଡେ ? ଗୁଲ୍ ଆଜ ଆମେ ଯିବୁ । ପୁନି ଆସିଚ ପରା, ଆଜ ପୁନିର ପାଠପଢ଼ା— ।"

ଚଞ୍ଚଳ ଚାହାଣୀରେ ଟୋକି ରଙ୍ଗ ହସାହସି ।

"ଅଟକିଲୁ କାହିଁକି ରଙ୍ଗ, ଗୁଲୁନୋଉଁ, ଗୁଲ୍—"

"ଧେତ୍, ତେମେ ସବୁ କାମ କର ଯା । ମୋ ପଛରେ କାହିଁକି ଗୋଡ଼େଇଚ ?"

"ପୁନି ନୂଆ ଡାହାଣୀ ବୋଲି ଡରୁଚୁ କି ଲୋ—" ରଙ୍ଗ ଇତସ୍ତତଃ ହେଲା । ଦେଖିଲା, କିଛି ଫଳ ନାହିଁ । ଟୋକିଇ କାଖେଇ ଆଗେ ଆଗେ ଗୁଲିଲା । ଦୁମୁଦୁମୁ ଗ୍ରୁତରେ ଟୋକି ପଛେ ପଛେ ପୁନି । ଏଠି ପୁଣି କି ନବରଙ୍ଗ ଅଛି ? ଆପଣା ଛାଇରୁ ଗୋପନ ମନର କଥା ଯେପରି କି ଛବି ପରି ଲଖି ରହିଛି ଟୋକିର ଅସନା ହସରେ ।

ଅନ୍ଧାରୁଆ ଗଳି, ଅସନା ଗଳି । ଦ'ପାଖେ ଉଚ୍ଚ କୋଠାର ପିଠି । ଗୋଟାଏ ଘରର ସାନ କବାଟରେ ଧଡ଼ ଧଡ଼ କରି ବାଡ଼େଇ, ରଙ୍ଗ ଡାକିଲା— "ପୁଷ୍ପାସ୍ତ୍ର—"

କବାଟ ବାହାରେ ଅସନା ଟୋକିଇ ଥୁଆ ହୋଇଛି । କବାଟ ଖୋଲିଗଲା, ରଙ୍ଗକୁ ଗେଲ ପକେଇଲା । କବାଟ ବନ୍ଦ ହେଲା । ଟୋକି ପୁନିକୁ କହିଲା—ଦେଖିଲୁ, କେଡ଼େ ଚଳାକ୍—!

ଦୁହେଁ ଅପେକ୍ଷା କରି ଠିଆ ହୋଇଥାନ୍ତି । ଦଳେ ଲଫଙ୍ଗା ଗଲେ, ବନ ବ'ପନ୍ତରେ ଗୀତ ବୋଲି ବୋଲି । ଗୀତ ଶୁଭେ, ସିଠି ଶୁଭେ; ପୁନ ଅସ୍ଥିର ହୁଏ ।

"କି ଲୋ ରଙ୍ଗ, ରହିଲୁ କି ?" ଟଙ୍କା ଡାକିଲା ।

କେତେବେଳ ଗଲା । କବାଟ ଖୋଲିଲା । ଦଶିଲା, ଗ୍ରୁଟିପିଟି ହୋଇ ରଙ୍ଗ ପଳେଇ ଆସୁଛି । ତାର ଅସନା କାନକୁ ଫିଟେଇ ଫିଟେଇ ଜଣେ ଲୋକ ପାଟି କରୁଛି—"ଦେଇ ଯା ମ, ଆଉ ଖଣ୍ଡେ ଦେଇ ଯା—"

ବାହାରେ ଦି ଜଣଙ୍କୁ ଦେଖି ଲୋକଟି ଅପ୍ରସ୍ତୁତ ହୋଇଗଲା । ରଙ୍ଗ କହିଲା—"କଣ ଦେଖୁଚୁ ଲୋ ଟଙ୍କା ଚୁଲିପଶି, ଆଇଥିଲୁ ପରା ସାଙ୍ଗରେ, ହେଇ ଦେଖ୍ ସ୍ୱା ବେଭାର । ମୋ କାନ ପାନ କୁଆଡ଼େ ସ୍ୱାଙ୍କୁ ସୁଆଦ ଲଗେ । ଅରେ, ପଳେଇଗଲି କାହିଁକି ମ ବାବୁ, ଆସୁନ; ଆମ ସାଙ୍ଗରେ—" କବାଟ ବନ୍ଦ ହେଲା । ଟଙ୍କା ରଙ୍ଗର ଅଣ୍ଟି ଦରାଣ୍ଡିଲା । "କଣ ଆଣିଚୁ ଦେଖେଁ, ଦେଖେଁ—"

"ଆଲୋ, ପଇସା କଣ ପଡ଼ିଚ ନଡ ନଡ ଖାଲି ଗୋଟେଇ ପକେଇବାକୁ—"

ରଙ୍ଗର ଅଣ୍ଟା ଖାଲି । ପୁଣି ଆଗେ ଆଗେ ରଙ୍ଗ । କିଛିଦୂର ଯାଇ ପୁନ ଦେଖିଲି ରଙ୍ଗର ପିଠିଆଡ଼େ କଣ ଧଳା ହୋଇ ଖଣ୍ଡେ ଲମ୍ବା ବାହାରିଛି । ହାତ ଠାରି ଟଙ୍କାକୁ ଦେଖାଇଦେଲି କି, ଟଙ୍କା ଯାଇ ପଛଆଡ଼ୁ ମାରିଲା ଖେଞ୍ଚାଏ । ରଙ୍ଗ "ରହ ବା, ରହ ବା" କହୁ କହୁ ଟଙ୍କାର ହାତ ମୁଠାରେ ରଙ୍ଗର ପିନ୍ଧାଲୁଗା ଭିତରୁ ବାହାରି ଆସିଲା ଗୋଟାଏ ଗାମୁଛା । ଟଙ୍କା ହସିଲା, ପୁନ ଆଶ୍ଚର୍ଯ୍ୟ ହେଲା । ରଙ୍ଗ ଡରଡର ହୋଇ ଗୃଳି ଗୃଳି କହିଲା—"ଅଣ୍ଡିରେ ଖୋସି ଦେ ବା, କଣ ଦେଖୁଚୁ ! ପିଲା ହେଇଚୁ ରୁ—"

"କହିଲୁ ପରା କିଛି ଆଣିନୋଉଁ ବୋଲି—ମୋ ସାଙ୍ଗେ କପଟ ଖେଳୁଚୁ ?—"

"ଆଲୋ, ଏ କଣ ପଇସା ? ଏ ତ ଗାମୁଛା । ଆଜ ଅଗାଧୁଆ ମୁହଁରେ ରୁ ଆସିଲି ବୋଲି ଫଟା ପାହୁଲାଟାଏ ବି ମିଳିଲି ନାହିଁ । ଓର ପଡ଼ିଲେ । ଟଙ୍ଗା ହୋଇଥିଲା, ଆଣି ଗେଞ୍ଜିଦେଲି; ଯାହା ମିଳିଲା । ଥାଉ, ବାନ୍ଧିଲା ଘୋଡ଼ା ଘାସ ଖାଏ—"

"ତତେ ଧରିବେ ନାହିଁ ?"—ଡରି ଡରି ପୁନ ପଗ୍ଭରିଲା ।

"କଏ ଦେଖିଚ ନା ଜାଣିଚ ? କାହା ଜଭରେ ହାଡ଼ ଅଛୁ, ଏଡ଼େ ସତେଇ କଏ ପଢ଼ିଚ ଯେ, ମତେ ସ୍ୱେର ଧରବ ମ—"

ପୂନ ଡରିଲା । ଭୁଚ୍ଛାଟାରେ କଣ୍ଠାବାଡ଼ରେ ଲୁଗା ପକେଇ ରଙ୍ଗ ହୁଏ ତ ବଦେ ଶୋଧି ଦେଇଯିବ । ଟିଶ୍ରି କହିଲା—"ହଉ, ଗ୍ଲୁଲ୍ ଗ୍ଲୁଲ୍; ଜଣାଗଲା ତୋ କଗ୍ମତ ।"

ଅଜ ଦନଯାକ ସନଆ ଦେଖା ନାହିଁ ।

ସକାଳୁ ଦନଟା ଆରମ୍ଭ ହୋଇଥିଲା ଏକ ପ୍ରକାର । ଏତେଦନ ପରେ ଦେଖି ମିସ୍ତ୍ରୀ ଯେତେବେଳେ ହେଣ୍ଡିଟାଏ ମାରିଥିଲା, କାମ ବରଗିଦେବା ବାହାନାରେ ଡାକନେଇ କେତେ ଖୁସାମତ କଥା ଶୁଣେଇଥିଲା କାନରେ । ସେ ସବୁ ଗୋପନ କଥା । ସାଙ୍ଗମାନଙ୍କୁ କହିଲେ ଖିଅ ଧରବେ, ହସ ଲଗେଇବେ । ସେତକବେଳୁ ନୂଆ ଜୀବନ ଆସିବା ପାଇଁ କବାଟ ଖୋଲିଯାଇଛୁ, ବାରମ୍ବାର ମନେପଡ଼ୁଛୁ ସନଆ । ଚହ୍ଲାଲେକେ ଗାଡ଼ ଅଡ଼େଇ ନେଇ ଗ୍ଲୁଲିଛନ୍ତି । ସାଙ୍ଗ-ମେଳରେ ଗଡ଼ର ଗଡ଼ର ହୋଇ, ଟୋକେଇ ବୋହି ବାଟ ଗ୍ଲୁଲିଲାବେଳେ ଆଖି ଆପେ ଉଣ୍ଡି ବୁଲୁଛୁ, କାଲେ ସନଆ ଆସିବ । ଖରା ମୁଣ୍ଡେ ହେଲାଣି; ସକାଳର ଉତ୍ତେଜନା ତରଳ ତରଳ ଆସିଲାଣି ଅବସାଦ । ଦେହ ହାତ ଅସନା ବାଲୁ ବାଲୁ । ବାହାର ଯିବାକୁ ବାଟ ଖୋଜ ଖୋଜ, ପ୍ରାଣକୁ ରୁଚୁଛୁ ନ ହୋଇବାର କଳ୍ପନା । ଯେଉଁଠି ଧୂଅକଡ଼ା ନ ଥାନ୍ତା, ପରଶ୍ରମ ନ ଥାନ୍ତା, ଫୁଲ, ଅତର, ବାସ୍ନା, ଭଲ ପାଇବା । ଦେହର ପ୍ରତ ଅଣୁ, ପ୍ରତ କଣିକାକୁ ଉଦ୍‌ବୁଦ୍ଧ କରଦେଇ କେବଳ ସୁଖ ।

"ଆଜ ସଞ୍ଜରେ ଆସିବୁଟି ପୂନ—"

"ହେ ପୂନ, ଶୁଭୁଚ ନା ! ସେ ଦନ ସିନା ଦନକଥା ଆସିଥିଲୁ, ଆଜଠୁ କାମରେ ତୁ ମୁକର୍ ର ହେଲୁ । ସଞ୍ଜକୁ ଆସନ୍ତୁ, ଆଜକା ଦନଟା ପାଳନ୍ତେ—"

"କେମିତ ପାଳନ୍ତେ ରଙ୍ଗ ?"

"ଜାଣିନୋଉଁ ? କାହୁଁ ବା ଜାଣିବୁ, ଘରକଣର ବେଙ୍ଗଟିଏ । ଦଶ ପାଞ୍ଚଜଣ ବସନ୍ତେ, ମଦଖଟି ପାଖେ ମଦ ଖାଆନ୍ତେ । ତୋର ନୂଆ ପାଳି, ତୁ ଆମୁକୁ ଖୁଆନ୍ତୁ । ପେଟ ପୂରେଇ ମଦ, ଚୁଙ୍ଗୁଡ଼ି ଭଜା, ପିଠା । ପିଇ ପିଇ ଆମେ ମାତନ୍ତେ । ଲେକମାନେ ଥାଆନ୍ତେ । ରାତଯାକ ଯୁଆଡ଼େ ଇଚ୍ଛା ଯିଆନ୍ତେ । ନିଶା, ଫୁର୍ତ୍ତି, ଗୀତ, ନାଚ । ଆଲୋ, ଖାଇଦେଲେ ସକାଳକୁ ସବୁ ହଜମ ହୋଇ

ଯାଇଥାଏ । ପଇସା କଣ ରହେ ? ଝାଲ୍ ନିଁଟା । ପୂନ ଦେଖିଥିଲା, ଏତିକି ତ ! କଣ କହୁଚ୍, ଆସିବୁ ?”

“ବୋଉ କଣ ଛାଡ଼ିଦବ ଯେ ମୁଁ ଯିବି ? ଆଜି ତ ଏତେ ଡେରି ହେଲାଣି, କଣ କହିବ କେଜାଣି—” “ଭଲ ପିଲା, କୁହାର ବୋଲର ପିଲା, ସବୁଥିକି ବୋଉ ! ସ୍ଵର୍ଗ ଖାଲି ବୋଉ, ଆଉ କାହାର ବୋଉ ନାହିଁ ସତ ! ଆପେ ମନକଲେ କୋଉ ବୋଉ ଅଟକେଇବ ଲୋ ? ବଜାରକୁ ଯାଉଚ, ସାହିକି ଯାଉଚ, ଝାଡ଼ାଫେରି ଯାଉଚ କହିଦେଲେ କଣ ବୋଉ ବାନ୍ଧିରଖିବ ? ରୁ ଟା ଯୋବଣ୍ଟା, କାଠ, ପଥର । ତୋ ଦେଇ କିଛି ହବ ନାହିଁ—”

ଛଟପଟ ହେଲାଣି । ସନିଆ ଆସୁଚି । ଆପଣା ଅଜାଣତରେ ତରତର ହୋଇ ଚାଲି ପୂନ ସାଙ୍ଗମାନଙ୍କୁ ଟପିଗଲାଣି । “କାହିଁକି ଧାଇଁଚ୍, ହଇ ଲୋ—” ସନିଆ ଗାଡ଼ି ଅଟକେଇ ଚପ୍‌ଚିତି ଆସିଲା । କୁହାଟ ମାରିଲା, “ପୂନ—”ହସି ହସି ଛତରଗ୍ରଉଁଲା । ଅସନା ସନିଆ ଦି ହାତରେ ଗାଡ଼ି ଉପରକୁ ଟେକି ନେଲା । “ଚଢ଼୍ ଚଢ଼୍; ବସି ଯା ରୁ ଗାଡ଼ିରେ, ମୁଁ ଠିଆ ଠିଆ ଅଡ଼େଇ ନଉଚି । ଚାଲ୍ କଥା ଅଛି ।”

ହାତ ହଲେଇ, ଖଟେଇ, ବଗୁଲେଇ ହୋଇ ରଙ୍ଗ, ଟସ୍ପ ପାଟି କରୁଛନ୍ତି—“କୁଆଡେ ଉଡେଇ ନେଇଯାଉଚୁ ହେଇ ରେ ହେ—ତା ମା ଖୋଜିବ । ଯା'ନା, ଯା'ନା ହେ ପୂନ—”

ଗୋଡ଼ ଦିଟା ଝୁଲେଇ ଦେଇ ପୂନ ବସିପଡ଼ିଛି, ଯେମିତି ତାକୁ ସନିଆ ଯୋଇ ଦେଇଥିଲା ସେମିତି । ସନିଆ ପାଖରେ ବସିପଡ଼ି ତରତର କରି ବଳଦ ଅଡ଼ୋଉଚି । ପୂନର ମଇଲା ଟୋକେଇ, ସନିଆର ମଇଲାଗାଡ଼ି । ସବୁ ଦେଉଚି । ସନିଆ କହୁଥାଏ, “ଘରକୁ ଗଲେ ଅଇଗ୍ଗ ତୋ ବୋଉ ଛାଡ଼ିବ ନାହିଁ । ଏମିତରେ ଗାଲିଦେବ ଟିକିଏ । ପିଠି ସଟେଇଦବା । ଯିବା ଚାଲ୍ ସେ ବଡ଼ ପାଇଖାନା ଭିତରକୁ । ସବାରେ ଗାଡ଼ି ଅଟକିବ, କେହି ନ ଥିବେ ଏତେବେଳେ । ସେଇଠି କଥାବାର୍ତ୍ତା ହବା । କହିବି, ଚାଲ୍ ।”

ସୁଖ ଆସୁଛି । ଦେହର ସ୍ପନ୍ଦନରେ ତାର ସଉଚସ୍ପ ।

ଗନ୍ଧ, ଅସନା ଭୁଲି ହୋଇଥାଏ । ପାଇଖାନା ପାଇଖାନା ନୁହେଁ; ଉଦୁଉଦିଆ ଦି' ପହର ଦି' ପହର ନୁହେଁ, ରାସ୍ତାରେ ଏତେ ମଣିଷ, ସେମାନେ ନାହାନ୍ତି । ସନିଆ ପାଖରେ ଅଛି ।



## ଛବିଖଣ୍ଡ

ଦାମୀ ଖାଦ୍ୟ, ଗରମ ଖାଦ୍ୟ, ନରମ ଜୀବନ । ସେଠି ଗୋଡ଼ ରେଗେଡ଼ା ନାହିଁ, ବାଲି ମଇଳା ନାହିଁ । ସେଠି ଗରମ ହୋଇ ଦେହରେ ରକ୍ତ ଚାଲେ । ଦେହ ବଢ଼େ, ଦେହ ଫୁଲେ ।

କଵି କଳ୍ପନାରେ ଗୋଟାଏ ଢେଙ୍ଗରେ ଦୁଇଟା ଫୁଲ ପରି ବସ୍ତୁସ ଭୁଲେ ଚରିଯ ବକଣେଇ ବଢ଼ି ଚାଲିଥାନ୍ତି ମାନମୟୀ ଓ ଅଘୋର । ଧନର ଆଭିଜାତ୍ୟ ଶିଖେଇଛୁ ବାଟର ବାଟୋଇଠୁଁ ବି ପାଉଣା ଅସୁଲ କରିବାକୁ । ବଡ଼ଲୋକ ସେମାନେ । ଜୀବନରୁ ସରଟି କାଢ଼ି ଖାଇଯିବାକୁ ଲମ୍ବା ଖ୍ୱବପ୍ରବଣ ଆଙ୍ଗୁଠି ବଂଶପରମ୍ପରାର ଗୁଣ ମଣ୍ଡି ହୋଇ କ୍ଷିପ୍ର, ଅଭ୍ୟସ୍ତ । କେତେ ଚାକର ଝୀଅ ଛୀଅ ଛୀଅ କ୍ଷୀଣ ହୁଅନ୍ତି । ପାଖରେ ଘୁରିବୁଲିବା ଲୋକ, ଯେଉଁମାନେ ଆଲୁଅ ଚାରିପାଖେ ମାଛି, ପୋତକ ପରି ଅନିର୍ଦ୍ଦିଷ୍ଟ ଆଶାରେ ସ୍ତୋକବାକ୍ୟ କହି କହି ଭଉଁରି ବୁଲି ସେମାନେ ନସ୍ତାନ୍ତ ହୁଅନ୍ତି । ଅବିନାଶବାବୁଙ୍କ ସଂସାରର ଗଢ ଏତେ ଟିକିଏ ଏ ପାଖ ସେ ପାଖ ହୁଏ ନାହିଁ, କାହାରି ମର୍ଜି ଯୋଗେଇବାକୁ ।

ଅବିନାଶବାବୁ ମଝିରେ ମଝିରେ ଆସି ମୁହଁ ଦେଖାଇ ଦେଇ ଚାଲିଯାଆନ୍ତି । ଯେଉଁକବେଳେ ଘରକୁ ଧନ ଆସେ । ବାବୁଙ୍କ ପଛେ ପଛେ ଯେତେ ଗୁଇଜର କଟକଣା । ବାବୁ ଚାଲିଯାଆନ୍ତି । ତେଣିକି ଟୋକାମାନଙ୍କର, ଟୋକୀମାନଙ୍କର ସଂସାର । ରହିଯାଏ କେବଳ ବାବୁଙ୍କର ବଡ଼ ଛବିଟା, କାଠ ବନ୍ଧା ହୋଇ କାଚ-ମୁହଁରେ ଜଳଜଳ କରି ଚାହିଁବାକୁ ।

ଯଶୋଦାର କାମ ସେହି ଛବିଟାକୁ ଝାଡ଼ିବା, ସଫା କରିବା । ବାବୁଆଣୀଙ୍କ ଆଖିର ଅଦେଖା କଟକଣାରେ କେଖିହୋଇ, କେହି ନ ଥିଲା ବେଳେ ବି ଯଶୋଦା ଯେତେବେଳେ ଚଞ୍ଚଳ ଚଞ୍ଚଳ ହୋଇ ଘର ଝାଡ଼ୁଥାଏ; ନିତି ସକାଳୁ ତାର ଟିକିଏ ବେଶି ବେଳ କଟେ ସେହି ଛବି ପାଖରେ । ସେତେବେଳେ ସେ ଗୁଞ୍ଜୁଣୀ-ମୁଠାର କଣ୍ମଣି ଫୁଟାଏ, କାଚ ଯୋଡେଇ ହୋଇଥିବା ଛବି ଉପରେ । ଧୂଳି ଉଡ଼େ, ବୁଢ଼ିଆଣୀ ଲୁଚନ୍ତି । ଯଶୋଦାର ହାତ ଅଟକେ ନାହିଁ, ଗୁଞ୍ଜୁଣୀ ଚାଲେ ।

ସେ ତାର ଜୀବନଟାକୁ ପୋଡ଼ୁଥିଲା ।

ବାହାରର ତୋଫାନ ଭିତରକୁ ଭେଦୁଛି । ତାର ବାହାରର ଅମ୍ପିଲି କାଠୁଆ ମୁଖା ପରି ମୁହଁକୁ ଦେଖି ଲୋକେ କହନ୍ତି ସେ ଓଳା, ସେ କାବାଡ଼ ।

ଅନ୍ୟମନସ୍କପଣିଆରୁ ଅଧାନରେ ହାତ ବାଜେ, ଗୋଡ଼ ପଡ଼େ । ଜନିଷ ବରବାଦ ହେବାରୁ ସେ ଶୋଧା ଖାଏ । ମନ ଭିତରୁ ନଗିଡ଼ି ନଗିଡ଼ି କେତେବେଳେ ଏକାଠି ହୁଏ ନିରମାଖୀ ଜୀବନର ସ୍ମୃତି । ଯଶୋଦା ଅସମ୍ଭାଳ ହୋଇ ମନକୁ ମନ ବଡ଼ିର ବଡ଼ିର ହୁଏ, ବିନା କାରଣରେ ହସେ, କାନ୍ଦେ । ଲୋକେ କହନ୍ତି, ତାର ମଥା ଠିକ୍ ନାହିଁ । ମୁଣ୍ଡରେ ପଙ୍କ ଲଦିବାକୁ ଉପଦେଶ ଦିଅନ୍ତି ।

କିଏ କାଏ ସେ, କି ପ୍ରକାର ମଣିଷ ! ଗୋଟାଏ ପଶୁ । ବାବୁ, ବାବୁଆଣୀ-ମାନେ ତ କାହିଁ ଉପରେ ଉଡ଼ୁଛନ୍ତି । ସାମାନ୍ୟ ପୁଷ୍ଟୋଖିଟା, ଗୃହକରଟା, କେମିତି ହସରେ ଉଡ଼େଇ ଦିଅନ୍ତି ତାକୁ ପଦେ ପଦେକେ । ହସନ୍ତି । ତାଳି ମାରନ୍ତି । ଦୋଷ ବାଛନ୍ତି ।

କିନ୍ତୁ ଯଶୋଦା ଭାବେ ନାହିଁ ସେ ପାଗଳ । ସ୍ୱୀକାର କରେ ନାହିଁ । କାହାରଠୁଁ କେଉଁଗୁଣେ ସେ କମ୍ ! ଭାବେ, କେବଳ ଦୁନିଆର ଷଡ଼ଯନ୍ତ୍ର । ସାନଠୁଁ ବଡ଼ଯାକେ ସମସ୍ତେ ମେଣ୍ଟ ବାନ୍ଧିଛନ୍ତି, ତାକୁ ହୀନବଳ ଦେଖି ହଇରାଣ କରିବାକୁ । ଗରିବ ମାଇପ ସବୁରି ଶାଳୀ । ଏହି ଧାରଣାକୁ ଦୁଧ କଦଳୀ ଦେଇ ପୋଷି ପୋଷି ସେ ମୋଟା କରେ । ନିଜ ଭିତରେ, ନିଜ ଆଖିରେ ଦୁନିଆର ଲୋକଙ୍କୁ ଆଉ ତାକୁ ନିଜକୁ ଦୁଇ ଦଳ କରି ଧରିନେଇ, ଚିନ୍ତାରେ ଚିନ୍ତାରେ ସେ ଲଢ଼େଇ କରିବାର, ଲଢ଼େଇ ଜିତିବାର ଆତ୍ମପ୍ରସାଦ ଅନୁଭବ କରେ । ଏମିତି ଆପଣା ସଙ୍ଗେ ଖେଳି ଖେଳି ସେ ଆପଣାକୁ ଅନୁକମ୍ପା ଦେଖାଏ । ଆପଣା ଦୁଃଖରେ କାନ୍ଦେ ବୋବାଏ, ପୁଣି ଆପଣାକୁ ବୋଧ ଦିଏ, ମନକୁ ମନ ଅଦେଖା ଶତ୍ରୁ-ମାନଙ୍କୁ କଟାସମ୍ପା କରେ । ବିଶ୍ୱାସ ଏତେ ସହଜରେ ଆସିନାହିଁ । ଜୀବନ ଗୋଟାକ ଦହଗଞ୍ଜ ହୋଇ, ପଦେ ପଦେ ଜଳି, ଥରେ ଥରେ ସନ୍ତୁଳି ହୋଇ ବିଶ୍ୱାସ ହୋଇଛି, ସେ ନିର୍ଯାତିତା । ଯାହା ସେ ବୁଝିଛି ଥରେ, ଆଉ ତା ବଦଳିବ ନାହିଁ ।

କିଣ ତେବେ ଅଛି ତା ଜୀବନରେ ! କାହିଁକି ତାର ଦିନ ଗଣା ? ଦାନ୍ତରେ ଦାନ୍ତ ମାଡ଼ି, ଆପଣା ନିଶ୍ୱାସ ତଳେ ସିଁ ସିଁ ହୋଇ ସେ କହିହୁଏ—ପ୍ରତିହିଂସା । ଦୁନିଆ ଗୋଟାକ ଜଳିପୋଡ଼ି ଯିବ, ଭସ୍ମ ହୋଇଯିବ । ଧ୍ୱଂସର ଧୂଳି ଧୂଆଁ ଭିତରେ ବୀର ପରି ଠିଆହୋଇ ରହି ସେ ତାଳି ମାରି ମାରି ପାଟି କରିବ, "ମୁଁ କିଣ କହୁଥିଲି ? ମୋର ଲୁହ, କୁଆଡ଼େ ଯାଆନ୍ତା ସେ ? ଜଳିଯାଉ, ପୋଡ଼ିଯାଉ ପାପ, ପାପ । ପାପକୁ ଶାସ୍ତି ହେଲା । ଧର୍ମର ଭାର କମିଗଲା ଏତେଦିନକେ—"

ଏହି ମନରେ ସେ ମୌନୀ ହୋଇଛି; କିନ୍ତୁ ତାର କୁତୂହଳର ସୀମା ନାହିଁ । ତୁଣ୍ଡ ଯେତେ କହେ ନାହିଁ, ଆଖି ଯେତେ ଦେଖେ । ସବୁରି କଣା ଖୋଜ

କଳାବାଟେ ଭିତରକୁ ଅନେଇବାକୁ ସେ ସବୁବେଳେ ତତ୍ପର । ଦେଖେ, ବୁଝେ, ସାଇତି ରଖେ, ବେଳ ପାଇଲେ ବସି ଭାବିବାକୁ । କଣଙ୍କର କଳ୍ପିତ ଦୁର୍ଦ୍ଦଶାରେ ମନରେ ବଳ ଆସେ । ଯେଉଁ ପଣସ୍ଥିତ ତାକୁ ଘେରେଇ ରହିଛି ଲୁହାର ଶିକୁଳି ପରି, ସେଥିରେ ସୂକ୍ଷ୍ମ ଲାଗିଛି । ଏମିତି ସମସ୍ତିଙ୍କ ବଢ଼ତି ଦିନେ ଧୂଳି ହୋଇ ଗୁଣ୍ଡା ହୋଇଯିବ । ଶିକୁଳି ଖୋଲି ପଡ଼ିବ । ଯଶୋଦା ମୁକ୍ତ ହୋଇ କୁହାଟ ଛାଡ଼ିବ ପିଞ୍ଜରାର ଚଢ଼େଇ ପରି ।

ସକାଳ ହୋଇଥିଲା । ଅଧା ନିଦ ଅଧା ଅନିଦ୍ରାରେ ପଡ଼ି ପଡ଼ି ଭାବିହେଲା ବେଳେ ଯେଉଁ ,ବିଷୟଗୁଡ଼ାକ ଏକାଠି ଠୁଳ ହୋଇଥାଏ, ସକାଳ ହେଲେ କେମିତି ସେଗୁଡ଼ା ମୁଣ୍ଡ ଭିତରେ ଝଣ୍ଟେଣେଇ ଉଠେ । କେବେ ପିଲାଦିନେ ଆଶା-ଉଚ୍ଛ୍ୱାସରେ ଗୋଡ଼ ଲମ୍ବେଇ ବସି, ପୂର୍ବ ଆକାଶକୁ ଦେଖି ଦେଖି ଫୁଲ ଗୁନ୍ଥିଲା-ବେଳେ ସକାଳକୁ ଭଲ ପାଇଥିଲା । ଯଶୋଦାର ମନ ମରିଛି । ସକାଳ ତାର ଶତ୍ରୁ । ସକାଳ ଆଣେ ଦିନଗୋଟାକର ହିଟା ।

ଚଢ଼େଇ ହୋଇ ଯଶୋଦା ଭୂଇଁରୁ ଭୂଇଁରୁ ହୋଇ ଗାଇଦିଏ ।

ସେଇ ବଡ ଛବିଟା ପାଖରେ—"ଆହା-ହା, କି ଶୋଭା ରୂପ, କଛି ଜାଣନ୍ତି ନାହିଁ ସତେ କି ! ଦିଶୁଚ ଟି ଆଗିକି ନା ଅଲାଭୂ ଲାଗିଚ ? ଦିଏ ଗ୍ରୀଷ୍ମ ଶୀରେ ଦି ପାହାର ଦେଖା; ଆଖି ଅବା ସଫା ହବ ! ବଡଲୋକ ! ଭାରି ବଡଲୋକ ! "ଯଶୋଦା, ମୋର କୋଠା ଅଛି, ଟଙ୍କା ଅଛି । ନୌକର ଅଛନ୍ତି ତୋ ଗୋଡ ଘଷି ଦେବେ । ରାଣୀ ହବୁ ଲୋ ଯଶୋଦା, ମୋ ସାଙ୍ଗରେ ଚାଲ୍ —' ବାଟୁଳି ବାଜୁ ନ ଥିଲା ଭୁଣ୍ଡରେ ! ପାଉଁଶ ପଡୁ ..."

ଯାଃ, ଭୁଲିଗଲା ସବୁ । ଅଟ୍କା ହୋଇ ଠିଆ ହୋଇଛି ମାଇପିଟାଏ । ଇଟାର କୋଠା କାହିଁ ଧୂଆଁ ହୋଇ ଯାଇଛି । ଏତେ ବଡ ସହର, ସେଠି ଏତେ ଗହଳି, ଏତେ ମଣିଷ, କେହି ନାହାନ୍ତି ତା ଆଖିରେ । ସ୍ଥୂଳତା ନାହିଁ, ବାସ୍ତବତା ନାହିଁ । ଯଶୋଦା ଉଡ଼ିବୁଲୁଛି କେଉଁ ଦେଶରେ, କେଉଁ ସମୟରେ । ଠିକ୍ ସେହି ଛବି ପରି । ବାହାରଟା ଗୋଟାଏ ଖୋଳପା । ମଣିଷର କେତେକର କେତେ !

ଅଠରଟି ବରଷ ସେଠି କଟିଥିଲା, ସେହି ଦେଶରେ । ସେଠି ଧୋବଳା କୋଠା ନାହିଁ, ସଭ୍ୟତାର ସୁବିଧା ନାହିଁ, ଶବ୍ଦ ନାହିଁ, ମୁଣ୍ଡବୁଲା ନାହିଁ । ଛାଡ଼ି ଛାଡ଼ିକା ନାନା ଠାଣିରେ, ନାନା ରୂପରେ ଚାଳଘରଗୁଡ଼ିଏ । ବାଉଁଶ ତାଟିର ବାଡ଼ । ଗୋରୁ, ଗାଈ, ଧୂଳି ଧୀର ଗତିରେ ମନ୍ଥର ଜୀବନ ବାହି ବାହି ଥଣ୍ଡା ଆଖି ମଣିଷ । ସହରଠୁ ବଡ ଦୂରରେ ।

କୋଟ୍ ପ୍ୟାଣ୍ଟ ପିନ୍ଧି, ଖଣ୍ଟ-ଚସମା ନାଇ, ମୁଣ୍ଡରେ ଟୋପି ଦେଇ ଆସୁଛି କିଏ ସେ ? ସେଇ୍ ଆଧୁନିକ ସଭ୍ୟତା । ବାଟେ ବାଟେ ଖାଲି ଜୁହାର୍, ଜୁହାର୍ । ଆଡ଼େଇ ହୋଇଗଲି । ଲଜ୍ଜା ନାହିଁ, ସଙ୍କୋଚ ନାହିଁ, କେହି ନାହିଁ କହିବ ଠିଆ ହ, କୁଆଡ଼େ ଯାଉଚ ?

"କଣ କରୁଚୁ ଯଶୋଦା—"

ଭାବିଲେ ମନ ହଜିଯାଏ । ପୁଣି, ପୋଡ଼ଗଲା ଜୀବନର ସବୁ ଅଭିଯୋଗ ଆଖିରେ ଠୁଳ କରି ଅନେଇଁ ରହେ ଛବି ମୁହଁକୁ । ସେମିତି ନାଷ୍ଟୁର ସେ ଛବି, ସବୁଦିନେ ଜଳଜଳ ।

"ହଉ ହଉ, ଘୃଣ ଧରିଚ ରେ ! ରଖିବ ନାଇଁ ତୋ ଅଦୋହଡ଼ି ସବୁଦିନେ ।"

ଆରମ୍ଭ ହେଲା । ତାର ଆବଷ୍କାର ଓ ତାର ମନ୍ତବ୍ୟ । କେହି ଶୁଣିବେ ନାହିଁ, କେହି ଜାଣିବେ ନାହିଁ । ନିତି ନିତି ତାର ଅଣଲା ଓଠର ନୀରବ ଅଭିଶାପ ଶୁଣୁଥିବ ତାର ପ୍ରାଣ ।

ମାନମନ୍ଦିର କୋଠରି । ନାକ ଫଣକେଇ ବାସ୍ନା ଉଣ୍ଡିଲା । ମୁଣ୍ଡ ପାଖେ ଶୁଖିଲା ଫୁଲତୋଡ଼ା ଖଟରେ ଗଡ଼ୁଚି, ଚୂର୍ଣ୍ଣା କାଗଜ ପଡ଼ିଚି । ପ୍ରସାଧନ ଦ୍ରବ୍ୟ । ସଙ୍ଗୀତର ଉପକରଣ ।

"ଆଖି ବୁଜି ବିଲେଇ ଦୁଧ ପିଉଚି; କିଛୁ ଜାଣେ ନାହିଁ । ହଉ, ହଉ । ଅଣ୍ଡିର ନିଆଁ ଦିନେ ଦେହକୁ ଚହଟିବ । ଜଣାଯିବ ଯେ, ଜଣାଯିବ ନାହିଁ କି ?" ଭୁଟୁରୁ ଭୁଟୁରୁ ହୋଇ ଯଶୋଦା ନିଜକୁ ଆଶ୍ୱାସ ଦେଲା ।

ଏ ଘରର ବାସ୍ନା ତାକୁ କଥା କହେ ।

ଆଖି ଆଗରେ ମଉଳା ଫୁଲ ପାଖୁଡ଼ାଗୁଡ଼ାକ ପୁଣି କଅଁଳ ଉଠେ । ଭାସି ଭାସି ଯାଏ ମାନମନ୍ଦିର ନଗ୍ନେଲା ଆଚୁଆଲର ହଜ ଯାଇଥିବା ଇତିହାସ । କେବେ ସେ ଚଉଚିତ୍ ହୋଇ ବିଛଣାରେ ଶୋଇ ରହି ବହି ଭିତରୁ ଚିଠି ପଢ଼ୁଥିଲା, ଗୋଡ ହଲେଉଥିଲା । କେବେ ସେ ଏକା ନିଶ୍ୱାସରେ କଣ ଲେଖି ଲାଗିଥିଲା; ଗାଲ ଟୁଙ୍ଗୁଲି ପଡ଼ ମୁହଁ ଦିଶୁଥିଲା ଆଉ ପ୍ରକାର । କେବେ ତାର ଦୀର୍ଘଶ୍ୱାସ, ମନମରା ଉଦାସ ମୁହଁ, କଥା କଥାକେ ଚଡ଼ଚଡ଼ । ପୁଣି କେବେ ଛନଛନ ଆଖି, ଡରଡର ଗୁଲା । ଅଣଲା ଓଠରେ ଦରକୁହା କଥା । ଆଖିର ତାରା ଟୁଟକି ଉଠିଥିଲା କାହାପାଇଁ !

ଯଶୋଦା ଖିଅ ଛଡ଼ାଏ, ଅର୍ଥ କାଢ଼େ, ଦେଖେ କମ୍ପୁଟ । ପେଟ ପୂରେଇ ଦେଖେ । ଆପଣା ବୁଦ୍ଧିକୁ ପ୍ରଶଂସି ହସରେ ଜଳି, ମୁହଁ ହଣେ ଭୟଙ୍କର । ଆପଣା ସଙ୍ଗେ ମୂଲ ଚଉଲ କରେ ।

ମାନମୟୀ ଘରୁ ତଥ୍ୟ ଗୋଟେଇ ସାଉ, ଅଘୋରବାବୁଙ୍କ କୋଠରୀରେ ପଶିଲା । ଏଠି ବି ସେ ଘର ଧୂଳରୁ ପ୍ରମାଣ ଅଣ୍ଡାଳ ବସିବ । ସ୍ମରଣ ସଙ୍ଗେ ସଙ୍ଗେ ଅନୁସନ୍ଧାନ ଚାଲିଥାଏ । ଯଶୋଦା ଘର ସଫା କରୁଥାଏ । କଣ ଦେଖନ୍ତି ? କଣ ଭାବନ୍ତି ? କୁଆଡ଼େ ସେ ଯାଆନ୍ତି ? ଭାବେ, ସେ କେବଳ ଛଦ୍ମବେଶୀ ଟୋକା-ବୟସର ଅବନୀଶ । ବାହାର ଚକ୍‌କଣ । ଆଉ ଭିତରେ ?—ସମ୍ଭ୍ରାନ୍ତପଣକୁ ତାର ବିଶ୍ୱାସ ନାହିଁ ।

ଅବନୀଶବାବୁଙ୍କ ପୁଅ କେବେ ଭିନ୍ନ ପ୍ରକାର ହୋଇ ନ ଥିବ ପରା ! ଏକା ମଞ୍ଜିର ଫଳ । ଓଃ, କବାଡ଼ି ଗୃହକର୍ତ୍ତ୍ରୀ ଯଶୋଦା ତାର କାବା କାବା ଧାରଣାରେ ବୁଡ଼ିଥିଲା ।

ଡଲି ଡାକପଡ଼ିଲା—"ଯଶୋଦା, ଯଶୋଦା —"

ଓଦ୍ଲେଇ ଯାଉ ଯାଉ ଭ୍ରୁକୁଟୀ ଦେଖାଇ ମା କହିଲେ—"ତୋ ଦେଇ ଆଉ ପାରହେଲା ନାହିଁ । ହଜାରେ ଡାକ ! ମା ଲୋ ! କଣ ତୁ କରୁଥାଉ ?"

ଏମିତି ଲୋକେ ତାକୁ ବିରକ୍ତ କରନ୍ତି । ତାର ସ୍ଥିରବିଶ୍ୱାସ, ଲୋକେ ତା ବିରୁଦ୍ଧରେ ସବୁବେଳେ ଷଡଯନ୍ତ୍ର କରୁଥାନ୍ତି । ସେ ଭୁଟୁରୁ ଭୁଟୁରୁ ହୁଏ । ନିଜକୁ ଆଶ୍ୱାସ ଦିଏ, ତାର ବି ହସିବା ଦିନ ଆସିବ କେବେ । ଯେତେବେଳେ ସେ କହିପାରିବ ତୁମେ ଗୋଟାସୁଦ୍ଧା ଫାଙ୍କି, ତୁମେ ମିଛ ।

ତୁମ ଧନ ଦଉଲତ, ଛଇଛଟକ ଫମ୍ପା । ଯଶୋଦାର ଅଭିଶାପ ଫଳିଛି ।

"କି ଲୋ ଯଶୋଦା, ଶୋଇପଡ଼ିଲୁ କି ? କେତେ ଡାକରେ ଆଇଲୁ ବା ? କାନ କଣ ପଥର !"

"ମା ଲୋ, ଆଜ ରଖେଇ ଯୋଇ ଦେବେ ନାହିଁ ଆଉ ।" ଯଶୋଦା ଭୁଟୁରୁ ଭୁଟୁରୁ ହୋଇ ଚାଲିଗଲା—ମେହେନ୍ତାଣୀ ଠିଆ ହୋଇଛି । ପାଟି କରୁଛି—"ପାଣି ମନ୍ଦେ ଦିଅ, କାମ ସାରେଁ—"

"କି ଲୋ, ତୁ କାହା ଗୁରୁଗୋସେଇଁ କି ? ଘୋଡ଼ାରେ ଚଢ଼ି ଆଇଚୁଆ—"

"ହେ ମାଉସୀ, ଦିଅ ପାଣି ଟିକେ, କାହିଁକି କଜିଆ କରୁଚ ?" ରଙ୍ଗ କହିଲା—"ହଉ ଲେ ଛତରଖାଇ, ମାଉସୀ କଣ ଲେ—"

ଏଁ ସାଆନ୍ତାଣୀ—"

"ହଇଲେ, କଣ ମୋ ଭଣ୍ଡରେ ତ ଆସୁଚ—" ଅଘୋରବାବୁ ହସୁଛନ୍ତି ଆଉ ଜଣେ ହସୁଛି; ସେ ନୂଆ ମେହେନ୍ତାଣୀ। "କଏ ଲୋ ତୁ ? ଚହ୍ନି ନୋଉଁ କି ଲୋ ?"

"ଯା ଯଶୋଦା, ଝଗଡ଼ା ଲଗା ନାହିଁ ।" ଅଘୋରବାବୁ ଝିଙ୍କାସିଲେ । ବାବୁ ହସୁଛନ୍ତି । ଦୁଆରମୁହଁରେ ହସିଲା ଛବି ଦୋହଲିଲା ପରି ହସୁଛି ପୁଣି । ଯଶୋଦା ପାଣି ଅଜାଡ଼ି ଦେଇ ଗର ଗର ହୋଇ ଚାଲିଗଲା । ଅଘୋରବାବୁ କହିଲେ—"ତୁ ନୂଆ ଲୋକ, ଡରିବୁ ନାହିଁ; ତା କଥା ସେମିତି ।"

ଧଳା ଦାନ୍ତ ଉପରେ ବ୍ରୁହ୍ ଧାଇଁଛି । ଧଳା ଫେଣ, ଝଚଝ ଭଙ୍ଗୀ । ସଜଦୁହାଁ ଦୁଧ ପରି ଦୃଷ୍ଟିରେ ଗୋଳିହୋଇ, କଣ କେମିତି ଜଳିଲା ପରି ଗୋଳିଲା ପରି ରଙ୍ଗ । ସେ ଚାହାଣୀ ଆଗରେ ପୁଣି ଟାଣିହୋଇ ଚାଲିଲା । ହସି ପାରିଲା ନାହିଁ । ଏଇ ଅଘୋର ବାବୁ !

ଜବାବ୍ ଦେଲା ରଙ୍ଗ । କହିଲା, "ବାବୁ, ଆମେ ଡରୁ ନାହିଁ ।" ଦେଖିଲା । ଅଘୋରବାବୁ ପୁଣି ଆଡ଼କୁ ମୁହଁ କରି ଠିଆ ହୋଇଛନ୍ତି । କଣ ଭାବୁଛନ୍ତି । ପୁଣି ଆଡ଼କୁ ଘୁଞ୍ଚିଯାଇ ରଙ୍ଗ ତାକୁ ଛଳେଇ ଛଳେଇ କହିଲା--"ତୋଟାକୁ ଯିବୁ ? ଆମ୍ବ ଖାଇବୁ— ?" ପଛଆଡ଼ୁ ମା ଆସୁଛନ୍ତି । କହିଲେ—"ମଲା, ଆଜି ମେହେନ୍ତାଣୀ କୁଆଡ଼େ ଗଲା; ଏଥିରୁ ଦି'ଟା କଏ ଆସିଛନ୍ତି ବା ! କାମ ନାହିଁ, ଦାମ ନାହିଁ, ଠିଆ ଠିଆ; ଖାଲି ଫେଁ ଫେଁ ହସ !"

"ତା ଧିଅ ଭଲ ନାଇଁ ମା !' ରଙ୍ଗ କହିଲା । "ଏଇଟା ତା ଝିଅ, ପୁଣି । କଣ କରିବ, ଧିଅ ମୁଣ୍ଡକୁ କାହାର ହାତ ଅଛି ? ଝିଅକୁ ସାଇତି କରି ରଖିଥିଲା, କାମକୁ ପଠେଉ ନ ଥିଲା । ବେମାର ପଡ଼ିଲା, ଝିଅ ଆଇଲା କାମ କରି—"

"ମଲା ମ ଫୁଲେଇ—" ମାନମୟୀ କହିଲା । "ସାଇତିକରି ରଖିଥିଲା ! ଓଳିଆରେ ମାଣ୍ଡି ରଖିଥିଲା !"

"ଆହା, ସବୁ ମା ମନ ସମାନ । ପେଟ ନ ପୋଡ଼ିଲେ କେହି ଇଚ୍ଛା କରି ଶ୍ରେଷ୍ଟ କାମ କରି ଓହ୍ଲାଏ ନାହିଁ । ସମ୍ପୂର୍ଣ୍ଣ ଅର୍ଥନୈତିକ ସମସ୍ୟା, ବୁଝିଲୁ ମାନ ।" ଅଘୋରବାବୁ କହିଲେ । "ଓଃ, ଭାଇଙ୍କର ଖାଲି ସମତା ଜ୍ଞାନ ଉଠିଛି ଆଜି । ଅର୍ଥନୈତିକ ସମସ୍ୟା ! ଦେଖୁଚୁ ବୋଉ—"

"ତମେ ପିଲାମାନଙ୍କର କଣ ଏଇଠି ପାଠଶାଠ ଆଲୋଚନା କରିବାକୁ ଥିଲା ? କାହିଁକି ଅଟକେଇ ରଖିଚ ? କାମ କରି ଘରକୁ ଯାଉନ୍ତୁ—"

"ବୋଉ, ଦେଖିଲୁ ଟିକଏ । କଣ ତା ନାଁ ? ହଁ, ପୂଜା । ପୂଜା ଠିକ୍ ମାନ ପରି ଦିଶୁଛି କି ନାହିଁ, କହିଲୁ ଟିକଏ ? ନା, ଜନ୍ମ କରିଚୁ ବୋଲି ପକ୍ଷପାତ କରି ନା, ତୁ ନିଜେ ଦେଖି କରି କହ । ଏକା ପରି ମୁହଁ, ଏକା ବୟସ । ନାଁ ବି ମାନଙ୍କୁ ପୂଜା; ସତ ନୁହେଁ ?"

"ସମତା ଜ୍ଞାନଟା ବହୁତ ତଳକୁ ଓହ୍ଲେଇ ଦେଲ ସାଇ ! ଏଥର ସତରେ ତୁମେ ମହାପୁରୁଷ—"

"ଚଢ଼ିଲେ କଣ ହେବ ? ଦର୍ପଣରେ ନିଜକୁ ଦେଖି ତାକୁ ଦେଖ । ଆଖିକି କଏ ଅବିଶ୍ୱାସ କରିବ ! ଯାହା ସାମାନ୍ୟ ପ୍ରଭେଦ କେବଳ ଆବରଣ ଯୋଗୁଁ, ପରିସ୍ଥିତି ଯୋଗୁଁ । କଣକର କାମ ଖବରେ ତବରେ ବୁଲି ପାଇଖାନା ସଫା କରିବା, ଅନ୍ୟ ଜଣକର କାମ—"

"ତୁମ ହାତ ଚଳେ ଥିଲେ, ଅନ୍ୟ ଜଣକୁ ବି ସେଇଆ କରିବାକୁ ପଠାନ୍ତ ବୋଧହୁଏ—" ମାନମୟୀ ରାଗିଗଲାଣି । ତେଣେ ମେହେନ୍ତାଣୀ ଝୋଙ୍କା ଦନ୍ତା ପୃଷ୍ଠି ସହାନୁଭୂତ ଦେଇ ଆଲୋଚନା ଶୁଣିଛନ୍ତି । "ଦେଖୁନୁ ବୋଉ, ମୋ ସାଙ୍ଗେ କେମିତ ଲଗୋଉଛନ୍ତି—!"

"ଆଉ ଅଘୋର । ତୁ ବା ଚଢ଼ୁଚୁ କାହିଁକି ଲୋ ଝିଅ ! ତମେ ଠିଆ ହେଲ କଣ, କାମ ସାର । ଯଶୋଦା— "

ମେହେନ୍ତାଣୀ କାମ ସାରି ଗୁଲିଗଲେ । ବୋଉ କହିଲେ, "ଅଘୋର, ଆଜ ଧନସାକ ଅଲସେଇଲେ ଚଳିବ ନାହିଁ । ବାପା ସ୍ୱାର ଭିତରେ ଆସିବେ । ହାଡ଼ସାହି ନେବା କଥାଟା ଆଜ ସାଇ ପକ୍‌କା କରିଦେଇ ଗୁଲି ଆ— "

ସବୁ ତ ଠିକ୍ ହୋଇଛି ବୋଉ । ବାପା ଖାଲି ଗୁହାଟା ପଠେଇବାକୁ ଡେରି କରୁଛନ୍ତି । ସେମାନେ କଣ ଭାବିବେ ? ତା'ପରେ ଖାଲି କାଗଜରେ କଣି ଦେଲେ ତ ଚଳିବ ନାହିଁ; ଉଠେଇବାକୁ ଯେଉଁ ଗୋଲମାଲ ଲାଗିବ, ମୁଁ ସେଥିରେ କରିପାରିବି ନାହିଁ କିଛି । କହିଦଉଚ—"

ବୋଉ ହସିଲେ—"ସେ କଥା ଠାକୁରଙ୍କୁ ଜଣେଇଚ । ଆହୁରି ଥରେ ମନ୍ଦିରକୁ ଯାଇ ପାଣିନାଗି କରି ଆସିଲେ, ସବୁ ସୁବିଧା ହେଇଯିବ । ତୋ କାମ ତୁ କର—"

"ଖାଲି ଗୋଲମାଲ ଉଠିଲାଣି ବୋଉ ! ଖାଲି ହସି ଉଡ଼େଇ ଦେଲେ ଚଳିବ ନାହିଁ । ସତରେ —"

"ପାଗଳାଟା, ତୁ କାହିଁକି ଭାବୁଛୁ ? ତୋ କାମ ତୁ କର—"

"ହଁ, କାମ୍ କରିବେ— "ମାନମୟୀ ଛଳେଇ ଛଳେଇ କହିଲା । "ସମତା ଜ୍ଞାନରେ କବିତା ଲେଖି ହୁଏ; କାମ କରେଇ ହୁଏ ନାହିଁ—"



## ସତେଇଶ

ସେହିଦିନ୍ରୁ ଅଘୋରବାବୁଙ୍କ ସାଙ୍ଗେ ମୁହାଁମୁହିଁ ପରିଚୟ ।

କାମ କରି ଗଲେ ଲୋକଙ୍କ ସଙ୍ଗେ ଭେଟାଭେଟି ହୁଏ । ମୁହିଁ ସାଲୁବାଲୁ ଦୁନିଆଁ ଭିତରେ ଗୋଟାଏ ମୁହଁ ସେ—ଅଘୋରବାବୁ । ସନିଆ ମଇଲାଗାଡ଼ିରେ ଚଢ଼େଇ, ଅଡେଇ ନେଇ ଯାଇଥିଲି । ଗହଳି ମଝିରେ ବି କୁହାଟ ମାରି ଡାକେ, ଅଧିକାର ପ୍ରଚାର କରେ । ମିଷ୍ଟୀ ଦେହିଘଷା ଦେଇ, ପାନ ଚୋବେଇ ଅନାଏ । ଯୋଗ ଦେଖେଇ ପିଠି ଆପୁଡ଼ାଏ । ଏଣିକି ତେଣିକି କଥା କରି ଧୀରେ ଧୀରେ ଡାକେ । ଅଘୋରବାବୁ ବି ସବୁଦିନେ ଦେଖାପଡ଼ନ୍ତି । ଖାଲି ଟହିଲୁଥିବେ, ଦାନ୍ତ ଘଷୁଥିବେ । କୌଣସି ଛକଟରେ ଦେଖା ହେବ ହିଁ ହେବ । ଆପଣାର ପରି ଘରକଥା ପକେଇ ଦି' ପଦ କଥାଭାଷା । ଅଠାଳିଆ ସହାନୁଭୂତିରେ ରହି ରହିକା ଅଟକିଲେ ପରି, ଜବାବ ଖୋଜି କଥା କୁହାଇବେ, ହସାହସି ହେବେ । କଥାର ଶିଳ୍ପ ପୁନି ବୁଝେ ନାହିଁ, ବୁଝେ ତାଙ୍କର ଗୃହିଣୀକୁ; ଯେ ଦେହିଯାକ ଚରିବୁଲେ, ଦେହ ଶିର୍‌ଶିରେଇ ଉଠେ । ଗୃହିଣୀ ନୁହେଁ ତ, ମଣିଷର ସ୍ୱର୍ଗ । ଟଳ ଟଳ କରିଦିଏ ।

ନର୍ଦ୍ଦିପଡ଼ ଝରକିଲା ବେଳେ, ପାଣି ଢାଳିଲା ବେଳେ, ନଜର ଦେହ ନଜଂକୁ ମାଡ଼ିପଡ଼େ । ପିନ୍ଧାଲୁଗାର କାନି ବାରମ୍ବାର ଭିଡ଼ିହୁଏ । କଣେଇ କଣେଇ ଅନାଏ । ସେମିତି ·ଦୂରରେ ଠିଆ ହୋଇ ଗୃହିଣୀ ରହି, କଥା କହିବାକୁ ଓଠ ଉଣ୍ଡୁଚନ୍ତି ସେ । ଟାଣି ଓଟାରି ତରତର ହୋଇ କାମ କରି ମଝିରେ ମଠେଇ ହୋଇଯାଏ ।

ସେହି ଗୃହିଣୀର ଦାଉରେ ।

"ଆଇଲି—ଆଇଲି—

ନାଁ କଣ କହିଥିଲୁ ? ପୁନି—ନାଁ ଟା ଭୁଲି ହୋଇଯାଏ—ପୁନି କି ମାନି ?—ଆଚ୍ଛା—କଣ କହୁଥିଲି ? ସକାଳୁ କଣ ଖାଇ ଆସିଚୁ ? ମୁଢ଼ି, ଗୁ' ବୋଧହୁଏ । କାହିଁ ଏମିତି ଲୁଖିରି ମୁଣ୍ଡ କରିଚୁ ? ତେଲ ନ ଥିବ । ଗଲାବେଳେ ତେଲ ଟିକିଏ ମାଗି ନବୁ । ତୋର କଣ ବାପା ନାହିଁ ? କଣ ଛାଡ଼ିଦେଇ ପଳେଇଚି ? ଘରେ କେଇ ଜଣ ? କେମିତି ଚଳ ? ଭାରି କଷ୍ଟ ହେଉଥିବ ତ !"

କେବେ କେବେ ମାନମସ୍ତିକୁ ଦେଖି—"ଇଲେ ମାନ, ତୋର ଡବଲ୍ ଆସିଲଣି, ତତେ ଖୋଜୁଛୁ, ଦେଖିବୁ ଆ—" ପିଲାଳିଆ ଗେଲ୍ହାଳିଆ କଥା । କଣ ତାର ଜବାବ୍ ? ଦେହ ମୋଡ଼ା, ଆଉ ହସ ହସ । ମୁହଁକୁ ତଳକୁ ପୋତ ଅଙ୍ଗେଇ ଅଙ୍ଗେଇ ପଦେ ଦ ପଦ ।

କାମ ସାରି ବାହାରି ଆସେ। ଦୂରରୁ ଦଶେ ଗ୍ରୁତ ଉପରେ ସେ ଟହଲୁଛନ୍ତି, ତଳକୁ ଗ୍ୱହିଁଛନ୍ତି । ଅସନା, ଅନ୍ଧାରି ଗଳିବାଟେ ମାଛି ଭଣ ଭଣ ଟୋକେଇ ପିଠିରେ ଥାକ, ମୁଣ୍ଡ ପୋତ ଦେଇ ବାଟ ଗ୍ୱଲିଲବେଳେ ମନ ଭିତରେ ସେହି ଗ୍ରୁଇଟା ମାଷ୍ଟେଇ ରହେ ।

ହଂସ ପରି ପୂଜ ପକ୍ଷି ଝାଡ଼ୁଦଏ । ଝଜୁଲିତାରରେ ଟେକା ବାଜିଲା ପରି ମନ ଭିତରେ ଝଣଝଣେଇ ଉଠେ । ତାର ଅସନା କାମର ସବୁ ଉପକରଣ ଆଡ଼େଇ ହୋଇଯାଏ କୁଆଡ଼େ ।

ସେଦିନ ଟଗ୍ଭ ଥଟ୍ଟା କଲା, "ସତ କହୁଲୁ, ସେହି ଘରେ ତୋର ଖାଲି ତେଇ ହୁଏ, ବାହାରୁ ବାହାରୁ ଯୁଗ ପାହେ; ନାହିଁ ଲେ ?"

"ମଲ. ଏତେ ହସୁଚୁ କାହିଁକ ମ ! ତୁ ଗଲେ ତୋର ବ ତେଇ ହୁଅନ୍ତା । ମିଛ ବୁଝୁଚୁ ? ରଙ୍ଗକୁ ପଗ୍ୱରୁନୋଉଁ; ସେଥର ଯାଇଥିଲି । ପାଣି ମନ୍ଦାଏ ଦବାକୁ ଯୋଉ ତେଇ—"

"ମୋ ଗ୍ୱଣଟି ! ସତ କହ, ବାବୁ କଣ କହୁଥିଲେ—"

"ପାଣି ମାଗିଲେ । କହିଲେ, ଝଅଟି କର—"

"ହଁ ଲେ, ଆଉ କାହାକୁ ଭୁଲେଇବୁ ସେମିତ ! ଲୋକ ନାହାନ୍ତି ବାବୁଙ୍କୁ ମାଗୁଥିବୁ ପାଣି—"

"ନଇଲେ ପଗ୍ୱରୁଚୁ ? ବାବୁ ସାଙ୍ଗେ ଆମର କିବା କାମ—"

ରଙ୍ଗ କହିଲା—"ଜମା କଥା କହୁ ନାହିଁ ? ସେଦିନ ତ ଥିଲା, ଆମ ପାଇଁ କେତେ ଲଢ଼ିଲା ! ଦେଖେଇ ଦେଖେଇ ମୁଁ କହିଲି, ତୋଟାକୁ ଯିବୁ ?" ରଙ୍ଗ ହସିଲା । କହିଲା—"ଆଜି କଣ ପଗ୍ୱରୁଥିଲ ?" କହିଲି, "ଏଡ଼େ ବଡ଼ ପ୍ରଦର୍ଶନୀ ଆସିଛି, ହାଟ ବଜାର ବସିଛି । ଏତେ କଥା ଶିଖିବାକୁ ଅଛି ସେଠି । ତୁମେ ସବୁ କାହିଁକ ଯାଉ ନା ?"—

"ଦେଖ ତ !" ରଙ୍ଗ, ଟଗ୍ଭ ହସାହସି ହେଲେ । "କେତେବେଳକୁ ?'

"ଏଁ ?"

"କେତେବେଳେ ଗଲେ ଭଲ ହବ ?"

"ମୁଁ କି ଜାଣେ ?"

"ନାଇଁ, ରୁ କିଛୁ ଜାଣିନୋଉ । ଗ୍ରେପଗଣ୍ଟା ! ନେ, ପିଙ୍କା ଲଗା । କିଛୁ ଦେଇଥିବ ପରି ଯାକେରିଦେଖା । ଦେଖିବୁଟି ଲୋ ଟକ୍ସି, କାନ ନା ତୋଷଣି ମ ?"

ଅଣ୍ଡାଳି ପକେଇ ଟଙ୍କି ମୁହଁ ମୋଡ଼ିଦେଲା । ରଙ୍ଗ କହିଲା—"ଆଲୋ, ଓଲ୍ଟାଟାଏ ମ, ଦେଖୁ ନା ! ଇଲେ ପୁନ, ମଉନୁମୁହିଁ ହେଇ ଫଳ ନାହିଁ । ଫଟା ପାହୁଲଟାଏ ତ ଭେଇପାଗଲ୍ ନାହିଁ, ଆଉ କଣ ହବ ? ଏତେ ଡର କାହିଁକି ଲୋ ? ହାଡ଼ିଆଣୀ ମଣିଷ, କଏ ବାନ୍ଧବ ନା ଡଣ୍ଡିବ ? ପରେଇ କୋଉ କଥାକୁ ଯେ, ଏତେ ପେଟସ୍କେକ ମୁହଁଲିକ ?"

"ଗରଜ ପଡ଼ିଚ, ଯିବ କାହାକୁ ପଇସା ମାଗିବ ? ହଇ ଲୋ, ମତେ କଣ କରି ପାଇଲ କି ?"

"କଣ କରି ?" ରଙ୍ଗ, ଟଙ୍କି ହସିଲେ । ଟଙ୍କି କୁରୁକୁରୁ କଲା ।

"ନାଇଁ ନଗା ନା ସେମିତି କହୁଚ । ମତେ ସେ ଛତର୍‌ କଥାଗୁଡ଼ାକ ଭଲ ଲଗେ ନାଇଁ । ଧାଉଁର—" ଟଙ୍କି କହିଲା—"ପୁନ କାନ୍ଦୁଚୁ କି ଲୋ ? ଦେଖେଁ ଆଖି । ହେଇ ଲୋ ରଙ୍ଗ, କନ୍ଦେଇ ଦେଲୁ ?"

"କଏ କଣ କହିଲା କି ? ପବନ ବାଜିଲେ କାନ୍ଦଣା, ମେନ୍ଦେହେଲାଣୀ କାମ କେମିତି କରିବୁ ବା ! ଭୁଲ୍ଲାକୁ ଏମିତି ଛଳ ପଶିଯାଏ ? ହଇ ଲୋ, କାହିଁକି ?—"

ମଇଳା ପଣତରେ ପୁନ ମୁହଁ ପୋଛୁ ଥାଉଥାଏ । କହିଲା—"ଆରେ, କଏ କାନ୍ଦୁଚ ମ ! ତମର ମନ ହଉଥିବ କାନ୍ଦବାକୁ । ମୋର ଯାଉଚ ।"

"ଭୁଟା ଏତେ ଅଇଙ୍କୁଣୀ ବୋଲି ମୁଁ ଜାଣି ନାଇଁ ।"

"ମୁଁ କଣ କହିଲି କି ? କହିଲି—ଛି, ସେମିତି ଲଗା ନା । ତୋ ଭୁଣ୍ଡରେ ତ ବାଇଶ ନାଇଁ । କାହାକୁ କାହା ସଙ୍ଗେ ନେଇ ଯୋଡ଼ିଦବୁ—"

"ଯୋଡ଼ିଦେଲେ କଣ ସତେ ସତେ ହେଇଯିବ—" ରଙ୍ଗ ବଡ଼ ପାଟି କରି ହସିଉଠିଲା । କହିଲା—"ଓହୋ, ସେଇଠି ଦରକ ଅଛୁ ସେଇଆ କହ । ମନେ ମନେ କାଣୀ ପିଠା ଖାଉଚ, ମଲ୍ ନାଇଁ—" ଟଙ୍କି ଆପତ୍ତି କଲା, "ଫେର୍—ଫେର୍ ଲଗେଇଲୁ ? ଯିବ, ତା ବୋଉ ଆଗରେ କହିବ ଯେ ଦବ ତୋ ଗ୍ରମୁଦାନ୍ତ ଝାଡ଼ । ଜାଣି ଥା—"

ବୁଢ଼ି ଆଡ଼ କୋଠାର ଗ୍ରଚ ପଢ଼ାଶାପଣ ପାଚ ଲଗାଲଗି ହେବାକୁ ମାଡ଼ି ଆସିଛୁ କଚକ କଚ । ମନ୍ଦିରେ ସବୁ ଗଳା, ଧାର ଧାର ହୋଇ ନର୍ଦ୍ଦମାର ପାଣି ବୋହୁଛି । ଝୋଟକେଇଗୁଡ଼ାକ ତଳେ ଥୋଇ ଦେଇ, ସ୍ତ୍ରୀମାନେ ଚନ ବାନ୍ଧୁ ବସି ଆଳାପ କରୁଛନ୍ତି । ପୂନର ମନ ଅନ୍ଧାର ଗର୍ଦ୍ଦିଶ ଭିତରେ ଶୋଇ ରହିଥିଲା । କେଉଁ ବକାର ଶୋଇ ଶୋଇ ବଢ଼ୁଥିଲା । ରଙ୍ଗର ନର୍ଦ୍ଦମ ଅଛା ତାକୁ କେଞ୍ଚିଦେଇ ଉଠେଇ ଦେଇଛି । ଦଶୁଛି କେଡ଼େ ବିକୃତ ସେ । ବୀଭତ୍ସ ବିଦ୍ରୂପ । ଅଝଟ ଲାଗୁଛି, ଅସଜ ଲାଗୁଛି । ଆପଣା ଭିତରେ ହଲର ହଲର ହେଉଛି ସେହିଟା । ଗରମ ଦେହ, ଚଞ୍ଚଳ ବୁଡ଼ି ପଡ଼ିବାକୁ ମନ । ଭିତରେ ଅସମ୍ଭବପଣର ଅପବିତ୍ରତା, ପରିଜନ୍ମର ପାପ ।

"ଉଚ୍ଛୁର ହେଲାଣି, ଯିବା ଚାଲ ।" ଟକି କହିଲା ।

"ଆଜି ସହରରେ ପ୍ରଦର୍ଶନୀ ଦେଖି ଯିବା । ଆସିବୁଟି ପୂନ ? କି ଲୋ, କଥା କହୁନୁ ପୂନ, ସେମିତ ମୁହଁ ଘୁଞ୍ଚେଇ ଚାଲିଚୁ କାହିଁକି ଭଲ ! ଆଚ୍ଛା କହିଲୁ, ତୁ ଏମିତ ବୋଲି ମୁଁ କଣ ଜାଣିଚ ? ଆମର ତ ଦେହସାକ ମଇଳା, ପୋକ ସାଲୁବାଲୁ । ତେବେ ଠିକ୍ ଗୋବର ପରି, ସବୁଥିକି ପବିତ୍ର । ତୁ ତୁଚ୍ଛା କଥାକୁ ହଟିଯିବୁ ବୋଲି କିଏ ଜାଣିବ; କହିଲୁ ?"

ରଙ୍ଗ ଗୋଳେଇ ପୋଳେଇ ହେଉଛି । ସାହିପାଞ୍ଚ ବାଟ । ବାବୁଘର-ମାନଙ୍କରେ ଖା'ପିଆ ବେଳ ଗଡ଼ିଗଲାଣି । ବାଉଦୁଆରେ ଅଇଣ୍ଠା ଗଦା ହେଲାଣି । ସେଠି ଭିକାରୀ ଓ କୁକୁରଙ୍କ ଭିଡ଼ । ଗଳିର ଦ' ପାଖରୁ ରନ୍ଧାଘରର ବାସ୍ନା । ମେହେନ୍ତାଣୀ କାମରୁ ଫେରୁଛନ୍ତି । ଏହି ମେହେନ୍ତାଣୀ ଗାଧୁଆବେଳ । ପୋଖରୀରୁ ଶବ୍ଦ ଉଠୁଛି । ପୂନ ମୁହଁ ଶୁଖେଇ ଘରକୁ ଫେରୁଛି ।

ସବୁଦିନେ ଏହି ଘରବାହୁଡ଼ାଣି ବାଟ ତାକୁ ଭଲ ଲାଗିଥାଏ । ଝାଳୁଆ ଧୂଳିଆ ଦେହକୁ ଟୁବି ଗାଡ଼ିଆର ପାଣି । ହଂସାଉଡ଼ା ଡେକକୁ ଫଟା କଂସାରେ ବାସି ପଖାଳ ଦ'ଟା । ସହରରେ ହଜିଯାଇ ଘରକୁ ଫେରିଲାବେଳେ ଘର ଘର ପରି ଲାଗେ ।

ଆଜି ବଇଁଶୀର ଫାଟ ଧରିଛି । ସବୁ ବେସୁରା ।

ସାହିରେ ପଶିଲାବେଳକୁ ଛୁଆଁ ଚା ଲାଗୁଛି । ସେହି ପୁରୁଣା ସାହିର ଏ କି ହତଶ୍ରୀକ ରୂପ-ଭେକ ! ସବୁ ଅସନା ଅବର୍ଜା ଲାଗୁଛି । ଏ ତାର ଜନ୍ମର ପ୍ରାରବ୍ଧ ନୁହେଁ । ଚେଇଁ ଉଠି, ମୁଣ୍ଡ ଟେକି, ତଳକୁ ଚାହିଁ ଘୃଣା କରିବାକୁ ଚେତନାର

ନୂଆ ପ୍ରବଣତା । ଭଙ୍ଗା ଗୃହ, ଛିଣ୍ଡା କନାର ସଂସାର । ଏ କୁତ୍ସିତ, ଏ ପାପ, ଚଢ଼େଇବସାର ତଳତଳ । ଆପଣାର ବୋଲି ଗର୍ବ କରିବାକୁ କିଛି ନାହିଁ । କିଛି ନାହିଁ ।

ବାସ୍ତବ ବୋଲି ସ୍ୱୀକାର କରି ହେବ ନାହିଁ । ସଡ଼ି ପଚ ଧନ ବଢ଼େଇବା । ଗୋଟାଏ ଦୁଃସ୍ୱପ୍ନ । ବଳାଗଣ୍ଡି ଏ ପାଣି ଉପରେ କଳାମେଘର ପ୍ରତିଛବି ପଡ଼ିଲା ପରି ସେହି ସ୍ମୃତିଟା—ମାଡ଼ିଆଇ ରହିଥାଏ—ଅଘୋର, ମାନମଯ୍ୟ । ଅଭିମାନ ଫୁଲି ଉଠୁଥାଏ । ବାରମ୍ବାର ପ୍ରଶ୍ନ ଉଠେ—କାହିଁକି, କି କସୁର୍ କରିଥିଲି ସେ କାହା ସଙ୍ଗେ ?

ପୁନି ଲେଉଟୁଛି । ଘର ଦାନ୍ତ ନକୁଟି ଖଡେଇ ହେଉଛି ଦୂରରୁ ।

ବିଦା ହେଲାବେଳେ ରଙ୍ଗ କହିଲା—"କଣ ମୁଁ କହିଲି ଯେ, କଥାକୁ କାନରେ ଗଣ୍ଠି ପକେଇ ଧରିଚୁ କହିଲୁ—" ଦୁଇ ଟାଣ୍ଡୁଆ ବାହାରେ ଭିଡ଼ି ଧରିଛି ପୁନିର ବେକକୁ । କେତେ ବଳୁଆ ତାର ହାତ ! ଅସନା, ଝାଳ ସରସର, ମଇଳା ଗନ୍ଧ ।

ଆଲୋ, ମୋ କଥାକୁ ଛଳ କରିବୁ ନାହିଁ । କଣ ତୁ ଜାଣୁ ? ନୂଆ ଡାଆଣୀ ପଦାକୁ ବାହାରିଚୁ । ତତେ ପାଠ ପଢ଼େଇବ, ଗୁଣି-ଗାରଡ଼ି ବଢ଼େଇବ । ଗ୍ୟାନଦେଇ ମାଲୁଣୀ କଥା ଜାଣିନୋଉ ?"

"ଛାଡ଼୍ ଛାଡ଼୍, ମୁଁ ଯାଏଁ ।"

"ତୁ ଦୂର୍ ଦୂର୍ କଲେ କଣ ମୁଁ ଛାଡ଼ୁଚି ? ଆଜି ଉପରଓଳି ବାହାରିବୁ, ବୁଲିଯିବା; ଏଁ ?"

"ହଉ ।"

ଘରେ ପହଂଚି ବୋଉକୁ କହିଲା—"ବୋଉ ମ, ହେଇ ଯୋଉ ବଡ଼ ବାବୁଘର; ସେଠିକି ତୁ ଯିବୁ । ସେ କଟକଟୀ ଗୁଜୁରାଣୀଟା—"

"ଆଲୋ, କଏ ତତେ କହୁଚି ଯୋଗେଇବାର ହେଇ କାମ କରି ଯିବାକୁ ! ଆଲୋ ପୁନି, ମୋ ସାନକୁହା ମାନ । ତୁ ଘରେ ଥା—"

□ □

# ଅଠେଇଶ

ମଟର ଚଢ଼ି ଶୈଳେନ୍ଦ୍ରବାବୁଙ୍କ କୋଠାରେ ପହଞ୍ଚିଲାବେଳକୁ ଅଘୋର ଦେଖିଲା, ଲୋକେ ଅପେକ୍ଷା କରିଛନ୍ତି । ପଦାରେ ଗୋଟିଏ ବେଞ୍ଚ୍, ସେଥିରେ ଦୁଇ ବିପରୀତ ଦଳର ପରସ୍ପରକୁ ଅଚିହ୍ନା ଚାରି ଜଣ କର୍ମୀ ବସିଛନ୍ତି । ମସିଆ ଲୁଗାପଟା, ଶୁଖିଲା ମୁହଁ । ହାତରେ, ଗୋଡ଼ରେ ଶିର ବାହାରିଛି । ମଫସଲର ନୀରବ କର୍ମୀ, ଆଦର୍ଶବାଦୀ । ସରଳ ସତ ଅର୍ଥ ବୁଝି, ଧନରାଜ୍ୟ କାନ୍ଧୁଅରେ, ବାଲିରେ ପରିଶ୍ରମ କରି ଯେଉଁମାନେ ବୁଲନ୍ତି । ନାଁ ପଡ଼େ ନାହିଁ ଗୋଟାଏ କଣରେ । ସେହି ବେଞ୍ଚରେ ଏକାଠି ବସିଛନ୍ତି ଜଣେ ଅନ୍ତଲପେଟା ବ୍ୟବସାୟୀ । ସେହି ସମ୍ପ୍ରଦାୟର, ଯେ ପ୍ରତ୍ୟେକ ପ୍ରକାର ଜଳବାୟୁ ଓ ଜନଗୋଷ୍ଠୀକୁ ଆପଣାର ବୋଲି ଭାବି ପାରନ୍ତି । କରଛଡ଼ା ଦେଇ ମିଣ୍ଡାଦାଢ଼ରେ ଟହଲ ମାରୁଛନ୍ତି ଜଣେ ହୃଷ୍ଟପୁଷ୍ଟ ଜମିଦାର ଭଦ୍ରଲୋକ । ପୁରୁଣା ସିଲ୍କ କାମିଜ, ପୁରୁଣା କୋଟରେ ତେଲ ଜକଜକ, ଯହିଁରୁ ଜଣାପଡ଼େ ପ୍ରଜାମାନେ ସହଜରେ ଖଜଣା ଦଅନ୍ତି ନାହିଁ । ବାଡ଼ି, ନଶ, ବଡ଼ ରୁପା ପାନଡବା ଓ ଆସନ ଅଭାବ ଏବଂ ଦର୍ଶନ ଡେରି ହେଉଥିବାରୁ ବିରକ୍ତ ଦର୍ପ ତାଙ୍କର ଭେକର ସୂଚନା । ଫାଟକ ପାଖେ ସାଇକେଲ ଧରି ଜଣେ ଆଶାୟୀ ଯୁବକ । ଶୈଳେନ୍ଦ୍ରବାବୁଙ୍କ ଆନୁକୂଲ୍ୟରେ ବଳିତ ଯିବାର ଆଶା ପୋଷି, ଆଖିରେ ସାମୁଦ୍ରିକ ଚାହାଣୀ । ପ୍ରତୀକ୍ଷାରେ ଅଛନ୍ତି । ବିରୋଧୀ ସତ୍ତ୍ୱମାନଙ୍କର ଉକ୍ଟିତପୂର୍ବ ମନ୍ତ୍ରର ଏକୀକରଣ ବଡ଼ଘରର ବଡ ଫାଟକର ବିଶିଷ୍ଟତା । ମଟର ଶବ୍ଦ ଶୁଣି ଚାକର ଆସିଲା । ଏକାଥରକେ ସମସ୍ତିଙ୍କର କଳରବ । ଯୁବକ ତାଙ୍କର ନାଁ ଲେଖା ହୋଇଥିବା କାଗଜ ଟିକକ ଆଗେଇ ଧରିଲେ । ଜମିଦାର କହିଲେ— "ମଉସା ଅଛନ୍ତି ?" କର୍ମୀ ଚାରି ଜଣ ଠିଆ ହୋଇପଡ଼ି ଚାକରଟିକୁ ଦୁଇ ବିପରୀତ ଦଗକୁ ହାତଠାରି ଡାକ ପାରିକଲେ—"ହୋ, ୟାଡ଼େ ଆସ ମ, ଶୁଣି ଯା ଟିକିଏ; ଆଇଲେ ?" ବ୍ୟବସାୟୀ ଭଦ୍ରଲୋକ ଅଳ୍ପ ହସି ପକେଟରେ ହାତ ପୂରେଇଲେ । ଆଖିମିଟିକା ମାରି ଚାକର ଆଡ଼କୁ ମୋହିଁ ଚାଲିଲେ । ଅଘୋରବାବୁଙ୍କୁ ଦେଖି ସମସ୍ତିଙ୍କୁ ଉଦ୍ଦେଶ୍ୟ କରି ଚାକର କହିଲା—"ଆପଣମାନେ ଆଉ କେତେବେଳେ ଆସିବେ । ବାବୁ ତ ନାହାନ୍ତି ।"

ହତାଶ ଦୃଷ୍ଟିରେ ଦାଣ୍ଡଘରକୁ ସଙ୍କୋଳ ନେଇ ଉପାଧିଆ ପଡ଼ିଥିବା ଲୋକେ ବାହାରି ଚାଲିଗଲେ । ଅଘୋରବାବୁ ଭିତରକୁ ପଶିଲେ । ଆଗେ ଆଗେ ଚାକର ଧାଇଁ ପଳେଇଲା ।

ହସି ହସି, ଦୁମ୍ ଦୁମ୍ ଖସ୍ ଖସ୍ ହୋଇ, ଗର୍ଜିସର୍ଜି ହୋଇ କଥା କହୁ ନିରୁପମା ଆସୁଛି—"ସତରେ ? କାହାନ୍ତି ମ ?"

ଅଭ୍ୟାସ ଯୋଗୁଁ ବାହାର ଚାଲିଆସିଲା ନିରୁପମା । ସେମିତି ଦେହସାରା ଢେଉ ଖେଳୁଛି । ଭୃଣଠୁଁ ବେଶି କଥା କହୁଛି ତାର ଭଙ୍ଗୀ, ତାର ଚାହାଣୀ ।

ଭିତର ପିଣ୍ଡାରେ ଭେଟାଭେଟି ।

କହିଲା—"ଆପଣ—" ଅଟକିଗଲା । ଆଉ କହିପାରିଲା ନାହିଁ ।

ନିରୁପମାର ହସ ଅଣଲ ଅଣଲ ଝୁଲିଲା ଓଠରେ ଧୀରେ ଧୀରେ ମିଳେଇଗଲା । ଦୃଷ୍ଟିରେ କେଉଁ ଦୂରର ଛାଇ, ଵିକଳ ଅଭିମାନର ଦୋଷଦିଆ ଚାହାଣୀ । କଳି କେଉଛି, ଓଟାଣ ଆଣୁଛି ପରସ୍ତ ପରସ୍ତ ଘୋଡ଼ଣି ତଳୁ । ମୁହାଁମୁହିଁ ଧରୁଛି, ଗ୍ରାହ୍ୟ ଦେଉନାହିଁ ।

ନିଶ୍ଚଳ ହୋଇ ନିରେଖା ନିରେଖି । ହଜିଲା ବେଳ ଲେଉଟି ଆସିଲା । ଅଘୋର ଆତ୍ମସମର୍ପଣ କଲା ।

"ଆରେ, ସେମିତି କାହିଁକି ଅନେଇଛନ୍ତି ମ, ଆସନ୍ତୁ—" ନିରୁପମା କହିଲା । ମନର ଘୋର ଆବେଶ ଭାଙ୍ଗିଗଲା । ମୁହଁ ବୁଲେଇ ନେଇ ଆଉ ଥରେ ଦେଖିଲାବେଳକୁ ପାଖର ପ୍ରତିମା ସେହିପରି ଠିଆହୋଇଛି । ମଣିଷଟା ଚାଲିଯାଉଛି, କେଉଁ ଦୂରରେ ହେଲାଣି ।

ଅଘୋରର ଶୁଖିଲା ହସ, ଅଚ୍ଛିଣ୍ଡା ହସ, ଫୁଲ ନୁହେଁ, ପଥର । "ବାଃ, ବେଶ୍ ଦିଶୁଛ ନିରୁ, ଆଜି ସବୁଯାକ ଅଳଙ୍କାର ପିନ୍ଧିଛ ଯେ ! କୁଆଡ଼େ ଯିବ କି ?"

କଏ ଯେମିତି ଫଗୁ ବୋଳି ଦେଇଛି ! ଦେହ ମୋଡ଼ି ମୋଡ଼ି, ମୁହଁ ତଳକୁ ପୋତି ନିରୁପମା କହିଲା—"ଆରେ, ଆପଣ ଖାଲି—"

"କଣ ଖାଲି ? ଭଲ ହେଇଚ; ଅଭ୍ୟାସ କରିବା ଦରକାର ।"

ବେକ ତଳର କାନିକୁ ଟେକିଟେକି ପକାଉଛି, ମୁଣ୍ଡରେ ତାର ସୁନା ତାରର ଜାଲ, କାନର ମୋତି ଝୁଲୁଛି । ସେହି ନିରୁପମା । ଅଘୋର ଦୀର୍ଘଶ୍ୱାସ ଓଟାରୁ ଓଟାରୁ ପଛଆଡ଼ୁ ସ୍ନେହ ସମ୍ବୋଧନ । "ବାବା ଅଘୋର, ଏତେ ଦିନକେ—"

ବାଟ ମିଳିଲା । ଚଞ୍ଚଳ ଅଣ୍ଟାଠୁ ତଳକୁ ଜାମୁଡ଼ାକି ହୋଇ "ନମସ୍କାର—"

"ବୁଢ଼ାଟିଏ ହେଇ ଥା ବାବା, ବୋଉ କଣ କରୁଛି ?"

ସବୁ ସହଜ ହୋଇଗଲା । ଚହଲା ପୃଥିବୀ । ପ୍ରତି କଥା ନିଜର ପୁରୁଣା ସ୍ଥାନରେ । ନିରୂପମା କହିଲା—"ମାନଙ୍କୁ ଆଣିଲେ ନାହିଁ ?"

ବୋଉ କହିଲେ—"ଝିଅକୁ ଘରକୁ ନେଇ ଯା ଲୋ ନିରୁ ! ଗୁ' ଆଣି ଦେ । ପାନ ଡାଲାଟା ଆଣିଦେଲୁ, ପୁଷ୍ପାଞ୍ଜ—! ନିରୁ, ମା, ଦଣ୍ଡବତ ହେଉନୁ ? ଆଶୀର୍ବାଦ କର ଅଘୋର, ନିରୁ ମୋର ସୁଖରେ ଥାଉ ।"

ସାମ୍ନାଟାରେ ଅଜାଡ଼ି ହେଲା ପରି ରହିଛି ନିରୂପମା । ତାର ଦେହଲତା ଅଘୋରର ପାଦତଳେ ଲୋଟୁଛି । ଅଘୋର ତଳକୁ ଚାହୁଁଛି, ଉପରକୁ ଚାହୁଁଛି । ଶୂନ୍ୟରେ ହାତ ଘୁମୁଡ଼େଇ ଉପରକୁ ମୁହଁ ଟେକି, ଡୋଳା ବୁଲେଇ ବୁଲେଇ ଗଦ୍‌ଗଦ୍ ସ୍ୱରରେ କହିଲା—"ସୁଖରେ ରହ ।"

ତା ପରେ ଅଳ୍ପ ହସି ଆପେ କହି ହୋଇଗଲା – "କାଚ ବଜର ହେଉ ।"

ଚଞ୍ଚଳ ଉଠିପଡ଼ିଲା ନିରୂପମା । ଥମ ଥମ ମୁହଁରେ ଜଳ ଜଳ ଆଖି । କହିଲା—"ଥାଉ ଥାଉ,ଆପଣଙ୍କ ଆଶୀର୍ବାଦ ଆଉ ଦରକାର ନାହିଁ ।"

"ଛି, ସେମିତି କହନ୍ତି ନାହିଁ ଝିଅ—" ମା କହିଲେ ।

ନିରୂପମା କୋଠରୀ ଭିତରକୁ ପଶିଗଲା । ପଛେ ପଛେ ଅଘୋର ।

"ତା ପରେ – ?" ଅଘୋର କହିଲା ।

ସହଜ ହୋଇ ଆସିଲାଣି ନିରୂପମାର ଭଙ୍ଗୀ । ସେଥିରେ ଆଉ ଉଚ୍ଛ୍ୱାସ ନାହିଁ । ଆପଣା ସୀମା ଭିତରେ ବଣଜନ୍ତୁ ପରି ନିଜ ବଳ ଉପରେ ପୂର୍ଣ୍ଣ ଭରସା । ତରତର ହେବାକୁ ଗରଜ ନାହିଁ ।

ସେମିତି ତାର ଖଟଦାଢ଼ରେ ବସି ଅନେଇ ରହିଛି । ନରମ ଗନ୍ଧ, ପିଠିଆଡ଼େ ଅନ୍ଧାରର ଆଶ୍ରୟ । ତୁନି ହୋଇ ଝକଝକେଇ ହସି ଦେଉଛି ବିଜୁଳି ପରି । ତୁନି ହୋଇ ଅଘୋର ଚାହିଁଛି । ନିରୂପମା ଖେଳେଇବ । ଦୟା କରିବ ନାହିଁ ଏତେ ଟିକିଏ ।

ଘଣ୍ଟା ଦମ୍ ଦମ୍; କିନ୍ତୁ ନିରୂପମା କହିଲା—"ବଡ଼ ସଞ୍ଜ ହେଉଛି, ଗଲେ ନାହିଁ ଆପଣ ? ବାପା ଯାଇଛନ୍ତି ।" କୁଆଡ଼େ କେଉଁଠିକୁ, ଅଘୋର ଭାବିଲା । କହିଲା – "ଆଉ ତୁମେ ସବୁ ?"

'ଆମେ ପ୍ରଦର୍ଶନୀ ଦେଖି ଯିବୁଁ ।'

"ଓ !" ଅଘୋର ଲୁଷ୍ କରି ଉଠିପଡ଼ିଲା ।

ନିରୁପମା ହସୁଛି । ଅଭାବ, ଅତ୍‌ଶୋଷ୍ ଅସ୍ୱୀକାର କରୁଛି । ସେ ନିରୁପମା ନୁହେଁ, ଲମ୍ବା ବାଟ କରରେ ଗୋଟାଏ ମାଇଲ୍ ପଥର । ବାଟ ମନେପଡ଼େ, ଆଉ କିଛି ନାହିଁ ।

"ଆରେ ଆରେ, ଗୁ ଖାଇଲେ ନାହିଁ, ପାନ ନେଲେ ନାହିଁ; ଉଠି-ପଡ଼ିଲେ ଏଁ—"ଛଲେଇଲା ପରି ହର୍ଷ ଚତ୍କାର । ତାଳିମାରି 'ପଳେଇଲା, ପଳେଇଲା' ପାଟି କଲା ପରି ।

ଅଘୋର ବୁଲିପଡ଼ିଲା । ତଳକୁ ଗୃହିଁ କହିଲା—"ଆଜି ଥାଉ, ବାହାଘର ଭୋଜି ଅଛି ତ ।"

ନିରୁପମା ଧୀରେ ଧୀରେ ବାହାରି ଆସିଲା । ଅଘୋର ନାହିଁ ।

କାହିଁକି ସେ ଆପଣାକୁ କଷ୍ଟ ଦେବାକୁ ଗୃହେଁ—ସେ ଜାଣେ ନାହିଁ ।

ତେଲ ବାମ୍ପ ପାଖେ ଉଦୁମୁଦା ହୋଇ ବସିରହିଲାଠୁଁ ଉଠି ଗୃଲିଆସିଛି; ତଥାପି କେଉଁଠି ଅଭାବ । ଗହ୍ୱାର ମନ ମାଡ଼ ମୂଲେଉଛି । ତରତର ହୋଇ ଗାଡ଼ି ଚଲେଇ, ଅଘୋର ପହଞ୍ଚିଲା ବଡ଼ ସଭା ପାଖେ । ବହୁତ ଲୋକ । ଶୈଳେନ୍ଦ୍ରବାବୁ ପିଢ଼ି ଉପରେ ଚଢ଼ି ବକ୍ତୃତା ଦେଉଛନ୍ତି । ଘନ ଘନ କରତାଳି ।

ନିରୁପମାର ସ୍ୱାମୀ ବର ସଦାନନ୍ଦ ବସିଛି । ଅଘୋର ଲକ୍ଷ୍ୟ ବାଛିନେଲା ।

ଜ୍ୱାଳାମୟୀ ବକ୍ତୃତା । ଗରିବର ଦାବୀ । ମଜୁରିଆର ସ୍ୱାର୍ଥ । ଅଛିବର ସ୍ୱର୍ଗ ।

ଆଶା ଘୋଟିରହିଛି । ଭୁଖାର ବୁଭୁକ୍ଷରେ ବାଲି ଅପଲ୍ଲବରେ ମଲ୍ଲୀଫୁଲ ପରି ଫୁଟିଉଠୁଛି ଭାତର ଗୋଟି ଗୋଟି ଦାନା । ଯାଦୁକର ପିଢ଼ି ଉପରୁ ମନ୍ତ୍ର ପଢ଼ୁଛି । ଆମ୍ବଟାକୁଆ ପୋତି ଦେଉଛି, ଗଛ ହେଉଛି, ବଉଳୁଛି, ଚଣା ଫୁଟୁଛି, ଆମ୍ବ ପାଚି ଝୁଲୁଛି ପେଣ୍ଡି ପେଣ୍ଡି ହୋଇ ।

ବଡ଼ ସହର ବଡ଼ ବକ୍ତୃତା ଶୁଣୁଛି । ବଗ ପରି ବେକକୁ ଆଗକୁ ଓଟାରି ଝଙ୍କି ହୋଇ ରହିଛି ପାଖକୁ ପାଖ ମୁଣ୍ଡମାଳିକା । ତେଲିଆ, ଲୁଖୁରା, ଅଧିକାଂଶ ଲୁଖୁରା । ଆଖିରେ ନିଆଁ ଜଳୁଛି ଦାଉ ଦାଉ ।

"ଶୁଣୁଛ ସଦାନନ୍ଦ—"

"ଏଁ—"

"ଭଲ ଲାଗୁଛି ନା ?"

ସଦାନନ୍ଦର ମେଣ୍ଢାଳିଆ ହସ । "ସେତେ ଖାତକଙ୍କଠି ମହାଜନ ଟଙ୍କା ତୁମର ବାକି ଅଛି ତାକୁ ଖାତାରୁ କାଟିଦେବାକୁ ପଡ଼ିବ । ତାପରେ ଖଜଣା ଛାଡ଼୍ । ଫଟା ପାହୁଲା ନାହିଁ । ତାପରେ ଜମିତକ ବାଣ୍ଟିଦେବାକୁ ପଡ଼ିବ ପ୍ରକୃତ ଚାଷୀମାନଙ୍କୁ । ଗାଈତକ ଦେଇଦେବାକୁ ପଡ଼ିବ ଯେ ଚରାଏ ତାକୁ । କେଉଁଠୁ ଆରମ୍ଭ କରିବ କହିଲୁ ?"

ସଦାନନ୍ଦ ସିଗାରେଟ୍ କେସ୍ ଖୋଲି ଦେଖାଇଲା ।

"ଆରେ ହସୁଛ କଣ ? ମୁଁ କଣ କହୁଛି ? ତୁମ ଶରୀରେ କହୁଛନ୍ତି ନା । ଆଗ ତୁମରି ଉପରେ ମାଡ଼ ।" ସଦାନନ୍ଦ ହସି ହସି କହିଲା, "ଆଉ ତୁମେ ?"

ଷୋଷଣରେ ସର୍ବହରା ପୁରୁଷର ହୁଙ୍କାର । ମୁହଁ ଫାଟି ଆସିଲାଣି, ଆଖିରେ ମେଘ । ଶୈଳେନ୍ଦ୍ରବାବୁ କାନ୍ଧ ପକେଇବେ ଏଥର । ସଦାନନ୍ଦ ଆତ୍ମବିସ୍ମୃତ ହେଲା ।

ଦରପୋଡ଼ା ସିଗାରେଟ୍‌ଟାକୁ ଜୋର୍‌ରେ ଜୋତା ତଳେ ମାଡ଼ି, ଦଳି-ଦେଇ ଅଘୋର ବାହାରି ଚାଲିଆସିଲା । ଏହି ତାର ଶ୍ରେଣୀ, ତାର ସମାଜ, ଦୁନିଆର ଦଶ ଜଣଙ୍କ ମୁଣ୍ଡ ଉପରେ । ଏହି ଉପାୟରେ ଚିରନ୍ତନ ହୋଇ ବିରାଜି ଆସିଛି ତାଙ୍କର ମୋଟା ଧନ ଦଉଲତର ଗାଦି । ରାମାୟଣ ଯୁଗରୁ ଅଥବା ତାହା ପୂର୍ବରୁ ଆଜଯାକେ । କେବେ କ୍ଷୟ ପାଇ ନାହିଁ । ପ୍ରଳୟ ହେଲେ ତାଙ୍କରି ପାଇଁକି ଥିବ ଶିମିଳିଗଛର ଡଙ୍ଗା, ଯୁଦ୍ଧ ହେଲେ ତାଙ୍କରି ଆତ୍ମରକ୍ଷା ପାଇଁ, ପଳାୟନ ପାଇଁ ମଟରଗାଡ଼ି ଥିବ, ପେଟ୍ରୋଲ ଥିବ । ଶାନ୍ତିବେଳେ ସେ ଅଧିନାୟକ ।

ଧର୍ମରେ ଯାଜକ । ଶାସନରେ ରାଜା । ଯୁଦ୍ଧରେ ସେନାପତି । ବିପ୍ଳବରେ ନେତା । ଚାଷୀମେଳାରେ ଜମିଦାର । ଗାଈ ଗୋଠରେ ଷଣ୍ଢ । ଜୀବନର ବାଜିଖେଳରେ ଗୋଟାଏ ସର୍ତ୍ତ କେବଳ । ମୁଣ୍ଡପଟ ଉପରକୁ ରହିଲେ ସେମାନେ ଜିତିବେ । ଲାଞ୍ଜପଟ ଉପରକୁ ହେଲେ ଶତ୍ରୁର ପରାଜୟ ।

ସୁଦୃଢ଼, ସୁଷ୍ଠୁ, ନିରାପଦ ସବୁଦିନେ ।

ଶୈଳେନ୍ଦ୍ରବାବୁ ବକ୍ତୃତା ଦେଉଛନ୍ତି ।

ଅଘୋର ବାହାରି ଚାଲିଆସିଲା । ମୁହୂର୍ତ୍ତିକେ ଅନ୍ତର୍ଦୃଷ୍ଟି ଆଣିଦେଲା ଘୃଣା ।

ଧୈର୍ଯ୍ୟ, ପ୍ରଷ୍ଟ, ସ୍ଥୂଳତା, ବିସ୍ମୃତି ।

ତାର ମୂଳଦୁଆର ତଳେ ତଳେ ବେଶ୍ୟାପଣ ।

ଘୃଣା ଲାଗୁଛି, ଅଳୁଆଁ ଲାଗୁଛି; କିନ୍ତୁ ସେ ତର୍କର କଥା । ସିଗାରେଟ୍ ଧୂଆଁ ସଙ୍ଗେ ସଙ୍ଗେ ପବନରେ ମିଶି ହଜିଯାଏ । ମଟର ହୁକ୍ ହୁକ୍ କରୁଛି । ଏହା

ପରେ ପ୍ରଦର୍ଶନୀ । ଧୂଳି ଉଡ଼ାଇ ରାସ୍ତାରେ ଗଲାବେଳେ ଦାଣ୍ଡ ହୋଇପଡ଼େ ଅବିନାଶଙ୍କ ପୁଅ ଅଘୋର । ରକ୍ତରେ ବଂଶର ଗୁଣ । କାଟି ହୁଏ ନାହିଁ ।

ବିଶାଳ ପ୍ରଦର୍ଶନୀ ବସିଛି । ଗୋଟାଏ ସହର ସେ କଳେ । କୁବେରର କ୍ଷେତ । ଆଳୁଅ, ବାଜା, ଗହଳି, ସୁଅ ପରି ମଣିଷ । ମଟର ରଖିଦେଇ ଅଘୋର ବୁଲି ବୁଲି ଦେଖି ଗ୍ଲାନ୍ତ । ଧାଡ଼ି ଧାଡ଼ି ସଜା ବଖୁରାରେ ନାନା ନାନା ଜିନିଷ । ଦେଶର ସମ୍ଭାର ଖଞ୍ଜାହୋଇ ଥୁଆହୋଇଛି । ସହର ଉଠି ଆସିଛି । ନାନା ନାନା ମଣିଷଙ୍କ ପ୍ରଦର୍ଶନୀ, ନାନା ନାନା ଗୁଣର । ସହରର ଆତ୍ମା କଲବଲ ହେଉଛି ।

ଖଣ୍ଡେ କଞ୍ଚା ମାଂସ ପରି ପଡ଼ିରହିଛି ସ୍ଥଳ । ପୋକ ଭୁରୁ ଭୁରୁ ହେଉଛନ୍ତି ।

ଅଘୋର ବୁଲି ଲାଗିଥାଏ ।

"ଆରେ ଆରେ, ଭାଇ—!" ମାନମୟୀ, ବିଷ୍ଣୁ, ନିରୁପମା, ତା ବୋଉ, ସମସ୍ତେ ଏକାଠି । "ମଟର ନେଇ ଗ୍ଲାନ୍ତଆସିଲ; ଭାବିଥିଲି ଆମେ ଆସିପାରିବୁ ନାହିଁ, ତୁମେ ଏକୁଟିଆ ଦେଖିବ; ନୁହେଁ ?" ମାନମୟୀ ନିରୁପମାକୁ କୁଣ୍ଢେଇ ଧରିଛି, ନିରୁପମାର ହାତ ତାର କାନ୍ଧରେ ।

ମାନମୟୀ କହୁଥାଏ - "କେଡ଼େ ସ୍ୱାର୍ଥପର—ଏଁ !"

ନିରୁପମା ମୁହଁରେ ହସୁଛି, ଗ୍ଲାନ ନାହିଁ ।

ଅଘୋର ଚଞ୍ଚଳ ଯାଇ ପୁଳାଏ ଦାମୀ ଚକୋଲେଟ୍ କିଣି ଆଣିଲା । ଚଷମା ପିନ୍ଧି, କୋତା ମାଡ଼ି, ବେଣୀ ଲମ୍ବେଇ ବିଷ୍ଣୁ ଠିଆ ହୋଇଛି । କହିଲା—"ଆପଣ ଆଗ—"

"ଓ, ଧନ୍ୟବାଦ ।" ବିଷ୍ଣୁ କଲ ବୁଲେଇଲା ।

ମାନମୟୀ କହିଲା—"ଓଃ, ଭାଇଙ୍କର ଯେଉଁ ବାଛୁଲାପଣ ! ଭାରି ଦାମୀ ଜିନିଷଗୁଡ଼ାକ ନା—"

ନିରୁପମା ଆଗରେ ଆଙ୍ଗୁଳି ଧରି ଅଘୋର ଠିଆ ହୋଇଛି, ମାନମୟୀ ଥଟ୍ଟା କରୁଛି । ନିରୁପମାର ମୁହଁରେ ପ୍ରସନ୍ନ ହସ । ଅଘୋରର କାନ୍ଧବାଟେ ଦୃଷ୍ଟି ଲମ୍ବିରହିଛି ଅନ୍ୟ କେଉଁଆଡ଼େ । ଅଘୋର କହିଲା—"ତୋର ଦରକାରରେ ନ ଆସିପାରେ ମାନ, ତା ବୋଲି ଅନ୍ୟମାନେ ଥାଇପାରନ୍ତି, ଯାହାକୁ ଏ ଅମୂଲ୍ୟ ।" ପିଠି ବୁଲେଇ ନିରୁପମା ଦ ପାହୁଣ୍ଡ ଘୁଞ୍ଚିଗଲା । ସମସ୍ତେ ବୁଲିପଡ଼ିଲେ । ତେଣୁ ସୁରବାବୁ, ଅଜୟବାବୁ, ଇନ୍ଦ୍ରଜିତ୍ ଆସୁଛନ୍ତି । ଅଜୟବାବୁଙ୍କ ହାତରେ ଦ'ପଟ

ରେଶମି କୋଟା । କାରୁକାର୍ଯ୍ୟ ମଣ୍ଡିତ । ସୁରବାବୁ ମେଝାଏ ଛବିରୁଣା ସିଲ୍କ ଧରିଛନ୍ତି । ଇନ୍ଦ୍ରଜିତ୍ କିଛି ନୂଆ ପ୍ରକାର ହାତରେ ପିନ୍ଧିବା କାଚ । "ଦେଖେଁ କୋଟା—"ମାନମୟୀର ଦୁଷ୍ଟ ଗୃହିଣୀ । ଅଜୟବାବୁ ନଇଁପଡ଼ିଛନ୍ତି । ମାନମୟୀର ମୁହଁ ସାମ୍ନାରେ ଇନ୍ଦ୍ରଜିତ୍ ନୂଆ କାଚକୁ ବୁଲେଇ ବୁଲେଇ ଦେଖୋଉଛନ୍ତି । ସୁରବାବୁ ଖୋଲି ଦେଖୋଉଛନ୍ତି ତାଙ୍କର ଛିବିବୁଣା ସିଲ୍କ । ଭରସା ଦେଇ କହୁଛନ୍ତି—"ବ୍ଲାଉଜ୍‌କୁ ବେଶ୍ ହେବ ।" ନିରୁପମା ଆଡ଼େଇ ହୋଇଗଲାଣି ମା ପାଖକୁ । ବିଷ୍ଟୁ ଚଷମା ଆଢ଼ୁଆଳରୁ ତାର ଶିକ୍ଷିତ ବୁଦ୍ଧିବୃତ୍ତିର ପ୍ରତ୍ୟେକ ଜିନିଷ ପରୀକ୍ଷା କରୁଛି ।

"କୋଟା ଯୋଡ଼ାକ ବଡ଼ ହେଲା ଅଜୟବାବୁ, ଚଳିବ ନାହିଁ ।" ମାନମୟୀ କହିଲା ।

"ଆଃ, ନିତାନ୍ତ ଭେସେଲ୍ ହେଉଚ ।" ସୁରବାବୁ କହିଲେ ।

"କଣ କହିଲେ, ବ୍ଲାଉଜ୍ ପାଇଁ ଏ କନା ?" ବିଷ୍ଟୁ ମୁଣ୍ଡ ହଲେଉଛି ।

"ଦେଖେଁ, ଆପଣଙ୍କ କାଚ । ଓଃ, ଭାରି କସ୍ ହେବ । ହେଇ ଦେଖନ୍ତୁ, ଫୋଡ଼ିହେଇ ଯାଉଛି ।" ନିରୂପମାର ପିଠି ଦିଶୁଛି ।

ଅଘୋର ଗ୍ଲୁଲିଆସିଲା । ଆଉ ତିନି ଜଣ ବନ୍ଧୁ ଆପଣାର ଭୁଲ୍ ବୁଦ୍ଧିପାଣ ନୂଆ ଉଦ୍ୟମ କରିବାକୁ ତିନି ବାଟେ ଗ୍ଲୁଲିଛନ୍ତି ଭାରି ଚଞ୍ଚଳ । ଗ୍ରେଷ୍ଟିଆ ହୋଇ ଦଳେ ସ୍ତ୍ରୀଲୋକ ଗଲେ । ଛିଟ ଶାଢ଼ୀ, ରଙ୍ଗ ଲୁଗା; ମୁଣ୍ଡରେ, ମୁହଁରେ ଜକ ଜକ ତେଲ ।

"ଏଇଠି ଟିକିଏ ଠିଆ ହେବା ମ !" ରଙ୍ଗ କହୁଛି । "ଦେଖିଲୁ, କେଡ଼େ ସୁନ୍ଦର ସଜେଇଛନ୍ତି—"

ଗ୍ଲୁହିଁ ଗ୍ଲୁହିଁ ଯାଉଛନ୍ତି । ଦୂରଛଡ଼ା ହୋଇ ମୋହିଁଲେଣି ତୋଟା ଆଡ଼କୁ ।
ହାତ ଦେଖାଇ କିଏ କଣ କହୁଛି, ଆଉ ଜଣେ ହସୁଛି ।
ବଙ୍କା ତୋଳାରେ ତଦତବ ଅନେକିଁ ଠିଆହୋଇଛି ପୁନି ।
ସଞ୍ଜ ଆସୁଛି ।



# ଅଣତିରିଶ

ଖାଲି ଗୃହଁବା— ।

ଆଶା ଝରେ, ମନ କୁହୁଳେ । ଅଭିମାନ କରି ପୂନ ଖବେ, ତାର କି ଯାଏ ?

ଜୀବନ ଜଳି ଯାଉଛି ଜୀବନ ପୋଡ଼ି ଯାଉଛି । ବଡ଼ଲୋକର ଦୁଲାଳ, ଥାଉ ସେ ତା ଘରେ । ଏମିତି ଅଲକ୍ଷଣା ଏ କଲାକୋଚଟ କାମ, ପ୍ରତିଦିନ ପାହାନ୍ତାରୁ ଉଠି ପରର ଘୂଅ ସଫା କରିଯିବା, ଆପଣାକୁ ନୂଆଁଇ ଦେବା ସେତିକି ତଳକୁ । ସେଥିରେ ବାହାଦୁରି ନାହିଁ । ସମାଜ ପ୍ରତିଦାନ ଦେବ ଘୃଣା, ହତାଦର ।

ସେତିକିର ସେ । ହାତ ଅଛି, ଗୋଡ଼ ଅଛି, ଗୋଟାଗୁଡ଼ିଏ ମଣିଷଟା; କିନ୍ତୁ ମଣିଷପଣିଆର ଆଣ୍ଠୁଠୁଁ ତଳକୁ ।

ସଫା ପିନ୍ଧିଲେ, ବାସ୍ନା ବୋଳିହେଲେ ଅଛୁଆଁ ଛୁଆଁ ହୁଏ ନାହିଁ ।

ସତ କହିଲେ, ସିଧା ବାଟରେ ଗଲେ, ପୂଜା-ଉଷା କଲେ, ଟିକିଏ ବି ଉଠେ ନାହିଁ ତାର ସ୍ତର ।

ସବୁଦିନେ ସେହି ନାକଟେକା । ଯେଉଁଠି ସେଇଠି ।

ପୁନ ଖଦେ—କାହିଁକି ତେବେ ? ଭିଡ଼ି ଓଟାରି ହୁଏ, ଅଟକିଯାଏ କେବଳ ସମ୍ଭାର ଲାଗି ।

ସନ୍ଧ ଉତ୍ତରୁ ସାହି ଭିତରେ ଖଞ୍ଜଣୀ ବଜେଇ ଧୀମା ଗାଇ ଭଜନ । ଧନୀ ଅଳା ଟୁଙ୍ଗୀରେ କେବେ କେବେ ନାମକୀର୍ତ୍ତନ ଚାଲେ । ଅସନା କାମ ସାରିଲେ ଓଲଟିପଡ଼ି ଅନେକେ ସଉକୀ ହୁଅନ୍ତି । କଜଳମତୀ ଫୁଲ ନାଏ । ଅନେକେ ବାସନ୍ତି । ଓଲେଇ, ପୋଛି, ମାଠିମୁଠି ଘର ସଫାସୁତୁରା । ପରିଷ୍କାର ଚୁଣ୍ଡା ଲୁଗା । ଚକ୍‌ଚକଣ ମୁହଁ ।

କିନ୍ତୁ ମୂଲ ମିଳେ ନାହିଁ । ମଣିଷ ନଜରକୁ ଯେପରି ସଜୋଡ଼ ପଡ଼େ, ଏଠି ତାର ନାଁ ମଇଲାକଢ଼ାଳି । ତେଣୁ ସେ ମଙ୍ଗ ଛାଡ଼ିଦିଏ । ସଫା ଅଳିଆ ଧଳା, କାଳିଆ ମିଶିମାଶି ଯାଏ । ସଫାସୁତୁରା ଘର ଆଗରେ ଅସନା ଟୋକେଇ ଗଡ଼େ । ନାମକୀର୍ତ୍ତନ ପାଖେ ମଦବୋତଲ ଥୁଆ ହୁଏ । ସୁନ୍ଦର ଦେହ, ସୁନ୍ଦର ବେଶ ମଜାହୁଏ ବ୍ୟଭିଚାରର ନର୍ଦ୍ଦମାରେ ।

ଉତ୍କଟ କାମ ହସ୍ତରୁ ଉଜାଣି ମନ ଖୋଜେ ସ୍ୱଚ୍ଛନ୍ଦ ସ୍ଫୂର୍ତ୍ତି । ସବୁ ଭୁଲିଯିବାକୁ ଯନ୍ତ୍ରଣ । ମା ପ୍ରିଅ ଦୃଢ଼େ ଶ୍ରେଜଗାଣଆ । ଢକ ଢକ କରି ମଦ ପିଇଦେଲ ଜେମା ଲମ୍ବ ହୋଇ ପଡ଼ିଯାଏ । ପୁଣିର ଲୋଭ ବଳାଏ । ଉଜାଣି ମନରେ ଖେଳିଯାଏ, ତାହିଁକି ଏତେ ବାକି ରହିବ ? ସବୁ ତ ଆରମ୍ଭ ହେଲାଣି, ଆଉ ତାହିଁକି ? ଆଉ କେତେ ଦିନ ?

ତାହା ପାଇଁ ଅପେକ୍ଷା—ଡର କାହାକୁ—?

ପାରେ ନାହିଁ । ସବେ, ଥାଉ କାଲିକ ।

ଘରର ଦେଖି ଦେଖି, ଆପଣାର ସବୁ ସବୁ, ଧୀରେ ଧୀରେ ସମ୍ଭାର ଜୋହଲ ହୋଇ ଝଡ଼ପଡ଼େ । କାଲିକା ଦିନଟା ପାଖକୁ ଘୁଞ୍ଚିଆସେ ।

ରାତି ହୋଇଥାଏ । ଅନ୍ଧାରୁଆ ପହିଲି ପହର । ମେହେନ୍ତ୍ରର ପାହୁ କଟିକଟି ଅନ୍ଧାର । ଜେମା ଠେକଏ ଆଣିଥିଲା, ପିଇଦେଇ ଶୋଇପଡ଼ିଲାଣି । ପୁଣି ଉପରେ ଖରା ଶେଷେଇ ଦେଖିବା । ଦ ଓଳିକୁ ଖତ ବସିଛୁ । ପୋଡ଼ାଟାଏ କ ସିଝାଟାଏ ତରକାରି ମ ନାହିଁ । ଖାଇବାକୁ, ଗରମ ହେବାକୁ, ଛଟପଟ ହେବାକୁ ବହୁତ ବେଳ ।

ଅବିନାଶବାବୁଙ୍କ ଘରେ ବିଜୁଳିବତୀ ଜଳୁଛି । ଖଟ ଗାଲ ଥୋଇ ଦେଇ, ଖୁଣ୍ଟିଆ ତରକାରି ବସେଇ ଦେଲାବେଳକୁ ମାନମୟୀର ହାର୍ମୋନିଅମ୍ ବଜା ଶୁଭିଲା । ମାନମୟୀ ଗୀତ ବୋଲୁଛି । ପୁଣିର ମୁହଁ ଝାଳେଇ ଗଲାଣି । ଓଦାକାଠ ଯେ ଧୂଆଁ ନାକ ବୁଜି ଦେଉଛି ।

ତଥାପି, ମାନମୟୀ ଗୀତ ବୋଲୁଛି । ସ୍ୱରର ତାଳେ ତାଳେ ତହିଲି ଉଠୁଛି ଦିନ ଗୋଟାକଯାକ ଅଙ୍ଗେ ନିଭେଇଥିବା କାମର ଛବି । ମିସ୍ତ୍ରୀର ନିଶ ସାଉଁଳା, ପାକଲା ପାକଲ, ଲୋକଙ୍କର ନିଆଁ ଧାସ ପରି ଦୃଷ୍ଟି । ଚେଁ ଚେଁ ହୋଇ କଂସ୍କାଠ ଜଳୁଛି । ନେଳିଆ ନିଆଁ, ଦର ଦର ପାଣି । ପିଲୁନିଆ ମଣିଷଙ୍କ ନିଆଁ ଲଗା ସ୍ମୃହାଣୀ ।

ପାଇଖାନାରୁ ପାଇଖାନା ବୁଲି ଫେରୁଛି । ମଇଳାଉଣ୍ଡି ଟୋକେଇ । ମଇଳା ଗାଡ଼ି । ଗନ୍ଧିଆ, ମାହାଲିଆ ଜୀବନ । ସ୍ମୃଣିଆଡ଼ୁ ଗୋଡ଼େଇ ଆସୁଛି ମଇଳା ।

ଛନ ଛନ ରାତି ।

କବାଟ ମେଲା ଅଛି । ବସ୍ତ୍ରପର ଜଗୁଆଳି ତାର ମା ସବୁଦିନ ପରି ନିଶା ନିଦରେ ।

ବାହାରେ ଅଜଣା ଅନୁଭୂତର ଅନ୍ଧାର ସ୍ୱାଧୀନତା । ଦେହରେ ଜ୍ୱାଳା ।

ମାନମନ୍ଦିର ଗୀତରେ ଅବଶ ବହ୍ମାଦର ଲହଡ଼ି ବାରମ୍ବାର କୂଳରେ ଭାଙ୍ଗି ଚୂନା ହେଉଛି । ପୁନ ଶମନା । ବେଳେ ଏହ ସଙ୍ଗୀତ ଶୁଣିବାକୁ ଲୁଚୁଥିଲ ଥିଲା । ଆଜ ନାହିଁ ।

ଆଜ ଯେ ଆଖିରେ ଟେଣ୍ଟା ପଶ । ଓପାଡ଼ ହୁଏ ନାହିଁ । ଆଖିରୁ ପାଣି ନଗାଡ଼େ । ଲାଗୁଛି, ଭଗବାନ୍ ତାକୁ କ ଜନ୍ମ ଦେଇଥିଲା ।

"କଣ କରୁଚ୍ ପୁନ ?" ଅନ୍ଧାରରୁ ରଙ୍ଗ ଡାକଲା ।

ଟଗ୍ କହୁଛି—"ପଦାକୁ ଆ ।"

ପୁନ ଅନ୍ଧାରକୁ ଓହ୍ଲେଇଗଲା । ଫୁସ୍ ଫୁସ୍ କଥାବାର୍ତ୍ତା । "ଆସୁନୋଉ !" "ଗ୍ଲ୍ ମ, ଅଇଲ୍ଲ ଫେର ଆସିବା ଯେ !" ମନା କଣ ହେଲା ନାହିଁ । ଭିତର ଘରେ ଉଵ ଜଳୁଛି । ମା ଶୋଇଛି । ଏତେ ଚଞ୍ଚଳ ଉଠେ ନାହିଁ । କବାଟ ଆଉଜେଇ ନେଲା, ପୁନ ଗ୍ଲଗଲା ।

ଅନ୍ଧାରରେ ଲୋକ ଗ୍ଲଲଚଲ, ଅଟକ ରହ, ସିଠି ମାଗ, କଥାବାର୍ତ୍ତା ହୋଇ । ସହର ଦୃଶ୍ୟ ଆଖିରେ ପଡ଼ୁଛି କେଉଁଠି । କେଉଁଠି ଅନ୍ଧାରେ ଅନ୍ଧାରେ, କେବଳ ବାଗ ହେଉଛି । କାନ୍ଥବାଡ଼କୁ ଆଉଜ ପଡ଼ୁଛି ଗ୍ଲଲ । ହଲଲେ ବାଗ ହୁଏ, ତଳେଇ ଗ୍ଲହିଁଲେ ବାଗ ହୁଏ । ମଣିଷ ଗ୍ଲଚ ହୋଇଛି । କାହାର ମୌନ ଛବ ଝଲଝଲେଇଲା ପରି ଉଠିପଡ଼ି ଭଙ୍ଗୀରେ ଅସ୍ତିତ୍ୱ ପ୍ରକଟାଉଛି । ଗଳି ଦ'କରେ ଘର ଧାଉଡ଼ିରୁ ସ୍ଥାନେ ସ୍ଥାନେ କ୍ଷୀଣ ଆଲୁଅର ଧାସ । ଗଳିରେ ଗ୍ଲଲଗଲାବେଳେ ମଣିଷର ରୂପ ଦେଖିଉଠି ପୁଣି ବୁଡ଼ିଯାଉଛି ଅନ୍ଧାରରେ । ହାତରେ, ବେକରେ ମଲ୍ଲୀଫୁଲ ଗୁଡ଼ ହୋଇଛି । ଧୋବ ଫର ଫର ଲୁଗା । ମୀଠ ଅମୀଠ ଏକାକାର ହୋଇଛି, ଧୂଳବୁଉ ଗ୍ଲଡ଼ି ମଣିଷ ହୋଇଛି ପିପାସା । ଉନ୍ମତ୍ତତର ଆନନ୍ଦ କଣ ସେ ଜାଣେ ନାହିଁ । ଦନସାକ ମଇଳା କାମରେ ସଢ଼ି ପଚ, ସହରେ ନୂଆ ହେବାକୁ ତାର ମଡ଼ାବାଟ ଏହ ।

ଶସ୍ତା ବାସ୍ନା ପବନରେ ଉଡ଼ୁଛି ।

ଅନ୍ଧାର ଭିତରେ କଲବଲ ହୋଇ ମଣିଷର ସକାମକ ତୃଷ୍ଣା । ଗ୍ଲହୁଁ ଗ୍ଲହୁଁ ମନ ଚଞ୍ଚଳ ହୁଏ, ପାଦ ଟଳେ ।

ଏମିତ ଗଳିରେ ରଙ୍ଗ ତାଲମ ହୋଇଛି । ପୁନର କେବଳ ପ୍ରବେଶିକା ।

"ଦେଖୁଚୁ କେତେ ଲୋକ—"ରଙ୍ଗ କହୁଲା । "ଚଲ୍ଲେଇ ଦେବ କଏ କଏ ? ଗ୍ଲଲ୍ ଦେଖିବୁ ।" ଦୁଲୁ ଦୁଲୁ ଗ୍ଲତ । ଅଜଣା ଆଶଙ୍କା । ପୁନ କହୁଲା—

"ଥାଉ, ବେହେଲ ହ' ନା । ଯିବା ଘର ।" ରଙ୍ଗ ବଡ଼ ପାଟି କର ହସିଲା । କହଲା—"ଚଗ୍ଭିଲେ କଣ ଦୋଷ ଅଛୁ ? ଚାଲ୍ ନୁ—" ରଙ୍ଗର ହାତ ଧର ପୂନ କରକୁ ଘୋସାରଲା । କହଲା—"ତୁ ସେମିତ ହ'ନା ।" କଲକଲେଇ ରଙ୍ଗ ହସିଲା । ପୂନର ଗ୍ଭତ ଥରଯାଉଥାଏ । ରଙ୍ଗ ପାଟିରେ ହାତ ମାଡ଼ଦେଇ କହଲା —"ଧାଡ୍ଡେର, ଘୋଡ଼ା ପର ହସୁଚୁ ! ଦେଖିବୁ ସେଠି କଏ ସବୁ—"

"କଏ ସବୁ ତୋ ଗୁରୁଗୋସେଇଁ ! ଆଲେ ଡର୍ ନାହିଁ ମ, ସେମାନେ ଭଲ ଲୋକ । ଆମ ପର ଅଛୁଆଁ ନୁହନ୍ତ ।" ପୂନର ମୁଣ୍ଡ ଥାପଡ଼େଇ, ଆଉଁସି କହଲା—"କେହ ଖାଇଯିବେ ନାହିଁ ମ, ସମସ୍ତେ ଉପକାରିଆ । ହାଃ—ହାଃ—ହାଃ—ଦେଖ୍ ସ୍ୱାଡ଼ୁକୁ, ଚଙ୍ଗ ଚଙ୍ଗ ହେଲେଣି । ସକାଳେ ଭିକ ମାଗିଲେ ମୁଠାଏ ଦେବେ ନାହିଁ, ଗ୍ଭତରେ ମଦ ଦୋକାନରେ ପଇସା ଗଉଣିରେ ଅଜାଡ଼ି ଦେବେ । ସେମାନେ ନ ଦେଲେ ଆଉ କଏ ଦବ ? ଖାଲି ମଇଲା ଗଣି ଗଣି ତୁ ପଇସା କମେଇବୁ ଯେ, ସେଥିରେ ଲୁଗାପଟା ହବ, ଅଲଙ୍କାର ହବ, ସବୁ ହବ ? ଗ୍ଭତରେ ଜାତ ନାହିଁ ମ, ତୁ ଗ୍ଭନଆଁ ହଉଚୁ କାହିଁକ ?—"

ଭଡ଼ ଓଟାର ହୋଇ ପୂନ ଦୂରକୁ ପଳେଇଲାଣି । ସାଙ୍ଗୀମାନେ ଦଉଡ଼ି ଦଉଡ଼ି ପଛୁଆଗଲେ । "ହେ ରଙ୍ଗ, ତୋ ଗୋଡ଼ତଲେ ପଡ଼ୁଚ, ତୁ ଯା । ମତେ ଛାଡ଼ି ଦେ, ମୁଁ ଘରକୁ ଯାଏଁ । ମୋ ବୋଉ ଉଠିବଣି—"

"ଆଚ୍ଛା ବୋଉ ! କ ଲୋ ଦନେ ତ ବାହାରଚୁ, ଅଧାବାଟରେ ବୋଉକୁ ଡକାପାରୁଚୁ କାହିଁକ ଭଲା ! ହଉ, ଆଉ କଛୁ କହବ ନାହିଁ । ଗ୍ଭଲ୍ ବୁଲିଯିବା ।"

ଟଗ୍ଭ କହଲା—"ରଙ୍ଗ କଥା ଶୁଣି ତୁ ଚଡ଼ୁଚୁ ? ହେଲେ, ଏ ରଙ୍ଗ ପାଟିକ ବାଡ଼ ବନ୍ଧା ନାହିଁ । ତୁ ମୋ ସାଙ୍ଗରେ ଆ—"

"ହଁ ଲୋ, କଅଁଳକନ୍ଥ, ତୁ ଘର ଭଲଟାଏ !" ରଙ୍ଗ କହଲା—"ଅମଣିଆଁ ବଳଦକୁ ମଣ କରବ ନାହିଁ ? ପାତକ ପଡ଼ବ ? ହେଇ ପୂନ, ତୁ ଶୁଣ୍ ମୋ କଥା । ବୋଉ ମୁହଁକୁ ଅନେଇ ବସିଥିଲେ, ବସିଥିବୁ । ନାକକୁ ନୋଲକ, କାନକୁ ଝୁମ୍ପା ଝଗ୍ଭ, ଦେହକୁ ଭଲ ଖାଇବା, ଭଲ ପିନ୍ଧିବା—କୋଉଠୁ ଆସିବ ଏ ସବୁ ?"

"ପୁଣି କହଲୁ—"ପୂନ ବକଳ ହେଲା ।

"ଅଇଗ୍ଭ ମୁଁ କହୁଚ, ପଛେ ତୁ ମତେ କହବୁ । ଦେଖିଚା ଦେଖି, ପକା ବାଜ—"

ଟଗ୍ର କହିଲା—"ରଙ୍ଗର ଖରି ବୁଦ୍ଧି, ବାର ବଳଦ ପଟେ ।"

"ତୋର ଆଦୌ ଅଛି କି ? ବୁଦ୍ଧି ନ କଲେ କିଏ କର ଧରି ଦବ ? ଆମ ସାହା ଆମେ ନିଜେ । କଡ଼ାକେ ମାରି, କଡ଼ାକେ ତାରି, କଡ଼ାକେ ଘର ଦୁଆର କରି । ଆ ପୁନି, ଇଆଡ଼େ ଯିବା । ଦେଖିଲୁ, ଧୋବ ଧାଉଳିଆ କେତେ—"

ଟଗ୍ର କହିଲା—"ଭଲ କାଠ ।"

"ହଁ, ଭଲ କାଠ ।" ରଂଗ ହୋ ହୋ ହସିଲା । "ଭଲ କାଠ ଦେଖିଲେ ଆଗ ତା କାଠ ବୁଡ଼େଇବାକୁ ମନ ହୁଏ । ତୋ ମନ ହଉନାହିଁ ? କାଠ—ଥୁଃ ! କାଠ ମୁଣ୍ଡରେ ଗୋଡ଼ ଥୋଇବୁ, ଚାଲ୍ ଯିବୁ ।"

"ଧେତ୍, ହେରେସୀଟା" ଟଗ୍ର କହିଲା । "ତାଲିମ୍ କରିବୁ କଣ ନା ଭଡ଼କେଇବୁ— !"

"ହଉ, ହଉ, ଥଏ ଧର୍ ।"

ଏଇ—ମଦ ଦୋକାନ । ଭିତରେ ଆଲୁଅ ପାଖେ ପୋତକ ବେଢ଼ିଲା ପରି ଲଗିଛି ଗହଳି । ଗଡ଼ାଗଡ଼ି ଧରାଧରି । ଗାଳି ଫଉକଡ଼ି । ଆଲୁରି ବାଲୁରି ହୋଇ ମେଞ୍ଚା ମେଞ୍ଚା ମଣିଷ ।

ଏଇ—ମଦ ଦୋକାନ । ଦିନଯାକର ରୋଜଗାର ଝାଡ଼ିଝୁଡ଼ି ଦେଇ ତୋଳେ ପିଇଦେଲେ, ହୋସ୍ ବୁଡ଼େଇ ହୁଏ । ଆଶାଭଂଗା ବାସ୍ତବ ଜୀବନକୁ ପିନ୍ଧାଲୁଗା ପରି କରିକୁ ଫୋପାଡ଼ି ଦେଇ କାଳ୍ପନିକ ଧାରଣାରେ ବଞ୍ଚି ହୁଏ । ନିର୍ଦ୍ଧନ ମହାଜନ ପରି କଥା କହେ । ହୀନବଳ ବାହାସ୍ଫୋଟ ମାରେ । ନଏନ୍କୋଣର ଅଗନା କାଦୁଅରେ ଶୋଇ ରହି ସ୍ୱପ୍ନ ହୁଏ, ଦୋମହଲା ଉପରର ଜୀବନ । ଲୁଖୁରା ମୁଣ୍ଡର ମନ ତୃପ୍ତି ପାଇଁ ବଡ଼ଲୋକ ଦୁନିଆ ମଦ ଦୋକାନର ବିଧାନ ଦେଇଛି । ସବୁ ହିତ ପାଇଁ ।

ରଙ୍ଗ କହିଲା—"ଦେଖୁଚୁ ? ଯିବା ଚାଲ୍ ।"

ପୁନି କହିଲା—"ଫେରିଯିବା ଚାଲ୍ ।"

ଟଗ୍ର କହିଲା—"ଆମେ ଅଛୁ, ତୁ ଯା ରଙ୍ଗ; ଚଞ୍ଚଳ ଆସିବୁ ।"

ରଙ୍ଗ ଚାଲିଗଲା । ଓଟାରି ହୋଇ ଗଲା ପରି ଧାଇଁଛି ସେ । ପୁନି କହିଲା—"ଆମେ ଆଉ ଏଠିଟାରେ କାହିଁକି ବସିଥିବା ଟଗ୍ର ? ଚାଲ୍ ଘରକୁ ଯିବା—"

ଟଗ୍ର ଅନ୍ୟମନସ୍କ ହୋଇ କହୁଥାଏ—"ଦେଖ୍, କେମିତି ହଉଚନ୍ତି ସେଗୁଡ଼ାକ—ବାହା ବାହା, ବାହା ବାହା; ସ୍ୱାଦ ନାଁ ସେ ମଦ ! ଆମେ ଟିକିଏ

ଅଳ୍ପଅଳ୍ପ ବାହାରରେ ଅଗଛା ଆସି ସେଉଥିବେ ।" ଟେଲ୍ କଥା ଶୁଣୁ ନାହିଁ । ଏକା ଦୃଷ୍ଟିରେ ସେହିଆଡ଼େ ଅନେଇଛି । "ହେଇ ଦେଖ୍—ଦେଖ୍ ଲୋ—।" ଟେଲ୍‌ର ମନ ହେଉଠି ଲାଗିଛି ।

ହେଠି ପାଗଳାମି ଘୋଟିଛି । ଜଣେ ପିଇବାପିଲେ ତାହାର ପକେଇ ସମସ୍ତେ ତା ଉପରକୁ ମାଡ଼ ଯାଉଛନ୍ତି । ମାମୁଁ—ବାପା—ମଉସା—ଶଳା—ସବୁ ସମ୍ବନ୍ଧ ଲୁହାଚୋଡ଼ । ଅଚେତ୍ନା, ଚେତ୍ନା ହୋଇଛନ୍ତି । ଏକାଠି ଦୁଦୁ ପଣ, ଧସ୍ତାଧସ୍ତି ହୋଇ ଅନ୍ଧାରରେ ଗଡ଼ିବାକୁ ପଡ଼ିବ । ବାରମ୍ବାର ମଦ ଠେକ ପାଖେ ମଣିଷପଣିଆର ପରୀକ୍ଷା ହୋଇ ବାରମ୍ବାର ସେ ଲୁଣ୍ଠିତ ହଉଛି । ସ୍ୱାର୍ଥ ସିଦ୍ଧିକ ପାଇଁ ସେ ପର ଉପରେ ହାଣ ମାରେ । ସ୍ୱାର୍ଥ ସରିଗଲେ ଧଏ ମଦଘଡ଼ାକୁ ଗଡ଼େଇ । ବାରମ୍ବାର ଆପଣାକୁ ଜାହିର କରୁଛି ଧ ରୋଡ଼ିଆ ପଶୁ । ତାର ଖୋଲା ଗ୍ଲାସ, ଅଶ୍ଳୀଳ ଆଖି । ତାର ଧରର ଚିତ୍କାର, ଅନ୍ଦରର ବକଟାଳ ସ୍ୱର । କେବଳ ମଦ, ମାଇକିନା, ପେଟ । ତାର ପ୍ରଦର୍ଶନୀ ସଜେଇବା ପାଇଁ ମଦଦୋକାନ ବସା ହୋଇଛି ଠିକଣା ଜାଗାରେ । ହାଉ ହାଉ ଲାଗିଛି ।

"ଟେଲ୍—"

"କାହିଁକି ଭଲ୍ଲୁକ ହଉଚୁ ? ସ୍କୁଲ୍ ଭିତରକୁ ଯିବା; ରାତି ହୋଇଗଲାଣି—"

"ଆଉ ପାରିବୁ ନାହିଁ ! ସ୍କୁଲ୍ ଘରକୁ ଯିବା ।"

"ସେ କ ଆଇଲେ ନାହିଁ । ଆମେ ଗଲେ କଣ ମଜା ଅଛି ?"

ପୂଜା ହସିଲା । କହିଲା—"ପଇସା ଖଲଖଲ ହଉଥିବ କୋଠି !"

"ପଇସା କଣ ହବ ଲୋ ? ମିଶିପେ ଦେବେ, ଆମେ ମାଇପେ କରୁଁ । ଆଲେ ଓଲା, ବ ଜଣ ମଦୁଆଙ୍କ ଅଣ୍ଟା ଦବାଣ୍ଡିଲେ ପଇସା ହେଇଗଲା ।"

"ମଦୁଆ ଭୁଣ୍ଡେଇ ଥାଇଲେ ?"

"କଣ ହେଇଯିବ ? ଦେହଟା ଛୁଣ୍ଡିଯିବ ନା ଭାଙ୍ଗିଯିବ ? ଫାଙ୍କୁଲି ହଉଚୁ ! ଆ—"

ପୂଜା ଟେଲ୍ ସଙ୍ଗେ ହିଙ୍କା ଓଟେଇ ହେଉ ହେଉ ଟେଲ୍ ଫିଟି ଚାଲିଗଲା । ଏକୁଟିଆ ପୂଜା ଅନ୍ଧାରରେ ଠିଆ ହୋଇ ଦେଖୁଛି । ଟେଲ୍‌କୁ ଘେରିଗଲେଣି, ମଦ ପେଇ ଦେଉଛନ୍ତି, ଶୂନ୍ୟେ ଶୂନ୍ୟେ ଟେକି ନେଉଛନ୍ତି । ଟେଲ୍ ଡରୁ ନାହିଁ, ଓଲଟି ହସୁଚି, ପାଟି କରୁଚି, ଫୁଲକମ ହେଇ ନାଚୁଚି । ଟେଲ୍ ଅସମ୍ଭାଳ ହେଲାଣି । ଟେଲ୍ ଆଉ ଦଣ୍ଡୁ ନାହିଁ ।

ପୁନି ଅଛୁ । ଚଞ୍ଚଳ ମନ । ମଦ ପିଇ ନାହିଁ, ନିଶା ଧରୁଛି । ମନେ ପଡ଼ୁଛନ୍ତି, ବୋଉ—ଅଘୋରବାବୁ—ସନିଆ—। ଟସ ପଛରେ ଯାଇ ପାରିଲା ନାହିଁ । ବାଟବଣା ହେଲା ପରି ପାଦ ପଡ଼ିଗଲା କୁଆଡ଼େ କୁଆଡ଼େ । ଚାରିଆଡ଼େ ଅନ୍ଧାର ।

ଆଉ ରାସ୍ତାରେ କଜଳମଣି ଘର ପଡ଼ିବ । କଜଳମଣି ତାକୁ ଭଲପାଏ । ଗାଢ଼ ଅନ୍ଧାର । ଦୂରରେ ଚଢ଼କା କାଚ ଲାଗିହୋଇ ଅଣ୍ଟା ଜଳି ପରି ମ୍ୟୁନିସିପାଲିଟିର ଲାଲ୍‌ଟେଣ । ଅନ୍ଧାର ବହଳ ହୋଇଛି । କଜଳମଣିର ମାଟିଘର କାନ୍ଥରେ ସାମ୍ନାପାଖେ ଅଗ୍ରୀ ଚୂନ ନେସା ହୋଇଛି । ଧଉଁ ଧଉଁ ଦିଶୁଛି । ଦୁଆରମୁହଁରେ ବୁଢ଼ିଆଣୀପରି ମେଞ୍ଚା ହୋଇ ବସିରହିଛି କଜଳମଣି । କଳା ଅନ୍ଧାର ପୁଳାଏ ହଲିଗଲା ।

"ହଇ ଲୋ ପୁନି—"

ଚମକି ହେଉ ନାହିଁ । ବେଣୀ ପକେଇଚି, ଅଳଙ୍କାର ଓହ୍ଲେଇଚି, ଫୁଲ ଗୁଡ଼େଇଚି । କଜଳମଣି ଭିତରୁ ହାଲୁକା ମଦ ବାସ୍ନା । ଦୁଇ ବାହା ଧରି ଭିତରକୁ ଓଟାରି ନେଇଗଲା ।

"ହଇଲୋ ପୁନି, ବାଟକୁ ଅନେଇଁ କାହା ପାଇଁ ବସିଥିଲି ମୁଁ; ତୁ ଆଇଲୁ ! କାଉ ବୋବୋଉଚି ଲୋ, କାଉ ବୋବୋଉଚି—"

"ରାତିରେ କୋଉଠୁ କାଉ ବୋବେଇଲା ବା ?"

"ନଇଲେ କୋଇଲି ବୋବୋଉଚି ଲୋ ! ତୁ ଆଇଲୁ, ଆ, ଆ—"

ରନ୍ଧାଘରୁ ମାଉଁସ ବାସୁଚି । "କି ଲୋ କଜଳମଣି, ଶାଗୁଆଡ଼ କରିଚୁ; କଏ କୁଣିଆଁ ଆସିବ କି ଲୋ ?" କଜଳମଣି ଆଉଁସି ପକାଉଚି । "କୁଣିଆଁ ଆଉ କଏ ? ତୁଇ ମୋ କୁଣିଆଁ ଲୋ । ଆ, ଆଗ ଖାଇ ଦେ ଦିଟା । ସୁଖିବୁ ଆ—"

"ମଲି, ଖାଇବି କଣ ମ, ବୋଉ ଏକୁଟିଆ ଥିବ—"

"ଇଲୋ, କୋଉ ବୋଉ କାହାର, କୋଉ ବାପା କାହାର ଲୋ ? ଆମ୍ଭାକୁ ଶଲେ ସବସିଦ୍ଧି । ଦିନସାରା ଖଟଣି, ଖରା, ଧୂଳି । ସଞ୍ଜରେ ଟିକିଏ ମଦ-ମାଉଁସ ଖାଇବାକୁ; କଣ ନା ବୋଉ ଆକଟିଚି ! ଆ, ତୁ ସୁଖିବୁ ଆ—"

କଜଳମଣି ଟାଣୁଛି ।

ଘୃଣ୍ୟ ଦଉଡ଼ କଟ କଟ ଡାକୁଛୁ ।

କଏ କୁଆଡ଼େ ଅଛୁ ?—କେହି ନାହିଁ ।

କେଡ଼େ ସୁନ୍ଦର ଏ ଘର ! କାନ୍ଥଯାକ ଛବିମସ୍ତ, ପାନ ଦୋକାନଠୁଁ ବଳି । ଥାକକୁ ଥାକ ବୋତଲ । ଅଲଗୁଣିରୁ ଧାଡ଼ି ଲମ୍ବିଛୁ ଭଲ ଲୁଗା ।

ଭଲ ଘର । ଭଲ ଖାଦ୍ୟ । ବାସ୍ନା ମାଂସ ।

ନରମ ଶେଯ ।

"ପିଇଦେ, ପିଇଦେ । ଭଲ ଜିନିଷ ।"

"ଶୋଇପଡ଼ । ତତେ ନିଦ ମାଡ଼ୁଚି । ଖ୍ୱାସ ନିଦ ଝାଙ୍କୁଚି । ହେଇଟି ପଗ୍, ଆଖି ଘୋଡ଼େଇ ହୋଇ ପଡ଼ିଲଣି । ଶୋଇପଡ଼ । ତୋ'ର ଘର ମ—"

ଦୁନିଆଁ ଜଳିଉଠୁଛି ।

ଦୁନିଆଁ ଦୋହଲୁଛି । ଉମ୍ଫୁମ୍ ଚଢ଼ିହି ଯାଉଛି ଦେହଯାକ ।

ଘୃଣ୍ୟ ଦଉଡ଼ କଟିଛୁ ।

କଏ ସବୁ ଆସିଲେ । ଜୋତା ଶବ୍ଦ ହେଉଛି । ଝସ ଝସ ଜାମିକ । କଣ ଶୁଣି, କଣ ଦେଖି ମନଟା ନଠେଇ ହେଉଛି । ଘରେ ଆଲୁଅ ଜଳୁଛି । କଜଳମଟି ହସୁଛି । ମୁଣ୍ଡକୁ କୋଡ଼ରେ ଧରି ଟେକି ଦେଉଚି । କଅଁଳେଇ ଜାକୁଚି । ମୁହଁପାଖେ ବୋତଲ ଟେକି ଧରଚି । "ପିଇ ଦେ, ଆଉ ଛୋକେ ତ ! ଦେ ବଳଦ ଟାଣି ଟୁଣି, ଆଉ ନ ଥିବ ଦୋହଲି ପାଣି । ଦେ ପିଇ ଦେ—" ଆହୁରି ନିଆଁ । ମୁହଁରେ, ମୁଣ୍ଡରେ । ଋକ୍ତଯାକ ଆଉଟା ନିଆଁ । ନଳଟଣଟା ନାଚୁଚି । କଜଳମଟି ନାଚୁଚି । କେତେ ଲୋକ ନାଚୁଚନ୍ତି । ପାଖକୁ ପାଖ ଘଷି ହୋଇ ଆସୁଚି କେତେ ମୁହଁ । କଜଳମଟି ଦେହ ଉପରେ କଣ ଛୁଟିଦେଲ, ମାଳ ମାଳ ଫୁଲ ଲମ୍ବେଇଦେଲ । ନରମ ବିଛଣା ଧୀରେ ଧୀରେ ଦବି ଦବି ଯାଉଚି କେଉଁ ପାତାଳକୁ । ଆଲୁଅ ଲିଭି ଯାଉଚି ।

ଏହି ଅଘୋରବାବୁ—ତାର ଦୁଇ ବାହାରେ ବନ୍ଧା—ଏହି ଯନିଆ—ଏହି ମୁଠା ଭିତରେ ତାର ସ୍ୱପ୍ନ—ଜାତି ନାହିଁ, ଅଜାତି ନାହିଁ, ହୁଡ଼ ବାଡ଼ ନାହିଁ । ସବୁ ବସ୍ତୁତ ।

କେତେ ବେଳ ମନେ ନାହିଁ । କଜଳମଟି ହଲେଇ ହଲେଇ ଉଠେଇ ଦେଲ । କହିଲ—"ଉଠ୍, ଘରକୁ ଯିବୁ ।"

ଚଞ୍ଚଳ ଚଞ୍ଚଳ ବେଶ ବଦଳେଇ ଦେଉଛି, ତରତର ହେଉଛି । "ଚାଲ୍, ମୁଁ ସାଙ୍ଗରେ ଯିବ ।"

ପାଦ ଟଳୁଥାଏ । ସେମିତ ଅନ୍ଧାର ରାତ । ସବୁ ନିସ୍ତଲ ପଡ଼ିଗଲାଣି । କୁକୁର ଭୁକୁଛନ୍ତି । କାହିଁ ଅଘୋର ? କାହିଁ ସଜନୀ ? ସେମିତ ଫାଙ୍କା ଫମ୍ପା ରାତଟାଏ, ଜୀବନର ଅଗଣିତ ରାତ ପରି ।

କାବା ଲାଗୁଛି । ଛିଣ୍ଡି ଦେଲା ପରି କଜଳମଣି । ଗଣ୍ଡିରେ ଫୁଲ, ମୁହଁରେ ମଦ । ସୁ'କଟିଏ ଧରେଇଦେଲା । ବୋଉକୁ କହିବୁ ନାହିଁ । ପଚାରିଲେ କହିବୁ— କାମ କରି କରି ମୁଣ୍ଡ ବଯୋଉଥିଲା ଯେ, ପଢ଼ଶାଘର ପିଣ୍ଡାରେ ଶୋଇ ପଡ଼ିଥିଲି । ଫେର୍ କାଲିକି ଆସିବୁ, ମୁଁ ଯାଉଛି ଏଁ ?—"

ଦୁଆରମୁହଁରେ ବୋଉ ଶୋଇଛି; ଝାଁ ଣ୍ଡିଲା । କେମିତି କରି ଲେଉଟେଇଲା । ଅନ୍ଧାର ଘରେ ଟଳି ଟଳି ପଶି ପୁଣି ବାଉଳା ଧରିଲା । ପୁନି ଶୋଇପଡ଼ିଲା ।

☐ ☐

## ତିରଣ

ଅଶ୍ୱନାଶବାବୁ ଘରକୁ ଆସିଥାନ୍ତି ।

ସ୍ତ୍ରୀକର ବାକରଙ୍କ ତରୁଆ ମୁହଁ । ଦୌଡ଼-ଧାପଡ଼ । ମଝିରେ ମଝିରେ ଗର୍ଜନ—ଅବେ ହରଆ, ଆବେ ମଧୁଆ ! ଦାଣ୍ଡ ଦୁଆରେ ମଟର ଶବ୍ଦ, ବୈଠକଖାନାରେ ଜନତା । ପ୍ରଚ୍ଛର କରୁଛି ସେହି କଥା—ଅଶ୍ୱନାଶବାବୁ ଘରକୁ ଆସିଛନ୍ତି ।

ଗୋରା, ସରୁଆ, ଡେଙ୍ଗା ଲୋକଟିଏ । ମୁଣ୍ଡ ଗ୍ରୁମୂକ ଚନ୍ଦା ହେଲଣି, ମୁହଁରେ ତେଜ ଅଛି । ଖାଲି ଦେହରେ ଘଡ଼ିଏ କାଳ ତେଲ ମାଲିସ୍ କରୁଥିଲାବେଳେ ସ୍ତ୍ରୀକର ଦେଖେ—ଖାଲି ହାଡ଼ କେଇ ଖଣ୍ଡ । ଗରମ ଦିନରେ ବି ଗାଧୋଇବାକୁ ପାଣି ଗରମ ହୁଏ । ଟିକିଏ ଡେରି କଲେ ସ୍ତ୍ରୀକର ବୁଝେ, ହାଡ଼ର ବଳ କେତେ । ଯଶୋଦା ବାଁରେଇ ହୋଇ ବଳେଇ ପରି ବୁଲେ । ଭିତରୁ ଗମ୍ଭୀର ଗଳାରେ ବାରମ୍ବାର ଡାକିବା ଆସେ - "ଯଶୋଦା, ଆଇଲୁ—ଯଶୋଦା ଗଲୁ— ।" ଭିତରୁ ଗମ୍ଭୀର ସ୍ୱର ପୃଷ୍ଠରେ ଯେପରି କ ବୁଝେଇ ଦେବାକୁ ଚାହେଁ —ପାଣ୍ଡୁ, ତୁମେ ଯାହା ପାଇଁ ନସର ପସର, ଆମେ ସେ କଥାଟି ଜାଣୁ— ।

ସେହି ବାଜେଣି ଘଣ୍ଟା । ବଡ଼ଘରର ଦୌଲତ ମନ୍ଦିରର ସବୁ ଛକ ସେ ନିୟନ୍ତ୍ରଣ କରେ । ଅଶ୍ୱନାଶବାବୁ ଦାଣ୍ଡଘରେ ବସନ୍ତି । ଟେବୁଲ୍ ଉପରେ ମୁଣ୍ଡ ଝୁଙ୍କି ହୋଇ ରହେ । କାଗଜପତ୍ର ଅର୍ଥ ଉପାର୍ଜନର ଅଜସ୍ର ସମସ୍ୟା । ଘରକୁ ଆସିଲେ ତାର ଯାବତ ଜଞ୍ଜାଳ ଅପେକ୍ଷା କରି ରହିଥାଏ । ଧୀରେ ଧୀରେ କାମ ତାଙ୍କୁ ଗ୍ରାସ କରେ, ହାଡ଼ କେଇ ଖଣ୍ଡ ସ୍ଥିର ହୋଇ ରହେ । ଇଞ୍ଜିନ୍ ଚିମ୍ନିର ପରି ପାଟିରୁ ସିଗାରେଟ୍ ଧୂଆଁ, ମୁହଁ ମେଘ ର ।

କଳ ଚଳେଇ ଅର୍ଥ ଉପୁଜାନ୍ତି । ତହିଁରେ ବାଗି ହେବାକୁ ବେଳ ନାହିଁ, ସୁଯୋଗ ନାହିଁ । ଖାଆନ୍ତି ଖୁବ୍ ଅଳ୍ପ, ପିନ୍ଧିବାରେ ନୂଆ ସୁଖ ନାହିଁ । ପ୍ରତ୍ୟେକ ଅବସ୍ଥିତ କଳର ତାଳରେ କାମ କରି କରି ସୁଖ ଯୋଗିବାର ଶକ୍ତି ହରାଇ ସାରିଛନ୍ତି କେଉଁଦିନୁ । ଅଙ୍ଗୁଷ୍ଠ କେବଳ ଯୋଟିଏ, ସମ୍ପତ୍ତି ବଢ଼ିବ । ସେ ବି ଜଣେ ନୀରବ କର୍ମୀ, ଜଣେ ସ୍ରଷ୍ଟା । ମୁହୂର୍ତ୍ତ ମୁହୂର୍ତ୍ତକର ପ୍ରସବବେଦନାରେ ଜନ୍ମ କରନ୍ତି ପୋଡ଼ା ଇଟା, ଚୂନ, ସିମେଣ୍ଟ । କାଗଜର ନୋଟ୍, ଚଳନ୍ତି ଟଙ୍କା ଏବଂ ସମ୍ପତ୍ତି ।

ସାଧନାରେ ବସନ୍ତ । ପିଠିଆଡ଼େ ଏଡ଼େ ବଡ଼ ସୁନ୍ଦର କୋଠା । ସେଠି ମାନମୟୀ ବେଶ ପିନ୍ଧି, ବେଶ ବଦଳାଇ ହାର୍ମୋନିଅମ୍ ଖୋଲି ଗୀତ ବୋଲେ । ଅଘୋରବାବୁ ରେଡ଼ିଓ ବଜାଇ ସମ୍ବାଦ ଶୁଣନ୍ତି । ନିଜେ ବଡ଼ଲୋକର ଉତ୍ତରାଧିକାରୀ ହୋଇ, ମନର ଖିଆଲରେ ବନ୍ଧୁମାନଙ୍କ ମେଳରେ ବଖାଣନ୍ତି ସମତାର ମତବାଦ । ସେଠି ଗ୍ଲୋ' ଓ ତାସର ସଭ୍ୟ ଆନନ୍ଦ । ତାଙ୍କର ମା ରମା ଆପଣା ସଂସାରର ସବୁ ଡୋର ହାତରେ ମୁଠେଇ ଗୃହ କ୍ଷଣକେଇ ଏ ଘରୁ ସେ ଘର ଭ୍ରୂଣି ବୁଲୁକେଇ ବୁଲୁଥାନ୍ତି, ରଡ଼ୁଥାନ୍ତି—"କଲେ, ଯଶୋଦା, କାହିଁକି ମାଣ୍ଡେଇଛୁ—" "ହେ ପୁଝାରୀ—"

ଅଭିନାଶବାବୁ ବସିଥାନ୍ତି । ଆଲୁଅ ଜଳୁଥାଏ । ପଙ୍ଖା ଘୁରୁଥାଏ ।

ଠଣ୍ ।

"ହଜୁର୍—"

"ମାଙ୍କୁ ସଲାମ୍ ଦେଓ— ··· ଆରେ ଝାନ୍ତୁ—ଯା'ତ, ମା'ଙ୍କୁ କହିବୁ ଟିକିଏ ଆସିବେ, କାମ ଅଛି ।"

"ହଜୁର୍— !" ପୋଷାକ ପିନ୍ଧା ଯୁଖାମୁହାଁ ଅର୍ଦ୍ଦଳି ତରତର ହୋଇ ଚାଲିଗଲା । ତଳର ଗାଲିଚା ଉପରେ ପାଦର ଶବ୍ଦ ନାହିଁ ।

ପୁଣି ଭାବନା । 'ସେ' ଆସିଲେ । କହିଲେ—"ଡାକୁଥିଲ !" "ହଁ, ବସ ।" ସ୍ତ୍ରୀଙ୍କୁ ମାନି ଚଳିବାକୁ ହୁଏ । ଦୁଇ ସ୍ୱାଧୀନ ମତର ସଂଘର୍ଷ ଲାଗିଲେ ଜିତାପଟ ହୁଏ ରମାଙ୍କର । ସ୍ୱାମୀଙ୍କୁ ଶାସନ କରିବାର ତୃପ୍ତି ଓ ସନ୍ତୋଷରେ ତାଙ୍କର ସ୍ୱାସ୍ଥ୍ୟର ପୁଷ୍ଟି ଘଟେ ।

ବାଁରେଇ ହୋଇ କହିଲେ—"ଶୁଣିଥିବ ତ ଶୈଳେନ୍ଦ୍ରବାବୁଙ୍କ ଝିଅର ବାହାଘର ହେଉଛି ।"

"କଣ ହେଲା ? ନିରୁପମାକୁ ଦେବାକୁ ପଡ଼ିବ କିଛି ଗୋଟାଏ, ଏଇଆ ତ ? ମୁଁ କଣ ସେ କଥା ବନ୍ଦୋବସ୍ତ କରି ନାହିଁ ? ସୁରଣା ଓଜନର ହୀରକସି କାନଫୁଲ, ଆଜିକାଲିକା ଫେସନକୁ ମାନିବ ଖୁବ୍ ସୁନ୍ଦର । ସବୁଦିନେ ନାଉଥିବ ।" ରମା ହସିଲେ । କହିଲେ—"ବରାଦ୍ ଦେଇ ଦେଇଛି । ସୁନ୍ଦର, ନୂଆ ଡିଜାଇନ୍ ।"

"ନିରୁପମା ବିଷୟରେ ଅଘୋରର କଣଥିଲେ କଣ ମନ୍ଦ ହୋଇଥାନ୍ତା ? କାଣ୍ଡ କାଣ୍ଡ କଲ ନାହିଁ । ଦାମ୍ଭୀ ତୁମେ ।" ରମା ଗମ୍ଭୀର ହୋଇଗଲେ

କହିଲେ—"ସେ ବିଷୟରେ ତର୍କ ଚଳିବ ନାହିଁ । ହଁ, ସେମାନଙ୍କର ବୋଧହୁଏ ସେମିତି ଇଚ୍ଛା ଥିଲା । ତୁମେ ତ ହେଣ୍ଡି ମାରିଥାନ୍ତ କାରଣ, ଶୈଳେନ୍ଦ୍ରବାବୁଙ୍କର ତମର କ୍ଷୀର-ନୀର । ଲାଭଟା କଣ ହେଉଥାନ୍ତା ? ପୁଅ ରମେଶ୍ ଥାଉ ଥାଉ, ଶୈଳେନ୍ଦ୍ରବାବୁ ତମ ଘରକୁ ଉଜାଡ଼ି ବୁହାଇ ଦେଇ ନ ଥାନ୍ତେ । ଅଘୋରର ବସ୍ତୁସ ବଳେଇ ଯାଇ ନାହିଁ ।"

"ନିରୂପମାଟି ଭଲ ପିଲାଟିଏ ।"

"ତା ହେଲେ ମୁଁ ଯାଉଛି । ନା ଆଉ କଣ କହିବ ?"

ପର୍ଦ୍ଦା ସେ କରେ ମୁହଁ ଦେଖାଇ ଦେଇ ମାନମୟୀ ପୁଣି ଲୁଚିଗଲେ । ଠିଆ ହୋଇପଡ଼ି ରମା କହିଲେ—"ମୁଁ ଯାଉଛି ।"

"ବସ ଆଉ ଟିକିଏ । ନିରୂପମା ବାହା ହେଇ ଯିବ । ମାନ୍ନ ପାଇଁ ମୁଁ ପାତ୍ର ଠିକଣା କରିଛି, ତୁମେ ମତ ଦେଲେ ହେଲା ।"

ରମା ହସିଲେ । କହିଲେ—"ସବୁ ଚିଠିରେ ତମର ଗୋଟାଏ ଲେଖାଁ ନୂଆ ପାତ୍ର ଥାଏ ।"

"ନା, ନୂଆ ପାତ୍ର ନୁହେଁ, ଯାହା କଥା ଲେଖିଥିଲି । ସୁକର କରେ ।"

"ସୁକର କରେ, ଛେନାଗୁଡ଼ କରେ ! ଜମିବାଡ଼ି ଘର ଦୁଆର ନାହିଁ । ସୁକର ଚାଲିଗଲା ଗ୍ରୁଇ । ହନ୍, ତୁମେ ବାପା, ତୁମେ କର୍ତ୍ତା । ଝିଅଟାକୁ ଭସେଇ ଦିଅ ଯଦି ଦିଅ । ମୁଁ ଯାଉଛି ।"

"କଣ ତମର ମନରେ ଅଛି କେଜାଣି ! ଝିଅ ବାହାଘର ନାଁ ପଡିଲେ ତମେ ଚିଡ଼ କାହିଁକି ?"

"ଆଚ୍ଛା କଲି, ବେଶ୍ କଲି—" କମ୍ପି କମ୍ପି ରମା ଚାଲିଗଲେ । ପର୍ଦ୍ଦାବାଟେ ମାନମୟୀ ଦେଖିଲା, ବୋଉ ଆସୁଛି । ଏମିତି ବୋଉ ଦେହକୁ ରାଗ ଚଢ଼ୁଟେ । ଗୁହୁଁ ଗୁହୁଁ ଭିତରେ ଧଳା ତାତି ପୂରିଯାଏ ।

ବାପା ବସିଛନ୍ତି । ଜୋର୍‌ରେ ସିଗାରେଟ୍ ଫୁଙ୍କୁଛନ୍ତି । ବାପାଙ୍କର ରାଗ ଏହିପରି; କିନ୍ତୁ ସେଥିରେ କିଛି ଫଳ ନାହିଁ, ବୋଉ ଜାଣିଛି । ସବୁ ଥର ଜିତେ ।

ବାହାଘର । ଶୁଣିବାକୁ ଭଲ ଲାଗେ । ଉପରେ ଉପରେ ସ୍ୱପ୍ନର କଅଁଳ ସରରେ ଭରି ଦେଇ ଦୂରର କୁହୁଡ଼ି ଭିତରକୁ ଭସିଯିବାକୁ । ଦୂରର କାହାଣୀ ସେ । ଶୁଣିବାକୁ ଭଲ ଲାଗେ । ସବୁ ଭାବ ଭାବ ଉଡ଼ି ଚାଲିଯାଉଥିବ, ରହିଥିବେଁ ରକ୍ତମାଂସର ମଣିଷ ।

ବାପା ବସି ଭାବୁଛନ୍ତି । କରୁଣ ମୂର୍ତ୍ତି । ସମାଧିସ୍ଥ ମନ ।

କଣ ଭାବୁଛନ୍ତି ବାପା ?

ଠଣ୍ ।

"ହଜୁର୍ –"

"ମାଙ୍କୁ ଡାକ ଦେ ।"

"ହଜୁର୍ — !"କେମିତି ନଫର ଫସର ହୋଇ ଅର୍ଜ୍ଜଳି ଛୁଟିଛି । ବାପାଙ୍କ ପ୍ରତି ସମ୍ଭ୍ରମ, ବୋଉ ପ୍ରତି ହିଂସା । ବାପାଙ୍କୁ ସାନ କରିଦେବାକୁ ବୋଉକୁ ଖୁସି ଲାଗେ । ମାନମୟୀ ଗଲା । ବୋଉ–ଅର୍ଜ୍ଜଳିକୁ ହୁରୁଡ଼ାଉଛନ୍ତି— "ଯା, ଭାଗ୍ !" "ହଜୁର୍ !"

ବୋଉର ରାଗ ତରଳ ନାହିଁ । ବୋଉ ଦେହରେ ଲଟେଇ ପଡ଼ି ମାନମୟୀ କହିଲା— "ବୋଉ, ମତେ ଭୋକ କଲାଣି ।"

ରାତି ମୋଟେ ଆଠଟା, କିନ୍ତୁ ମାଙ୍କୁ ଧ୍ରୁବ କରିବାକୁ ମନ୍ତ୍ର ଏହା ହିଁ ।

ମୁଣ୍ଡ ଆଉଁସି ରମା କହିଲେ— "ଭୋକ କରିବ ନାହିଁ ! ତୋର ଏବେ କୋଉ ଖିଆଟା ଅଛି ?"

"ବୋଉ, ଦଶଟା ଟଙ୍କା, ମୋ ରାଣଟି ।"

"ଓ, ଏଇଥିପାଇଁ ଏତେ ଅଳି ! ଯା ଯା; ଫୁଲେଇଟା ।"

"ରୁ କଣ ଭାବକୁ ତୋର ପଇସା ପାଇଁ ଆମେ ତତେ ଏତେ ଭଲପାଉ ?"

କାହିଁକି କହିଲା ? କେମିତି କହି ହୋଇଗଲା । ବାଁରେଇ ହୋଇ ବୋଉ ମୁହଁକୁ ଅନେଇ ଦେଖିଲା, ଆଶ୍ଚର୍ଯ୍ୟ ହୋଇ ସେ ଚାହିଁଛନ୍ତି । ଅଳି କଲା— "ଦେ, ଦେ— ।"

"ଓହୋ, ଭାଇଠୁ ଶିଖିଚୁ କି ? ଯା ପୁନାଟି ପରା; ପଛେ ନବୁ ।"

ଭାଇର ବହିରୁ ଯୋଧା ଚକ୍ଷୁତା ସବୁଦିନେ ଉଣ୍ଡଲା । ପ୍ରକାରାନ୍ତରରେ ସେଠିକି ଭାଇକୁ ବୁଝାଇଦେବା ଲାଗି ଭାଇର ବସିବାଘରକୁ ପଶିଗଲା । ହଠାତ୍ ହୋ ହୋ ହସ । ଭୂତ ଦେଖିଲା ପରି ମାନମୟୀ ଦେଖିଲା, ମୁହଁଟିକୁ ତଳକୁ ପୋତି, କୋଡ଼ରେ ଟୋପିଟି ଧରି, ସୁହ୍ ପିନ୍ଧି, ଝାଳେଇ ବସିଛି ଯେ; ସେହି ସେ ନଥା ହାକମ । ଯେ ଡ଼ାଚଢ଼ା ଶିଖିବାକୁ ଏହି ଚୋଟକୁ ଆସେ । ମା ଲୋ—ଏହି କଣ ସେ !

ପଦାକୁ ଚାହିଁ ଆସିଲା, ଅପେକ୍ଷା କଲା । ମନେ ମନେ ଭାବିନେଲା, କେମିତି ଘୋଡ଼ାର ବେକକୁ କୁଣ୍ଢେଇ ଧରି, ସେ ଘୋଡ଼ାର କଦମ୍ ଦୌଡ଼ା ଚାଲିଯାଏ । ଭିତରୁ ବାରମ୍ବାର ହସ ଶୁଭୁଛି । ଫଳକଫଳକ ଖୁର ଧାର ପରି କଥାର ମର୍ମ ଛିଣ୍ଡି ହୋଇ ଫଳସୁଛି । ସ୍ତ୍ରୀ, ସୁରବାବୁ ଓ ଦଳ ହସରେ ହସରେ ତାଙ୍କୁ ହାଣି ସାରିଲେଣି ।

ଖଟ୍ ଖଟ୍ ଜୋତା ଶବ୍ଦ । ଅତିଥି ବିଦାୟ ହେଲା ।

ଆଉ ସେ ଆସିବ ନାହିଁ ବିଚରା । ଗୋଟାଏ ସୂର୍ଯ୍ୟ ଅସ୍ତ ହେଲା ।

ଦୀର୍ଘଶ୍ୱାସ ଛାଡ଼ି ମାନମୟୀ ଲେଉଟିଗଲା ତାର ହାର୍ମୋନିୟମ୍ ପାଖକୁ ।



# ଏକତିରିଶ

ଏ କଣ ହେଉଛି ? ଅନ୍ଧାର ସେ କରେ, ସରୁ ଗାରଟିଏ ପରି ଉଠି ଆସୁଛି ଟିକିଏ କ୍ଷୀଣ ଜହ୍ନ । ରୋଷେଇଘରେ କିଏ ଚୁଲି ଫୁଙ୍କୁଛି । କେଉଁ ପହରର ଶୀତଳିଆ ପାଉଁଶ ତଳୁ ଝିକିମିକି କରୁଛି ରଡ଼ ନିଆଁ ଟିକିଏ । ଫୁଙ୍କ୍—ଫୁଙ୍କ୍—ଆହୁରି ଫୁଙ୍କ୍—ଯଶୋଦା ଭୁଟୁରୁ ଭୁଟୁରୁ ହେଉଥାଏ । ଫୁଙ୍କ୍, ଜଳିଉଠ୍—ଆହୁରି ଫୁଙ୍କ୍ ।

ଏଇ ନିଆଁ ଦୁନିଆଯାକ ଚହଟିଯିବ--ରୋଷେଇଘର ଆଲୁଅ ହେବ ସମସ୍ତଙ୍କ ପାଇଁ—ଆଖିକି ଦିଶିବ ଥାକ ଥାକ ହୋଇ ଖାଦ୍ୟପଦାର୍ଥ ସଜା ହୋଇ ରହିଛି, ଶିକାରେ ଝୁଲୁଛି । ଟୋକେଇ, ବାଉଁଶିଆ ସବୁ ଭର୍ତ୍ତି । ତେବେ ଅଭାବ କଣ ? ଚୁଲି ଜାଳ, ହାଣ୍ଡି ବସା, ରାନ୍ଧ, ଖାଅ—ସମସ୍ତଙ୍କ ପାଇଁ ମୁଠିଏ ମୁଠିଏ—ଏଇ ଦୁନିଆ ଗୋଟାଏ ବଡ଼ ରୋଷେଇଘର । ଫୁଙ୍କ୍—ଫୁଙ୍କ୍—ଚୁଲି ଉପରେ ବସି, ଜହ୍ନକୁ ଦେଖି ତାଳିମାରି ଯଶୋଦା ହସୁଥାଏ ।

ଏଇ ସ୍ଥିର ସ୍ୱପ୍ନରେ ତାର ଯାଉଡ ସମ୍ଭାଳିଥିବା ମନର ତଳଟା ତଳ ଉପର ହୋଇ ଆଉଣ୍ଡି ହୋଇଯାଏ । ପାହାଡ଼ୀ ଯଶୋଦା ମିଛିମିଛିକିଆ ପାଗଳ ହୁଏ ।

ଅନେଇଁ ଅନେଇଁ ସ୍ୱପ୍ନ ବଦଳିଗଲା । ପରିଷ୍କାର ହୋଇ ନିଆଁଟା ଉଠିଗଲାଣି । କାହିଁ ରୋଷେଇଘର, କାହିଁ ଦୁନିଆର ଭଣ୍ଡାର ! ମନଇଚ୍ଛା ରାନ୍ଧି, ପେଟପୂରା ଖାଇବାକୁ ଭାତ ଗଣ୍ଡିଏ—କାହିଁ କଣ ? ଚଉଦିଗ ଫାଙ୍କା । ନଈ ସେପାରି ଅନ୍ଧାର ତୋଟା ଉହାଡ଼ରୁ ଚଉଠିର ଜହ୍ନଟା ଉଠୁଛି । ଦେହ ଶିର୍ ଶିର୍ ହେଉଛି । ବକା ପରି ଚାହିଁଲାବେଳକୁ ବୃଥା ଭସ୍ମ ।

ରୋଷଘର ନୁହେଁ, ଚୁଲା ମଶାଣିଟାଏ । କିଏ କାଠ ଲଦି ଦେଇ ଯୁଇ ଲଗାଉଛି । ଧୀରେ ଧୀରେ ଜଳିଉଠୁଛି । ଉପାସୀ ଦୁନିଆର ଚୁଲିଜଳା ନୁହେଁ, ନିଷ୍ଠୁର ବିଧାତାର ଯୁଇଜଳା । ହେଉ, ତାର ଆପଣା ଭିତରେ କେଉଁଠି ନିଆଁ ଲାଗିଛି । ଏମିତି ସବୁ ଜଳିପୋଡ଼ି ଯିବ, କାଠ ପରି ତାର ହାଡ଼, ପାଳ ପରି ତାର ବାଳ । ଶ୍ମଶାନର ନିଆଁ ଲାଗିଛି, ଦୁନିଆ ପୋଡ଼ୁଛି—କରୁଣ ହୋଇ ଯଶୋଦା ଚାହିଁଥାଏ ।

କୋଡ଼ର କ୍ଷୀରଖିଆ ଛୁଆ—ଘରସଂସାର—ଜଳ, ସବୁ ଜଳ । ଭାତ ଗଣ୍ଡେ ମାଗିଥିଲା—ବଡଲୋକଙ୍କ ଦୁନିଆର ଗୋଡ଼ତଳେ କାନ୍ଦ ବଢ଼େଇ ବସିବା ମା.ନିଆଁ ବକଟେ ଜାଗା—ହେଇ, ମଶାଣି ଜଳୁଛି ନଈ ସେପାରି ।

ଖାଇବାକୁ ମାଗିଥିଲ୍—ଖା, ପେଟପୂରା ଖା ମାଟି, ପାଉଁଶ—ଜଳ୍—ପୋଡ଼୍—ଠୋ ଠୋ ଫୁଟ୍—ଭିକାରୀ ହୋଇ ନେହୁରା ହେଉଥିଲ୍ ସୁଖ ଟିକିଏ ପାଇଁ—ସହରକୁ ଧାଇଁ ଆସିଥିଲ୍—ଜଳ, ହାଉ ହାଉ—।

ଧୀରେ ଧୀରେ ଆଉ ଆଉ ହୋଇ ଯଶୋଦା କାନ୍ଦୁଥାଏ, ମୁଣ୍ଡକୁ ଟାଙ୍କୁଥାଏ; ଦେଖୁଥାଏ, ତାର ଗରବର ଦୁନିଆ ଜଳିଯାଉଛି । ଆପଣାର ସଂସାର କରୁ କରୁ ତର୍ପଣ କରୁଥାଏ ।

ସେକରେ ପେଚା ଦମ୍ପତି ବୋବାବୋବି ହେଲେ । ଲାଗିଲା—ଠିକ୍ ଯେମିତି ମୁଣ୍ଡ ଉପରେ ।

"ମଲା, କି ଅଲକ୍ଷଣା ଜୀବଗୁଡ଼ାକ ମ ! ହେ ଡାଆଣୀ ପେଚା, ଛକ୍, ଛକ୍—"

ଯଶୋଦାର ଶୋଇବା ବେଳ ହେଲା । କାନ୍ଥ ପାଖଦେଇ ସେଇଠି ସେ ଶୁଏ ।

ମାନମୟୀ ପଦାକୁ ଅନେଇଛି । ସୁଖର ପୂର୍ଣ୍ଣିମା ଭିତରେ ଉତ୍ତେଜନାର ରଶ୍ମି ପରି ଜହ୍ନରାତି ଖୋଲିଛି ଖୁବ୍ ଭଲ । ଖାଲି ଛବି, ଖୁବି ଓ ଆନନ୍ଦ । ଜହ୍ନ ଉଠିଲାବେଳ ତାକୁ ଖୁବ ଭଲ ଲାଗେ । ମନେପଡ଼େ କେତେ ଥର ଏମିତି ଦୃଶ୍ୟ ସେ ସିନେମାରେ ଦେଖିଛି । ସବୁ ସେମିତି ଅଛି, କେବଳ ଚକୁଆ ଚକି ନାହାନ୍ତି କି ହୁଁର ହେଉ ନାହାନ୍ତି । ଦୂର ବଇଁଶୀର ଆଳାପ ପରି ସୁନ୍ଦର ରାତି । ସତକୁ ସତ ଦୂର କୋଠାରୁ ବେଳେ ବେଳେ ଗୋଟାଏ ମୁହଁଗୁଞ୍ଜା ବଇଁଶୀ ଥର ଥର କାନ୍ଦେ । ସେ ବି ଶୁଣେ । ପ୍ରତ୍ୟେକ ଇନ୍ଦ୍ରିୟ ବାଟେ ସେ ଜହ୍ନରାତିକୁ ଗ୍ରହଣ କରିପାରେ । ଲାଗେ, ନୂଆ ନୂଆ ସୁଖ ।

ସ୍ୱାମୀ ଚାକିରିଆ ବର-ପାତ୍ର ଯାଉଛି, ସେ ଥିଲା ଗୋଟାଏ ଲୋକହସା । ସୁରବାବୁ ଲୋକହସା ନୁହେଁ । ଚାକିରିଆ ନୁହେଁ ସେ; କିନ୍ତୁ ଅବିନାଶବାବୁଙ୍କ ଜୋଇଁ ପାଇଁ କେବଳ ଇଚ୍ଛାକଲେ ସବୁ ଆଇନ କୋହଳ ହୋଇପାରେ । ବଡ଼ ଚାକିରି ଆଖି ପିଛଡ଼ାକେ । ଭବିଷ୍ୟତ୍ ଗଢ଼ିବା ବିଷୟରେ ଶୈଳେନ୍ଦ୍ର ଅବିନାଶ ସମାଜର ଝିଅ ଦୈବକୁ ଅପେକ୍ଷା କରେ ନାହିଁ । ବନ୍ଧୁ-ସମ୍ବନ୍ଧୀ-ଜୋଇଁ ପୁରୁଷ ଛନ୍ଦାଛନ୍ଦ ହୋଇ ଶାସନକଳ ତା'ର ହାତ ମୁଠାରେ । ମନ କଲେ ପୁରୁଣା ଆଇନ୍ ସଙ୍ଗରେ ଖର୍ଗି ସକାଳକୁ ନୂଆ ଆଇନ୍ ତିଆରି ହୋଇ ଛପା ସରିଥାଏ । ସେହି ଚାକିରିଆ ପାତ୍ରର ସାଜସଜ୍ଜା ସବୁ ସୁରବାବୁଙ୍କୁ ପିନ୍ଧାଇ, ମାନମୟୀ ନୂତନ ଛନ୍ଦରେ କଳ୍ପନା ଯୋଖୁଥାଏ—ସୁରବାବୁ ଶାସକ ହୋଇଛନ୍ତି । ପ୍ରଚୁର ଯୋଗ୍ୟତା—ସେ ତାର ସ୍ୱାମୀ,

ଅବିନାଶବାବୁଙ୍କ କୋଠି । ସେହି ନୂଆ ରୂପରେ ତାଙ୍କୁ ଧ୍ୟାନ କରିବାକୁ ଆଜି ଭଲ ଲାଗୁଛି । କାଲିଜହ୍ନ ତଳେ ଦିଗ୍‌ବଳୟ ପ୍ରଶାନ୍ତ ହୋଇ ଖୋଲିଛି ତା'ର ବନ୍ଦନା ପାଇଁ ।

ଅବିନାଶବାବୁଙ୍କ ସ୍ତ୍ରୀ ରମା ଜହ୍ନକୁ ଦେଖୁଥାନ୍ତି । ସ୍ଥିରଆଡ଼େ ଶାନ୍ତ ସମୃଦ୍ଧି, ଅବିକଳ ତାଙ୍କର ଜୀବନ ପରି । ଶ୍ୱେତ କ୍ଷୀର ସାଗରେ ହାଲୁଚି ଉଠିଲା ପରି, ଧନଯାଜର ଆନନ୍ଦର ଅନୁଭୂତ ବେଗ କରିପାରି ପଦାକୁ ସ୍ଫୁରିଲାବେଳକୁ ତୃପ୍ତିର ଗୋଟାଏ ଅଜଣା ପ୍ରକାଶ ଆପଣା ବ୍ୟକ୍ତିତ୍ୱରୁ ବାହାରି ପଦାରେ ବିଛେଇ ହୋଇପଡ଼େ । ଯାବି ଦୁନିଆ ଶାନ୍ତିରସରେ ଜୁଡ଼ୁବୁଡ଼ୁ ।

ସୁନା ମଥାମଣିପରି ଜହ୍ନ, ମେଘାମ୍ବରୀ ଶାଢ଼ୀ ପରି ଭୂଇଁ ଉପରର ଆକାଶ । ହୀରା ପରି ତରାଟଫୁଲର ଫୁଲ-ଗୁଚ୍ଛ ସଜାଇ କିଏ ଯାଉଛି ଦିଅଁ ପୂଜା । ଗୋଟାଏ ପୁରୁଣା ଶସ୍ତା ଉପମା । ଶସ୍ତା କିନ୍ତୁ ଜଦା, ଖାନଦାନୀ, ସୁନା ହୀରା ରୂପ-ଭେଦର । ଟହ୍ଲା ଉପମା । ଯାବି ପ୍ରକୃତିକୁ ଏମିତି ରୂପକ କରି ଦେଇ, ଆପଣାର ପ୍ରିୟ ଅଳଙ୍କାର ଖଞ୍ଜି ଦେଇ, ଫ୍ରେମ୍‌ରେ ବାନ୍ଧି ଘର କାନ୍ଥରେ ଲଟକେଇ ଦେବାକୁ ଇଚ୍ଛା ହୁଏ; ଅଥବା ଭଲ୍‌ରେ କୋପେ ବୁଣି ଥୋଇଦେବାକୁ;—ପ୍ରଦର୍ଶନୀକୁ ଯିବା ଭଳି ।

ହୃଦୟ ଉଚ୍ଛୁଳେଇ ଭକ୍ତି ଆସିଲା । ଗଦଗଦ ହୋଇ ରମା ଠାକୁରଙ୍କୁ ଦଣ୍ଡବତ କଲେ, ତୋଳା ଟେକିଲେ, ମୁଣ୍ଡକୁ ଝରକାର ଚୌକାଠରେ ଲଗାଇଲେ । ଦୀର୍ଘଶ୍ୱାସ ସମ୍ବଳିତ ପ୍ରଣିପାତରେ ପ୍ରାଣର ଉଚ୍ଛ୍ୱାସ ଢାଳିଦେଇ ସ୍ତୁତି କଲେ, ଆହୁରି ସମ୍ପତ୍ତି ବଢ଼ୁ, ସବୁ ବେପାରରେ ସିଦ୍ଧି ମିଳୁ, ମାନମର୍ଯ୍ୟା ଭଲ ଘର ପାଉ ଯେଉଁଠି ପ୍ରଚୁର ସମ୍ପତ୍ତି, ମାଟି, ଇଟା, ରୂପା, କାଗଜ ସବୁ । ଅଘୋର ବିଭା ହେଲେ ସେହି ଜାତିର ସମ୍ପତ୍ତି ଆସୁ, ଇଟା ଉପରେ ଇଟା, ମାଟି ଉପରେ ମାଟି, ସମ୍ପତ୍ତି ବଢ଼ୁ, ସିଞ୍ଚିରହୁ ।

ମୁହଁ ଟେକି ଭକ୍ତିବିହ୍ୱଳ ଆଖିରେ ଚହଟି ସ୍ୱଢକୁ ଅନାଇ ଦେଲାବେଳକୁ ସେଠି କଳ୍ପିତ ଦେବତାର ରୂପ ସତେ କି ଦିଗ୍‌ବଳୟ ଆବୋରି ଧରି ଅଷ୍ଟଧାତୁର ମୂର୍ତ୍ତି । ସେଥିରେ ସୁନା, ପ୍ଲାଟିନମ୍, ରୂପା, ହୀରା, ଜହରତ୍ । ତାର ଇଟା ଚୂନର ମୂଳଦୁଆ, ସିମେଣ୍ଟର ଆସ୍ଥାନ, ଶଙ୍ଖ ମଲମଲ ଗାଧ । ତା'ର ହାତରେ ସେଇ ତରାଜୁ ମାପିଚୁପି ସମ୍ପଦ ଅଜାଡ଼ିବାକୁ । ପିଠିଆଡ଼େ ଝଟକ ମେଘର ଧଡ଼ିରେ ଧଡ଼ିରେ ଅଙ୍କିତ ହୋଇଛି ଆକାଶଛୁଆଁ କଳକବ୍‌ଜାର ସହର । ଉଞ୍ଚ ଚିମ୍‌ନିରେ ଧୂଆଁ ଉଠୁଛି ବ୍ୟୋମଲୋକକୁ ।

ହୃଦୟର ଦେବତା ମୁରୁକିହସା ଦେଉଛନ୍ତି, ବାଞ୍ଛା ପୂର୍ଣ୍ଣ ହେବ ।

ଓଃ, କି ସ୍ୱାଦ—ଆକାଶଯାକ ଖାଲି ସ୍ୱର୍ଗ ଜହରତ୍—ମୋତିମାଣିକ୍ୟ ।



# ବତିଶ

ସନିଆର ପାଦ ପବନରେ । ପୁନି ତା'ର ।

ତାହାର ସେ ଥିଲା, ତାହାର ହୋଇଛି । ମଝିରେ ପୁନିବୋଉ ବାଡ଼ ପକେଇଥିଲା ଖାଲି ସରଗ କରିବାକୁ । ପୁନି ବାଡ଼ ଡେଇଁଛି, ସନିଆର ଯୋଗ ବାଡ଼ ଟପିଛି । ଉଦେଇ ଟୁଦେଇ ମନରେ ପାଞ୍ଚିବସିଲା, କଣ ସେ କରିବ, ଯହିଁରେ ତା ମନର ଆନନ୍ଦ ଧାର ପାଇ ଗଡ଼ିଯିବ କଳ୍ପନାର ଗହ୍ୱରେ ଗହ୍ୱରେ ।

ସେହି ଦିନ ତ—ମଇଳାଗାଡ଼ି ଆଗରେ ଥୋଇ ପୁନିକୁ ସେ ଉଡ଼େଇ ନେଇ ଯାଇଥିଲା ସର୍ବସାଧାରଣ ପାଇଖାନା ଆଡ଼କୁ । ଗନ୍ଧ ଆଉ ମାଛି । ଆଖପାଖରେ ଘଣର ଘଣର ହୋଇ ନିଆଶାରେ ଥୋମଣୀକୁ ଟେକି ଘୁଷୁରିଟା ଲେଉଟି ଆସୁଥିଲା । ପାଖର ମଇଳାପାଣି ଗାତ ଭିତରେ କାଦୁଅରେ ଜୁଡ଼ୁବୁଡ଼ୁ ହୋଇ ଅଣ୍ଟାଏଯାକେ ପାଣିରେ ବସିପଡ଼ିଥିଲା ଧେଡ଼ କୁଆଟିଏ । ସେଠି କୋଇଲି ବୋବେଇ ନାହିଁ, ଝରଣାକୂଳିଆ ବାଉଁଶବଣରୁ ଭାସି ଆସିନାହିଁ କବିକାନିଆଁ ଛନ୍ଦ ।

କେବଳ ସେ ଆଉ ପୁନି ।

ମୁଣ୍ଡକୁ ପାଗଲାମି ଚଢ଼ିଥିଲା, ପୁନି ତାର ।

କଣ ତାଠୁଁ ସେ ପାଇବାକୁ ଆଶା କରେ ? ସେ ଗୋଟାଏ କିଛି ଜିନିଷ ନୁହେଁ ।

କେବଳ ଦେହ ନୁହେଁ କି ମନ ନୁହେଁ କି ସ୍ମୃତି ନୁହେଁ; ଅଥଚ ସବୁ ।

ଗୋଟାସୁଦ୍ଧା ଗିଳିପକେଇବାକୁ ମନ ହୁଏ । ତାର ଆପଣା ବାହାରେ ପୁନିର ସତ୍ତା ରହିଲା ନାହିଁ; କିନ୍ତୁ ସେତିକି ହେଲେ ବି ଶାନ୍ତି ନାହିଁ । ସେ ପୁନିକୁ ଏକାସଙ୍ଗେ ଗୃହେଁ ଭିତରେ, ବାହାରେ । ନିଜର ଆବଶ୍ୟକତା କରିପାରେ ନାହିଁ ।

ନେଇ ନେଇ ମନ ପୂରେ ନାହିଁ, ଦେବାକୁ ମନ ହୁଏ । ସେତିକି ପ୍ରତିକ୍ରିୟା ବିନା ତାର ବ୍ୟକ୍ତିତ୍ୱ ଅସ୍ୱୀକାର କରେ ଯେ, ଅନୁଭୂତି ଗ୍ରହଣ କରିବାକୁ ତାର ଦେହ ବା ମନ ପୂର୍ଣ୍ଣକ୍ଷମ । ଯେଉଁ ଆନନ୍ଦର ଜନ୍ମ ନେବା କାର୍ଯ୍ୟରୁ ସେହି ବୃଦ୍ଧିହୋଇ ରହିଥିବା ଆନନ୍ଦକୁ ପ୍ରକାଶ କରିବାକୁ ସନିଆକୁ ଦିଶେ ଗୋଟାଏ ବାଟ—ଦେବା; ପୁନିକୁ ଦେଇ ଦେଇ ନିଜକୁ ଉଜାଡ଼ିଦେବା । କଣ ଦେଇ ସେ

ଖୁସି ହେବ ? ତାର ବୁଦ୍ଧି ପାଏ ନାହିଁ । ମୂଲିଆ ମୁଣ୍ଡ, ଆୟ ଅତି ସାମାନ୍ୟ । ଘୁଲୁଣିପରି ଜଳା ତାର ଘରକରଣାଯାକ । ଅଣ୍ଟାରେ ଗେଣ୍ଡିଲେ ବି ଛୁଟୁଛୁ ଛୁଟୁଛୁ ହୋଇ କୁଆଡ଼େ ଛଡ଼ି ଖସିଯାଏ, ରୋକି ହୁଏ ନାହିଁ; କିନ୍ତୁ ପ୍ରାଣରେ ଉତ୍ସ ଖୋଲୁଛି । ଯେଉଁପରି ହେଉ ସେ କମେଇବ, ପୁଅ ପାଖେ ଅଜାଡ଼ି ଦେବ; କି ଉପାୟରେ ? ହାତରେ ଗାଲ ଥୋଇ ବସି ଭାବେ, ଉତ୍ତର ପାଏ ନାହିଁ ।

ସେ ବୟସ ଭିନ୍ନେ । ଯେତେବେଳେ ରାସ୍ତାରୁ ପୁଅ ପାଇଁ ରଙ୍ଗ କାଚ, ଭଙ୍ଗା ଚିନାବାସନର ଖପରା ଗୋଟାଉ ଗୋଟାଉ ଦିନଯାକର ଟେସ୍ ଦେହରେ ମରୁଥିଲି, ଆଉ ସେଥିରେ ପୁଅ ଖୁସି ହେବ ନାହିଁ । ସିନେମା ବିଜ୍ଞାପନ ବାଣ୍ଟି ବୁଲୁଥିବା ବାଜାବଜା ଗାଡ଼ି ପଛେ ପଛେ ଧାଇଁ ଅନ୍ୟାନ୍ୟ ପିଲାଙ୍କ ହାତରୁ ଲୁଟିନେଇ, ଖଣ୍ଡେ ନାଲି କାଗଜ ପୁଅ ହାତକୁ ବଢ଼େଇ ଦେଉଥିଲେ ପୁଅର ମନ ଭୁଣ୍ଡେ ମୋଟ ହେଉଥିଲି, ଆଉ ତା ହେବ ନାହିଁ । ଧୂଳିଖେଳ ବୟସର ଉପାୟ ସେହି ରାସ୍ତା ଧୂଳିରେ ହିଁ ପଛେଇ ଯାଇ ପଡ଼ିଛି । ମନକୁ ତୃପ୍ତି ଦେଉ ନାହିଁ ।

ସନଆର ଦରକାର, ଅନ୍ୟମାନେ ଯେପରି ହ୍ୱିଲ୍କର ଦେହକୁ ସଜାନ୍ତି, ସେହିପରି ସେ ପୁଅକୁ ସଜେଇବ; ଅନ୍ୟମାନଙ୍କ ପରି ନିଜେ ବେଶ ହେବ, ସେମିତି ସେ ମଉଜ କରିବ । ସେଥିପାଇଁ ଆଦର୍ଶ ଚାରିଆଡ଼େ । ନାକଧରାପୁର ମେହେନ୍ତ୍ରର ସାହିର ସମାଜଠୁଁ ଆଭିଜାତ୍ୟ ଯାକେ । ନଈ କୂଳରେ ହାଓ୍ୱା ଖାଇ ଲୋକେ, ବାଇସ୍କୋପ୍ ଓ ପ୍ରଦର୍ଶନୀର ମଣିଷ ଏବଂ ଆତୁର ସେହିମାନେ, ଯେଉଁମାନେ ଆପଣା ସଂସାର ସାମ୍ନାରେ ସୃଷ୍ଟି ବାଦର ପରିଚୟପତ୍ର ପରି ଦୁଆର ଖୋଲି ରାସ୍ତାକୁ ଅନେଇ ଠିଆ ହୋଇଥାନ୍ତି । ସବୁ ନକଲ କରିବାକୁ ପ୍ରାଣ ଡାକେ; କିନ୍ତୁ ମନ ଯେତେ ଅମଡ଼ା ମାଡ଼ିଲେ ବି ସନଆଁ ଝୁଣ୍ଟିହୁଏ—ପଇସା ନାହିଁ । ସବୁଥିକି ପଇସା ଦରକାର ।

ଅର୍ଜନ କରିବାକୁ ଏକମାତ୍ର ସଙ୍କୀର୍ଣ୍ଣ ଗଳି; ମଇଳାଗାଡ଼ି-ଟଣା ।

ବୋଉ ନାହିଁ ।

ତାର ବି ଆଶା ଥିଲା, ସନଆ ମଣିଷ ହେବ ।

ସାହି ପାଖେ ଗୋଟିଏ ଇସ୍କୁଲ, ଭେଦାକରି ଛୁଆଁ ଶ୍ରେଣୀର ମଜୁରିଆ-ମାନେ ବସେଇଥିଲେ ତାଙ୍କ ପିଲାଙ୍କ ପାଇଁ । ସନଆର ବୋଉ ରୋଗରେ ଥିରୁ ଥିରୁ ଅକାଳେ ବୁଢ଼ୀ । ମାଷ୍ଟରଙ୍କ ଆଗେ ଭୂଇଁରେ ମୁଣ୍ଡ କୋଡ଼ି କୋଡ଼ି କେତେ ଜୁହାର କରି କଥା ଛିଣ୍ଡେଇଲା, ଇସ୍କୁଲ ଦାହାରେ ପିଣ୍ଡାତଳେ ବସି ତା ପୁଅଟି ପାଠ ପଢ଼ିବ । ସେମିତି ସେ ମଣିଷ ହେବ ।

ସଢରେ ଦିନେ ସନିଆକୁ ଜାଣେଛି, ମୁଢିମୁଆଁ ଟିଏ ହାତରେ ଧରେଇ ଦେଇ, ପାଠ ପଢ଼ିବାକୁ ବସେଇ ଦେଇ ଆସିଥିଲି । ଆଶାରେ ଜକଜକ ଦିଶୁଥିଲି ତାର ଦିନ ଗଣୁଥିବା ମୁହଁର ଝୋଲପା । ପୁଅ ପାଠ ପଢ଼ିବ, ମଣିଷ ହେବ । ଦିନାକେତେ ସନିଆ ଯାଉଥିଲି କେବଳ ମୁଢ଼ି-ମୁଆଁ ଆଶାରେ ।

ସେଇଠି ଓଳିଚଳେ ବସି ମନକଳ୍ପା ଖଡ଼ିରେ ଗାର୍ଏ । ଘର ଭିତରେ ପିଲାଏ ପଢୁଥାନ୍ତି । ସନିଆର ମା ସାନ୍ତ୍ୱନା ପାଏ । ଏଥିକ ବଦଳରେ ସନିଆକୁ କାମ କରିବାକୁ ପଡ଼େ । ସେ ପିଣ୍ଡା ଲିପେ, ପିଲାଏ ଝାଡ଼ାଫେରି ଦେଲେ ସଫା କରେ, ଅନ୍ୟମାନେ ଖାଇଥିବା ଚିନାବାଦାମ ଖୋସା ଅଣ୍ଟିରେ ପୂରେଇ ଘରକୁ ନେଉଛେ । ବେଶି ଦିନ ଚଳିପାରିଲି ନାହିଁ । ଦିନେ ସନିଆର ମା ଆବିଷ୍କାର କଲା, ପାଠପଢ଼ି ଯିବା ପୁଅର ଗୋଟାଏ ପଥିଆସ୍ । ମୁଢ଼ିମୁଆଁର ଆକାର ଆଙ୍କିବା ଛଡ଼ା ଆଉ ସେ କିଛି ଜାଣେ ନାହିଁ । ସନିଆର ପାଠ ଶେଷ ହୋଇଥିଲା । ଆଜି ଭାବିଲେ ହସ ମାଡ଼େ ।

ବରଗଛ ଗ୍ରଛରେ ବସିଥାଏ, ଝାଳ ମାରୁଥାଏ । ନଇବାଲିକୁ ଅନେଇଁ ଥାଏ । ଗୋଟାଏ କିଛି କରିବ ବୋଲି ପାଞ୍ଚ ପାଞ୍ଚ ଚଉ ଚହଲି ଯାଉଥାଏ ଖୋଲି ଆଖିର ସାଧ ରଙ୍ଗ ଜିଷ୍ଟାରେ । ସେହି ସଡ଼କରେ କୁକୁରଧର୍ ଗାଡ଼ି ଠେଲି ଠେଲି ଜଣେ ଲୋକ ଯାଉଛି । ଜାଠଜାଠକା ହାନବଲ ଓ ଘାଉଡ଼ା କୁକୁର ଜିଭ ଲହ ଲହ କରି ହାତଭରି ଦେଇ ବସିଛନ୍ତି, ସ୍ୱର୍ଗକୁ ଯିବା ପାଇଁ ତପସ୍ୟା କଲାପରି । ସେହି ଦୃଶ୍ୟ ସନିଆ ମନକୁ ଉଚିତ ଉପାଦାନ । କେତେ କୁକୁର ଚହ୍ଲା ପରି ଜଣାପଡ଼ୁଥାନ୍ତି । କଏ କୁକୁଡ଼ା ଖାଏ, କଏ ଘରେ ପଶେ, କାହାକୁ ଦେଖିଲେ ସମସ୍ତେ କାମୁଡ଼ି ଗୋଡ଼ାନ୍ତି । ଚହ୍ଲାଅଚହ୍ଲା ଗୁଲିଛନ୍ତି ସମସ୍ତେ । ଗାଡ଼ି ଗୁଲିଗଲା । ଅନୋଉଁ ଅନୋଉଁ ହଠାତ୍ ଗୋଟାଏ ଧାରଣା ପଶିଗଲା ମନରେ । ସନିଆ ଠିଆହୋଇ ପଡ଼ିଲା ।

ଗାଡ଼ି ନାହିଁ, ବାଡ଼ି ଅଛି । ବଡ଼ ସହର ଡେଙ୍ଗୁରା ଦେଇଥିଲା, କୁକୁର ମାରିଲେ ପଇସା ମିଳିବ । ବଞ୍ଚିବା ପାଇଁ ଦାବୀ କରିବାକୁ ବେକରେ ଯାହାର ତମ୍ବା ଟିକଟ୍ ନାହିଁ, ଯାହାର ବଳ ନାହିଁ, ଓ୍ୱାରସ୍ ନାହିଁ, ରକ୍ଷକ ନାହିଁ, କେହି ନାହିଁ; ସହରର ବିବେଚନା ଯେ ସେ ନିଷ୍ଟସ୍ତ୍ର ବାସ୍ତା ହେବ । ସେ ବିପଦ, ତାକୁ ମାରି ପକେଇବାକୁ ପଡ଼ିବ । ପ୍ରତିବର୍ଷ ଏହିଦିନେ ତାଙ୍କର କାଳ ପୂରେ । କଏ ଫାଶରେ ଧରେ, ଗାଡ଼ିରେ ଭର୍ତ୍ତି କରେ, ବିଷ ଦେଇ ମାରେ । କଏ ଆସେ ସାହେବ ଟୋପି ମୁଣ୍ଡରେ ଦେଇ, ବନ୍ଧୁକ ଫୁଟେଇ ପଟାଳି ପରି ଶୁଆଇପକାଏ; କିନ୍ତୁ ହାଡ଼ ବୁଲେ ଡଡ଼ା ଧରି । ଶୋଇ ଶୋଇ ଧକେଇ ହେଉଥିବା କୁକୁର ମୁଣ୍ଡରେ ଛପି ଛପି ଆସି

ପାହ୍ୱାରେ ପକାଏ । ଭାରରେ ବୋହି ନେଇଯାଏ ଲାଶ୍ ଦେଖାଇ ପଇସା ପାଇବାକୁ । ସମସ୍ତେ ଜାଣନ୍ତି । ସମସ୍ତିଙ୍କର ରୁଚି ହୁଏ ନାହିଁ । ସନିଆ କେବେ କରି ନାହିଁ; କାରଣ, ସନିଆ କେବେ ଭାବି ନ ଥିଲା ଯେ ତାର ଉପୁରି ପଇସା ଦରକାର ।

ପୁରୁଷର ମନରେ ସ୍ତ୍ରୀର ପ୍ରଭାବ ପଡ଼ି ସୃଷ୍ଟି କଲା ଆଦମ କାଳର ଅଛିରତା । ସନିଆ ପ୍ରସ୍ତୁତ ହେଲା । ପଡ଼ିଶା ଘରର ହତା ଦୁଆର ମୁହଁରେ ଅର୍ଗଲ କରିବା ପାଇଁ ଭଲ ତଡ଼ା ଖଣ୍ଡିଏ ଅଛି । ଦି ପହର ବେଳ । ପଡ଼ିଶା ଘର କାମରୁ ଫେରି ଶୋଇଛନ୍ତି । ତଡ଼ା ଖଣ୍ଡ ଓଟାରି ନେଇ ସନିଆ ବାହାରି ଗଲାବେଳେ । ଛୁଇ ଲେଉଟାଣି ଆଗରୁ ଯୋଡ଼ାଙ୍କୁ ନିଃଶେଷ କଲେ ସଞ୍ଜ ଆଗରୁ କାଲେ ଉପୁରି ପଇସା ମିଳିଯିବ, ତା ପରେ ସେ ପୁନି ପାଖକୁ ଖାଲି ହାତରେ ଯିବ ନାହିଁ ।

କୁକୁର ବୁଲୁଛନ୍ତି, କୁକୁର ଶୋଇଛନ୍ତି । ହେଟକଲା କୁକୁର, ଘାଦୁଆ, ଘାଉଡ଼ା କୁକୁର । ଅଣ୍ଟା ପିଠି ଲାଗିଯାଉଛି କାହାରି, ଦୁସୁରୁଥିବା ପରୁଆ ଲାଙ୍ଗୁଡ଼ଟିକୁ ଉପରକୁ ଟେକିବାକୁ ଉତ୍ସାହ ନାହିଁ । ବଦା କାଠି ପରି ଗ୍ରନ୍ଥିହାଡ଼ ଗଣି ହେଉଛି । କୁତି କାଦୁଅରେ ଶୋଇଛି, ପଲେ ଛୁଆ ରଟ ରଟ କରି ଦୁଧ ଖାଉଛନ୍ତି, ବୁଢ଼ୀ କେବଳ ଦାନ୍ତ ଦେଖୋଉଛି । ପଛରେ ନାଲିଆ ରକ୍ତପିଣ୍ଡୁଳା ଓହଳୁଛି, ପ୍ରାଣର ବାଧାରେ ବ୍ୟେଗଣୀ କୁତି ଦଉଡ଼ୁଛି । ତାହା ପଛେ ପଛେ ପାଞ୍ଚ ସାତଟା କୁକୁର ଦୌଡ଼ୁଛନ୍ତି, କଳିଆ କରୁଛନ୍ତି । ବେକରେ ହାତ ଥୋଇ ଦେଇ, ଥୋମଣିକୁ ଥୋମଣି ଯୋଡ଼ି ଦେଇ ପରସ୍ପରଙ୍କ ଦାନ୍ତର ଧାର ପରୀକ୍ଷା କରୁଛନ୍ତି । ଜିଭ ଓହଳେଇ 'ଉହୁଁ ଉହୁଁ' କହି କହି, ବ୍ୟେଗର ବୁଳୁଳା ଝୁଲେଇ କୁତି ପଲୋଉଛି । ଯେଝା ଯେଝାର ଚିନ୍ତା, ଯେଝା ଯେଝାର ଦୁଃଖର ବୋଝ । ସହରରେ ଲୋକ ପାଲୁବାଲୁ ହେଉଛନ୍ତି । ଚୂନ ପଲସ୍ତରା କରା କୋଠା ଅତି ଦର୍ପରେ ମୁଣ୍ଡ ଟେକି ରହିଛି । ମେହେନ୍ତର ବସ୍ତି ଖାଇ ଖାଇକା ଆହୁରି କୋଠା ଗଢ଼ାହେଉଛି, ଲୋକ ଲାଗିଛନ୍ତି ।

କୁକୁରଙ୍କ ଖେଳ ସନିଆକୁ ଭଲ ଲାଗେ । କେଉଁଠି ତାଙ୍କ ସଙ୍ଗେ ସେ ସମତା ପାଏ, ଅନେଇ ରହିବାକୁ କୁତୂହଳ ହୁଏ । ଆପେ ଖାଇସାରିଥିବା ପତର ସେମାନେ ଚାଟିବେ ବୋଲି ଆଗ୍ରହରେ ଫିଙ୍ଗିଦେଇ କରିଦେଇ ଡାକେ ଚୁ ଚୁ । ସ୍ୱାର୍ଥ ପାଇଁ ଦୁନିଆ ବଦଳିଛି, ସେ ବି ବଦଳିବ । ତଡ଼ା ଉଞ୍ଚେଇ ଧାଇଁଗଲା, କୁକୁର ପଳେଇଲେ ।

ସେଠି ଗୋଟାଏ ବୁଢ଼ା କୁକୁର ଶୋଇଛି । ମୁହଁଟା ଦେଖିଲେ ବିରକ୍ତ ଲାଗେ, ଦେହରେ ରୁମ ନାହିଁ । ଆପଣାର ମୂଢ଼ପଣିଆରେ ଏକବାଜିଆ ହେଉରେମା

କୁକୁର । ଋଢ଼ଏ ହେଲେ ବାଟରୁ ଘୁଞ୍ଚିବ ନାହିଁ, ଗମ୍ଭୀର ହୋଇ ଚାହିଁବ । ଏହିମାନେ ବେଶି ବିପଦ, ଚଞ୍ଚଳ ବାଘୁଆ ହୁଅନ୍ତି । ସମାଜର କଣ୍ଟକ । ସନିଆ 'ବୌନି' କଲା । ଦୁଇ ହାତରେ ଠେଙ୍ଗାକୁ ଯାପି ଧରି, ଜବରଦସ୍ତ ପ୍ରହାର ।

ଘ୍ରେଟିଆ କଥା । କୁକୁର ମୁଣ୍ଡରେ ପାହାରେ ବାଡ଼ି । ଗୋଟାଏ ଖତମ୍ । ତା ପରେ ଆଉ ଗୋଟାଏ, ତା ପରେ ଆଉ ଗୋଟାଏ । ଫଟା ମୁଣ୍ଡ, ରକ୍ତ ଝରଝର, ଅବର୍ଜିଆ ମୁହଁ । କାନ ଅତର୍ଘ ପକେଇ ମରଣର ଚିତ୍କାର । ମରୁ ମରୁ ଫାଳେ ଜମି ଚାଷ କରି ପକେଇଉଛି, ରକ୍ତ ଚାଲୁଛି । ଆପଣାକୁ ବେଙ୍ଗଲା ପକେଇ ଫୋପାଡ଼ି ଦେଉଛି ମାଟିରେ । ମୁହଁ, ଆଖିରେ ରକ୍ତ ବାଲୁବାଲୁ । ଫଟା ମୁଣ୍ଡ, ଛେଚ୍ଚି କାନ ହୋଇ କାନ୍ଦ କାନ୍ଦ ପଲେଇ ଯାଉଚି କଏ ମୁହଁ ଲୁଚେଇବାକୁ । ରକ୍ତମଖା ଠେଙ୍ଗା ଉଞ୍ଚେଇ ସନିଆ ଧାଇଁଛି । ପ୍ରଳୟ କଲା । ତାର କୁକୁର ଲାଞ୍ଜ୍ ଦରକାର ।

ପିଲାଏ ଜମିଲେ । ସାନ ସାନ ପିଲା ଉତ୍ସାହ ଦେଲେ । ନାନା ଉପଦେଶ ଦେଇ, ଚହଲ ପକେଇ ସାଙ୍ଗେ ସାଙ୍ଗେ ଧାଇଁଲେ । ଆପତ୍ତି କରିବାକୁ ଆସିଲେ ପୁରୁଖା ଲୋକେ । ଅଣ୍ଟାରେ ହାତ ଦେଇ ଦୋହଲି ଦୋହଲି ପ୍ରୌଢ଼ାମାନେ ଗାଳିଦେଲେ, ବୁଢ଼ାମାନେ ପାଖକୁ ଆସିଲେ । ସନିଆ କାନ ଦେଲା ନାହିଁ । ରକ୍ତ ଦେଖି, ଲାଞ୍ଜ୍ ଦେଖି ତାର ଉତ୍ସାହ ବଢ଼ି ଯାଇଥାଏ । ଠେଙ୍ଗା ଉଞ୍ଚେଇ ଖେଦ ଯାଉ ଯାଉ କାନ୍ଧ ଉପରେ ଲୁହା ଆଙ୍କୁଶିରେ ଧରିପକେଇଲା ପରି ଝାଙ୍କିଖାଇ ସନିଆ ଲେଉଟିପଡ଼ି ସଗରେ ଅନେଇଁଲା । ଝାଳ ବୋହୁଛି । ଝାଳ, ଧୂଳି ଏକାକାର । କାନ୍ଧର ମାଂସପେଶି, ହାତର ମାଂସପେଶି ଟଣକି ଉଠୁଛି ହତ୍ୟାର ଆନନ୍ଦରେ । କ୍ରୋଧରେ ଅନେଇଦେଲା । ଦେଖିଲା, ଧନୀବୁଢ଼ା ।

"କଣ ହଉଚ ସନିଆ ! କାହିଁକି ନର୍ଦ୍ଦୋଷଗୁଡ଼ାଙ୍କୁ ଗୁରେଇ ଗୁରେଇ ମାରୁଚୁ ? ସ୍ୱାଙ୍କର ଉପରେ ଖରାଟାଯାକ ଝିଡ଼େଇ ହବାକୁ ଥିଲା, ହଇ ରେ ? ବନ୍ଦ୍ କର ।"

"କାଇଁ, କୁକୁର ମାରିବାକୁ କୁହାହେଇଚି; ମୁଁ କୁକୁର ମାରୁଚି—"

"ତେବେ କଏ କହିଲା ମାରିବାକୁ ? ଯେଡ଼ ମଡ଼, ସ୍ୱାଙ୍କର ଉପରକୁ ଷଣ୍ଢ ! କଣ କରିବୁ ଏଗୁଡ଼ାଙ୍କୁ ନେଇ ? ଏମିତି ଠେଙ୍ଗାରେ ପିଟିବାକୁ ତେବେ କହିଥିଲେ ?—"

"ଭଲା, ଗୋଟାକେତେ ଲାଞ୍ଜ୍ ଗୋଟେଇଲେ ଦାଖଲ କରି ପଇସା ପାଇବ । ଗୋଟାକୁ ସୁକାଏ ହେଲେ ଦେଖିଲା, କେତେ ସୁକା ହେଲାଣି—"

"ପଇସା କମେଇବା ବାଗ ତତେ ଜଣାଅଛି ଯାହାହଉ ! ରଣ୍ଡୀପୁଅ ଅନ୍ଧା ! ହଉ, ଭଉରୁ କାମ କରିପକେଇଲୁ । ଦେଖିଲୁ, ଲୋକେ ତତେ କଣ ଭାବୁଚନ୍ତି ! ପଇସା ପଇସା ହଉଚୁ ଯେବେ, ଅକଲ ଶିଖିବାକୁ ଆସୁନୁ କାହିଁକି ? ଏମିତ କେତେ ପଇସା କରିବୁ ? ଯାହା ତ କଲୁଣି କଲୁଣି, ଏ ଥର ଯା, କେମିତ ଲସ୍ ଦେଖେଇ ପଇସା ଆଣିବୁ ଆଣ୍; ପଛେ ଆଉ କୁକୁର ମାରିବୁ ।"

ଧନୀବୁଢ଼ା ପିଠି ଆଡ଼େଇ ଦେଇ ଚାଲିଯାଉଚି । ସନିଆର ଉତ୍ସାହ ଥଣ୍ଡା ହୋଇ ଆସିଲା । ତଡ଼ାଧରା ମୁଠି ହୁଗୁଲା ହୋଇଗଲା । ଏକ, ଦୁଇ, ତିନି, ଚାରି—ସାତଟା ମୂର୍ଦ୍ଦାର କମେଇଚି । ହାକୁ ବୋହି କରି ସେଠି ଦେଖେଇବାକୁ ନେବା ଓ ବୋହି କରି ସେଠୁ ଫୋପାଡ଼ିବାକୁ ଆଣିବା ପ୍ରକୃତରେ କାଠିକର ପାଠ ! ଅବେଳା ହୋଇଗଲା, ନ ହେଲେ ହେ-ଓଳି ହୋଇଥିଲେ, ମଇଲାଗାଡ଼ି ଫେରେଇ ନେଲାବେଳେ ସେଥିରେ ବୋଝେଇ କରି ନେଇ ଯାଇଥାନ୍ତା । ସାତଟା ମଡ଼—ମିଳିପାରେ ସାତସୁକା ପଇସା—!

କିନ୍ତୁ—। ନିସ୍ତେଜ ହୋଇ ତଡାକୁ ଚାହିଁଲା । ସେହି ଖଣ୍ଡିଆ ଖାବଡ଼ା ମଡ଼ଗୁଡ଼ାକୁ ଚାହିଁଲା । ପ୍ରକୃତିସ୍ଥ ହେଲଣି । ଆପଣା କାମରେ ଆଉ ସରାଗ ନାହିଁ । ଗୁଇ ଲେଉଟିଲାଣି, ହାଡ଼ିସାହିରେ ଲୋକେ ଚଳପ୍ରଚଳ ହେଲେଣି । ଠା ଠା ହୋଇ ପିଲାମାନେ ଠୁଳ ହୋଇଛନ୍ତି । ଅସ୍ୱାସ୍ଥ୍ୟକର କୁତୂହଳରେ ଅପେକ୍ଷା କରିଛନ୍ତି ଆଉ କଣ ହେବ । ଠିକ୍ ଏତିକବେଳେ ପରିଷ୍କାର ପରିଚ୍ଛନ୍ନ ହୋଇ, ଛନଛନିଆଁ ମୁହଁ କରି ରାସ୍ତାରେ ପୁନି ଚାଲିଆସିଲା । ସନିଆର ଆଗ୍ରହ ତେଜି-ଉଠିଲା । ଚିତ୍କାର କରି ଡାକମାରିଲା, "ପୁନି, ପୁନି, ଆଇଲୁ, ଏଣିକି ଆଇଲୁ—" ପୁନିର ଚାହାଣୀରେ ଅଛି ଧିକ୍କାର । ପଥର ପରି ସମାଲୋଚନାରେ ଟାଣ ତାର ମୁହଁ ।

"ଇହ୍—ଛି—ଥୁ ! କିଏ ଏଗୁଡ଼ାକୁ ମାରିଚି ? ଆହା—ସନିଆ ରୁ !"

"ବେଶି ନାହିଁ ଏକା ଏକା ପାହାର, କାନମୁଣ୍ଡା ଦେଖି—" ବାଧା ଦେଇ ପୁନି କହିଲା—"ଥାଉ ଥାଉ, ଭଲ ଶିକାର କରିଚୁ । ତୁ ତୋର ଥା, ମୁଁ ଯାଉଚି—"

"ରଇଥା ପୁନି, ଶୁଣ୍ ଶୁଣ୍ । ଏତିକ ବୋହି ନେଇ ଅଫିସରେ ଦେଖେଇଦେଲେ ନଗଦ ସାତ ସୁକା ମିଳିଯିବ ଅଇଗୁ । ଟଙ୍କାଟାଏ ତୋର,

ବାରଣା ମୋର । ଆଉଲୁ ଟିକିଏ ହାତ ଲଗେଇ ଦେଲୁ, ଏଗୁଡ଼ା ଏକାଠି କରି ବାନ୍ଧିଦବା—''

"ଏଃ, ମୋର ଯାଉଥିଲି—କୁକୁରମରା ପଇସା ସ୍ୱାଗକରି ଖାଇବାକୁ ଅଛି—"

''ହଉ, ତୁ ହାତ ନ କର, ଲୁଗା ଖରାପ ହୋଇଯିବ । ମତେ ବି ଖଣ୍ଡ ମୋଟ ମୋଟ ଦଉଡ଼ି ଆଣି ଦେ; ଏଇ ବାଡ଼ି ଧିଅରେ ସ୍ୱର କରି ଲଟକେଇ ନେଇଯିବ—''

''ମୋର ଗରଜ ପଡ଼ିଚି ଲାଗିବାକୁ ! ଆଜି ରାତିରେ କୁକୁର ସପନ ଦେଖିବୁ ସନିଆ । ଗୋଡ଼େଇବେ ତତେ କାମୁଡ଼ିବାକୁ । ତତେ କଣ ଲାଗିଥିଲା କି ରେ, ନା ମଦ ପିଇଥିଲୁ ମ ! ଛିଃ—''

''ଶୁଣି ଯା ପୁନି, ହେଇ—।'' ଲୋକେ ହସୁଛନ୍ତି । ପୁନି ଚାଲିଯାଉଛି । ଜାହିଁକି ସେ କୁକୁରଗୁଡ଼ାକ ପିଟି ପକେଇଲା ? ଏଇ ପୁନି ପାଇଁ ତ ! ଏତେ ଔଲୁ ଲୋକଗୁଡ଼ାକ ପାଗଲ ପଇସା ଗୋଡ଼ରେ ଠେଲିଦେବେ, ଯାଚିଲେ ନେବେ ନାହିଁ ।

ମଲା କୁକୁରଗୁଡ଼ାକ ବାଡ଼ିରେ ବାନ୍ଧି, ବୋହି ନେଇ ଚାଲିଲା । ସ୍ୱାବିଲା, ଏମିତି ଚୁଟେଇଁ ହୋଇ ହେବ ନାହିଁ । ପଇସା ଆସୁ, ତା ପରେ । ଦୋହଲି ଦୋହଲି ଚୁହାହୋଇ ଚାଲିଛନ୍ତି କୁକୁରଙ୍କ ଶବ । ରକ୍ତ ଜୁଡ଼ୁବୁଡ଼ୁ, ଭଙ୍ଗା ଦଦରା । ଯେ ଦେଖୁଛି, ମୁହଁ ବୁଲେଇ ନେଉଛି । ଅଚିହ୍ନା ଲୋକର ଶୁଣ୍ଡରୁ ଛେପ ବୋହୁଛି । ଛିଃ, ଥୁଃ ! ସନିଆର ମନରେ କ୍ଷୋଭ ହେଉଛି—ଆଜି ବୋଲି ସିନା, ନ ହେଲେ ଏମିତି କେବେ ତାକୁ କଷ୍ଟ ଲାଗେ ନାହିଁ । ଆପଣା ଭିତରେ ଯୁକ୍ତି ଗଢ଼ି ଗଢ଼ି ସେ ମନକୁ ଦମ୍ଭ ଦେଲା । ଏହି କୁକୁରମାନେ ବଞ୍ଚିଥିଲେ ହୁଏ ତ ବାଇଆ ହୋଇଥାନ୍ତେ, ଲୋକଙ୍କୁ କାମୁଡ଼ିଥାନ୍ତେ । କେଉଁଦିନ କେଉଁ ଗୋଟାକ ତାକୁ ଭୁକିଥିଲା, ତା ଉପରକୁ ଚଢ଼ିକି ଆସିଥିଲା, ଏମାନଙ୍କ ସାଙ୍ଗରେ ସେ ନ ଥିବ । ଦୁର୍ବଳ ଚିନ୍ତା ଉଡ଼ି ଉଡ଼ି ଚାଲିଲା । ସେ ସବୁ ସଂସ୍କାର ତାର ନାହିଁ ।

କ୍ଲାନ୍ତ ଲାଗୁଥାଏ, ବେଲବୁଡ଼ା ପାଖ ହେଲାଣି । ମୁନିସିପାଲିଟି ଘରେ କେହି ନାହାନ୍ତି । ସେମିତି ସେତକ ଲଦିଦେଇ ସନିଆ ଗଲା ବାବୁର ଘରକୁ । ବାବୁ ତ ବାବୁ, ଏକା କଥା ଅଫିସରେ ବା ଘରେ, ତାର ପଇସା ଦରକାର ।

କାମିଜ ପିନ୍ଧି, ମୁଣ୍ଡ କୁଣ୍ଡେଇ, ବାବୁ ବୁଲି ବାହାରୁଛନ୍ତି । ମନ ଖୁସି ଅଛି । ସନିଆର କପାଳ ଖୁବ୍ ତେଜ । ''କୁକୁର ମାରି ଆଣିଚି ବାବୁ—''

"କିଏ ରେ ଭୂ— ?" ଉତ୍ସାହରେ ସନିଆ ବର୍ଣ୍ଣନା କରିଗଲା । ତାକୁ ଟିକେ ଖେଙ୍କିହୋଇ, ବାବୁ ଗାଳିଦେଲେ । "ଉଠ, ଉଠ—ଶଳା ଘରକୁ ବୋଲି ଆଣିଛ ! ଏଗୁଡ଼ାଙ୍କୁ ଏମିତି ମାରିବାକୁ ତତେ କିଏ କହିଥିଲା ବେ ? —ଯା ଯା, ନେଇ ପଳା ।" " ବାବୁ, ମୋର ପଇସା ?" "ଯା, ଯା, ଦୂର୍ ହ ମୋ ଆଗରୁ, ଶଳା ପାପୀ ! ପଇସା ମୁଁ ଖୋଲି କରି ବସିଛି, ସେ କୁକୁର ମାରିବ, ସ୍ୱା ମୁହଁରେ ଅଙ୍ଗାର ଦେବ— !"

"ଡେଙ୍ଗୁରା ଦେଇଥିଲ—"

"ଏମିତି ଠେଙ୍ଗାରେ ମାରିବାକୁ କେବେ ଡେଙ୍ଗୁରା ଦେଇ ନ ଥିଲି । ଉଠୋଉଚୁ ନା ଏ ମଡ଼ ! କିଏ ଧରିବ, ମକଦ୍ଦମା କରିଦବ; ଶଳା ପାଇଲୁ । ଶଳାକୁ କୁକୁରବାଘ୍ୟା ଲାଗିଛି—"

ମୁହଁ ଶୁଖେଇ ପୁଣି ବୋଝ ବୋହି, ଚଞ୍ଚ° କାଟିଲା । ଲୁଙ୍ଗୁଡ଼େଇ ଲୁଙ୍ଗୁଡ଼େଇ ଉପୁରି ପଇସା କମେଇବା ଉପାୟ ଏ ନୁହେଁ । ଗଲା, ଗୋଟାଏ ଆଶା ଚୂନା ହୋଇଗଲା । ସଞ୍ଜ ହେଉଥାଏ, ବାଲି ଅପନ୍ତରାରେ ମଲା କୁକୁରଗୁଡ଼ାଙ୍କୁ ଶୁଆଇଦେଇ ଆସିଲା । ଦୁଃଖ କରୁଥାଏ । ଦୁର୍ବଳ ମନରେ ଅନୁଭବ କରୁଥାଏ, ସେ ପାପ କରିଛି । ମୋ ପକ୍ଷେ ନାହିଁ ଦୋଷ । ହଉ, ସ୍ୱା ପରେ ଧର୍ମଅଛି ।

□ □

# ତେତିଶ

କଳକମଣ୍ଡି ଘରେ ସେହି ପାଗଳ ଗୁଡ଼ ପରେ, ରଙ୍ଗ, ଝଣ୍ଟ ପୁନକୁ କୋବଲେଇଥାନ୍ତି । "କାହିଁକି ରହିଲୁ ନାହିଁ, କୁଆଡ଼େ ପଳେଇଲୁ ? ଏମିତି ସଦ ଚୋର ଗ୍ଲୁଡ଼, ତେବେ କ କାମଟା ତୋ ଦେଇ ହବ ଭଲ ଶୁଣେ—"

"ଭାରି କହିଲାବାଲା ରୁ ରଙ୍ଗ ! ଆପେ ତ କୁଆଡ଼େ ନାଖିଲୁ, ଓଲଟି ମତେ କହୁଚୁ କଣ ?"

ରଙ୍ଗ ହସିଲା । କହିଲା—"ରୁ କାହିଁକି ଆଇଲୁ ନାହିଁ ? ଦହେଁ କେଡ଼େ ସୁନ୍ଦର ଏକା ସାଙ୍ଗରେ ନାଖିଥାଆନ୍ତେ ?"

ଝଣ୍ଟ କହିଲା—"ତତେ ଥା ବୋଲି କହିଲି, ପଳେଇଗଲୁ ! ଏଡ଼େ ସ୍ଳେପଣ୍ଟଟାଏ !"

"ଅଲେ, ଆମ କଥା ଶୁଣ୍, ମାନ୍ । ଗେଲେରେ ଗେଲେରେ ଦିନ ଚଳିଯାଉଚ, ସକାଳୁ ଉପରଓଳିଯାକେ ଖରାତରାରେ ବୁଲି, ଅସନା କାମ କରିବା କିଛୁ ସହଜ ନୁହେଁ; ବୁଝିଲୁ—ଖରାରେ ଭାଜି ହେବା, ବରଷାରେ ଫଉଲିବା, ଶୀତରେ ଥରିବା । ଦେହକୁ ବାଧିକା ପଡ଼ିବ । ଧୋଲା, ଖନ୍ଧା, ବେମାରି । ସେଇଠୁ ଘରେ ପଡ଼ିରହିଲେ ମଜୁରି ମାରି ହେବ । ଦ ଆଡ଼ୁ ସରିଯିବ ।"

"ରୁ କଣ୍ କହୁଚୁ କଣ ?"

"ଥୋପିଏ ଥୋପିଏ ଅଭ୍ୟାସ କର । ତାଜା ରହିବାକୁ ସେଇଆ, ମଜରି ଛଡ଼େଇବାକୁ ସେଇଆ !"

"ମୋର ଯାଉଚ ! ଭାଟି ପାଖେ ଧରାପରା, ଗଡ଼ାଗଡ଼ି । ମା ଲୋ, ମୋ ଧ୍ୱଅ ଶୀତେଇ ଉଠୁଚ—।"

"ଏମିତ ଧ୍ୱଅ ଶୀତେଇଲେ କେମିତି ଚଳିବୁ ମ ! ଆଲୋ, ଡରୁଚୁ କାହିଁକି ? ଆମର କଣ ? କ କୁଳ, କ ଥଳ ? ସୁକୁମାରି ହେଇ ଘରେ ବସିଥିଲେ କାହାର ଗରଜ ପଡ଼ିଚ ତତେ ଖୋଜିଯିବ ଭାବଚୁ ? ଆଜ ଆସିବୁ ଟି ?"

ପୁନ କହିଲା—"ନାହିଁ ।"

"ମଲି ମୋ, ଫୁଲେଇଟା !"

"କହୁ ଥା—"

ସେମିତ ରଙ୍ଗ ଫୁସୁଲାଏ, ଝଣ୍ଟା ଫୁସୁଲାଏ, କଜଳମଣି କାନେ କାନେ ବୁଝାଏ; କିନ୍ତୁ କଜଳମଣି କଥା ଭିନେ । ଏତେ ବର୍ଣ୍ଣନା ତାଠି ନାହିଁ । ପିଠି ଆଉଁସେ, ମୁଣ୍ଡ ଆଉଁସେ, ଦାଏ, ବୁଝାଏ । କହିଲା—"କି ଲୋ, କାମ ସଭ ନାହିଁ ? କେଡ଼େ ଯାଏଁ ଶୁଖିଲା ଦିଶୁଚୁ ମ ! ଓ ହୋ, କ ଖରା ! ସକାଳୁ କଣ ଖାଇ ଆସିଥିଲୁ ? ଆଜ ଆସିବୁ କି ! ଆସିବୁ, ତତେ ମୋ ରାଣ, ମୋ ମୁଣ୍ଡ ଖାଇବୁ । ଆସିବୁ କି ?"

ମୁହିଁ ରଙ୍ଗା ପଡ଼ିଯାଇ ଝାଲେଇ ଯାଉଚୁ; ତଥାପି ନାହିଁ ପଦ ତୁଣ୍ଡରେ ଆସୁନାହିଁ ।

କଜଳମଣି ତାକୁ ଗୁହିଁଥାଏ । "କାହିଁକି ତତେ ମୁଁ ଏତେ ଭଲ ପାଏଁ କେଜାଣି, ଆଉ ତ କେହି ମୋ ଆଖିରେ ଦିଶନ୍ତି ନାହିଁ ! ଆର ଜନ୍ମରେ ମୋର କଣ ହୋଇଥିଲୁ, ଲୁହେଁ ? ସତ କହିଲୁ, ନାଇଁ ମୋଠି କପଟ କର ନା; ତୋ ମନ ହୁଏ ନାହିଁ କଜଳମଣିକି ଡାକେଁ, ସେ ମୋ ପାଖରେ ଥାଉ, ମୁଁ ତା ପାଖରେ ରହେଁ । ସତ କହିଲୁ ?"

କେମିତ କଅଁଳ ଆଙ୍ଗୁଠିରେ ଚବୁକକୁ ଆସ୍ତେ ଟେକିଧରେ । ଗେଲ୍ହା କରି କହେ—"କାହା କଥାକୁ କଣ ପାଇବୁ ରୁ ? ଆସିବୁ; ମୋ ରାଣ, ଏଁ ? ମାଉଁସ ତରକାରି, ପରଟା ରଖିଥିବ । ବଡ଼ଲୋକ ଖାନା ଖାଇବାକୁ ଆମର ବି କଣ ପାଟି ନାହିଁ ?"

କାନ ପାଖରେ କହୁଚ—"ଯାଇଥିଲୁ, କଣ ନାକବ ଲାଗିଲା ? ସେଦିନ ଲୁକାଏ ଦେଇଥିଲି, ଆଜ ଆଣିବୁ ଆଠଣା, ଆସିବୁ ।"

ସେଷେଇ କରୁ କରୁ ପଦାକୁ ଯାଇ ଆସି ବାଟ ଗୁହିଁ ଗୁହିଁ କେତେବେଳ ହେଲା, ଅନ୍ଧାର ବଢ଼ୁଥାଏ । ମଦ ପିଇ ନିଶାଖେଳରେ ବାଇ ହୋଇ ସନିଆ ଆସିଲା । ନାଁ ଧରି ଡାକିଲା । କେତେ ପ୍ରକାର କହୁଥାଏ, ଯାହା ସେ କେବେ କହେ ନାହିଁ । ଚୁଞ୍ଚୁଣି ଧରି ଜେମା ତଳକୁ ଓହ୍ଲେଇ ପଡ଼ିଲା । ସେଇଠୁ ଝଟାପଟା । ଜେମାର ଗାଲକୁ ସନିଆର ମଦୁଆ ପାଟି ।

"ମାର୍ ଦଟା; ମାର, ପିଟି ଭଜ୍ଜ ଦେ, ମୁଁ କଣ ନାହିଁ କରୁଚ ? ଯାହା କରିବୁ କର, ମୋ ପୁନକୁ ମତେ ଦେଇ ଦେ । ତୋ ଗୋଡ଼ତଳେ ଗଡୁଚ; ହେ ମାଉସୀ—!"

ଲମ୍ବ ହୋଇ ଗଡ଼ିଲଣି ।

"ଦେଖୁଚ, ଏ ଚଣ୍ଡାଳପଣାର ଯୋଗ ! କୁଆଡୁ ମଦ ଖାଇ ଆସିବ ମୋର ଦୁଆରେ ଝଗଡ଼ା ହବାକୁ । ହା'ରେ, ଉଠୁନୁ ନା ଦ' ପାହାର ଦେବି, ଦେଖିବୁ ଅଇଛୁ—"

"ମାର୍, ମାଉସୀ, ତୋ ମନଇଚ୍ଛା କୋର୍, ଖୋବା । ଦ' ପୁଞ୍ଜା କୁକୁର ବାଡେଇଲ ପୂନ ଲଗି ପଇସା କମେଇବ ବୋଲ୍ ଯେ, ହେଲ ନାଇଁ । ଠିକ୍ ହେଇଚ । ମୁଁ ମାଡ ଖାଇବ—"

"ଫେର୍ ନାଁ ଧଇଲୁ ? ଦଉଚ ରହ ଥା—"

ପୂନ ପଦାକୁ ଆସିଲା । ଡାକଲା—"ସନଥା—"

ବକ ବକକା ଧଡ଼ପଡ଼ ହୋଇ ସନଥା ଉଠିଲା । ପୂନ କହିଲା—"ଯା, ଘରକୁ ଯା—"

"ସତ କହିଲୁ, ଆଗ ପଇସା ଆଣିଲେ, ପଛେ ପୂନ । ମୁଁ ଯାଉଚ—" ମଦୁଆଟା ଚାଲିଯାଉଛି ।

ଜେମା ପୂନକୁ କହିଲା—"ଭୁ ମୁହିଁ ଦଉଚୁ, ତୋର ମୁହଁବଢ଼ାରେ—। ହଉ ଲେ ହିଁଅ । ଆଉ ତ କୋଡର କାଖର ହେଇନଉଁ; ତତେ ବୁଝେଇଲି, ବଢେଇଲି । ମୋ କଥା ନ ମାନଲେ ପଛେ ପାଉଥିବୁ ଯେ—"ପୂନ ଜବାବ ଦେଲା ନାହିଁ, ଛଳ କଲା ।

ମା, ହିଁଅ ଦୁହେଁ ଭୂନଚାନ; କଳୁ ଘୋର ଅପଡ଼ ହୋଇଯାଇଛି ।

ଟଲ, ରଙ୍ଗ ଡାକଦେଇ ଫେରଗଲେ । ଜେମା ଖେର୍କି ଗୋଡ଼େଇଲା । ଆଜ ତାର ମଦ ନାହିଁ, ମନ ଖରାପ ।

କେତେ ରାତ ହେଲା । ଆକଟିଲା ପର ଦୁଆର ମୁହଁରେ ଶୋଇଛି କଟକଟ ଜେମା । ଆଖିକି ନଦ ନାହିଁ । ପୂନ କଅଁଳେଇ ଡାକଲା—"ବୋଉ—"

"କଣ ?"

"ଆଜ ଭୁ କଣାପାଣି ପିଇଲୁ ନାହିଁ, ତତେ ଭଲ ଲାଗୁ ନ ଥିବ ।"

"ତୋର କଣ ଯାଉଚ ?"

"ଆଗଭୁବ ଗୃରଣା ପଇସା ଆଣିଥିଲି ଯେ—"

"ପଇସା – ପଇସା—ଦେ ଆଣ୍ । କଏ ତତେ କହିଲା, ଆଗରୁସ୍ୱ ଆଣି ଖରଚ କରିଦବାକୁ ? ତୁ ଗୋଟାଏ ମଣିଷ ହେଲୁଣି ପଇସା ସାଇତ ରଖିବାକୁ ! ଦଉଚୁ—"

"ତୁ ଥା ବୋଉ, ମୁଁ ଯାଏଁ କଣି ଆଣିବ—"

"ନାହିଁ, ସେ ମଦ ଦୋକାନକୁ ପିଲାଲୋକ ଯାଆନ୍ତି ନାହିଁ । ମତେ ଦେ—"

ପଇସା ବଢ଼େଇ ଦେଲା । ଜେମା ଗୁଲିଗଲା । ତା ପରେ ପୁଣ କବାଟ କିଲିଦେଲା । ସାହାକୁ କା କରି ଲୋଟାଟିଏ ଧରିଲା । ଟରଟର ହୋଇ ଗୁଲିଗଲା କଳାଲମଣ୍ଡା ଘରକୁ ।

□ □

## ଚଉତିରିଶ

ଟାଣ୍ଡୁଆ ମଦରେ ଅଦହନିଆ ପେଟ ଫୁଲେଇ ଗୁଡ଼ଯାକ ଘୁଙ୍ଗାଳି ହେଲା ପରେ ସକାଳକୁ ସନିଆ ଉଠିଲା । ନିସ୍ତେଜ ଓ ହତାଶ ଲାଗୁଥାଏ । କେତେ ଦିନ ହେଲା ମନେ ମନେ ଏ କଣ ପାଗଳାମି ଘୋଟିଛି ତାଠି , ଯେପରିକି ବାରମ୍ବାର ଆଗକୁ ଦଉଡ଼ିବାକୁ ନିଶା ଉଠୁଛି । ଦୂରର କେଉଁ ଅଜଣା ଡକାଳର ହାତଠରରେ ବାରମ୍ବାର ଧାଉଁଛି, ବାରମ୍ବାର ବାଧା ପାଇ ଝୁଣ୍ଟିପଡ଼ି ଧୂଳିରେ ଲୋଟୁଛି, ପୁଣି ଉଠି ଧାଇଁ ପଳାଇବାକୁ ନୂଆ ଉନ୍ମାଦନା, ସବୁ ନିଷ୍ଫଳା ।

ଏଇ ତାର ବସା । ବଖୁରିକିଆ ହୋଉ ନାଁକୁ ଖଣ୍ଡେ କୁଡ଼ିଆ । ଘର ଲିପା ହୁଏ ନାହିଁ, ମରାମତି ହୁଏ ନାହିଁ । ଅବାଧରେ ଉଙ୍କାଗୁଳର ପୋକଗୁ ବାଉଁଶରେ ଚେମେଣି ଚଢ଼େଇ ବସା କରିଛନ୍ତି । ଚଟାଣ ପୋଲ୍ କରି ଖସିପଡ଼ିଥିବା କାନ୍ଥରେ ସହସ୍ରେ ଜଳା ଫୁଟେଇ ମୂଷା ଓ ଅନ୍ୟାନ୍ୟ ଜନ୍ତୁ । ସେହି ଗୁଳାଆସରେ ପାଉମାଙ୍କଡ଼ ଲୁଚକାଳି ଖେଳନ୍ତି, ଆଉ ସନିଆ ସେଠି ରହେ ।

କେତେ ଛଳରେ ପୁନିକୁ ସେ ତାର ବାଡ଼ୁଅ ଟୁଙ୍ଗୀକୁ ଡାକିଆଣିଛି । ପୁନି ନାକ ଟେକୁଛି, ଶୋଧୁଛି । ହସି ହସି ସନିଆ ତାର ଆପଣାର ପରି ମତାମତ ଶୁଣି ଛଳେଇ କହୁଛି, "ଘର ହପାଜତ୍ କରିବା ତୋ କାମ, ମୋ କାମ ଖାଲି ଖଟି ଖଟି ଆଣି ତୋ ଗୋଡ଼ତଳେ ଅଜାଡ଼ିଦେବା । ତେଣିକି ପେଜ ଟିକିଏ ରୁ ଦେଲେ ତ ମୁଁ ଖାଇଲି, ନଇଲେ ନାହିଁ ।"

ପୁରୁଖା ଲୋକଙ୍କ କଥାର ଅନୁକରଣ, ମିଛିମିଛିକିଆ ଘରକରଣା ଖେଳ, ପିଲାଦିନର କଥା ସେ । ପିଲାଦିନର ଖିଆଲ୍ ବଡ଼ଦିନର ପାଗଳ ଖେଣ୍ଟା ହୋଇ ସମସ୍ୟା ହୋଇ ଠିଆ ହୋଇଛି । ଆଶା ବଡ଼ ଦୂରରେ । ଘରମଣେଇଁ, ମଙ୍ଗେଇ ପୁନିକୁ ଘରକୁ ଆଣିବାକୁ ତାର ସମ୍ବଳ ନାହିଁ । ପୁନିର ବୋଉର ଦୃଷ୍ଟିରେ ସେ ନା-ପସନ୍ଦ ।

ବୃଥା ମନ ହାଲୁ ହାଲୁ । ଏ ଦେହ, ଏ ଭେକ । ଖାଲି ବାବୁରି ବାଳ, କଳା ଫରୁଆ ଓ ଗୀତବୋଲରେ କିଛି ଘଟେ ନାହିଁ ।

ଏମିତି ଏ କରି ସେ କରି ହେଉ ହେଉ, କେଉଁଦିନ ହୁଏ ତ ପୁନିବୋଉ ପୁନିକୁ ଆଉ କାହାକୁ ଦେଇ ଦେଇଥିବ ।

ଭାବୁ ଭାବୁ କାମକୁ ଚାଲିଗଲା । କାମରେ ମନ ଦେଲା । ଧୀରେ ଧୀରେ ଅନ୍ୟ ଚିନ୍ତା ମନ ଭିତରୁ ଉଭେଇ ଯାଇ ପଡ଼ିରହିଲା ସହଜ ସରଳ ଜୀବନ ନଦୀବନଆଁ । ଝାଳ ବୋହି ବୋହି ସେ ସଜ ହୁଏ, ସତେଜ ବଣେ । ମନରେ ଦରଜ ରହେ ନାହିଁ ।

ଉବୁଉବଆବେଳେ ପୋଖରୀକୁ ଗାଧେଇ ଗଲାବେଳକୁ ପୋଖରୀ କୂଳରେ ଚାରିଆଡ଼େ ନୂଆ ଘର ତିଆରି କାମ ଲାଗିଛି । ଇଟା, ବାଲି, ଚୂନ, ମଣିଷ । ସେହି ସେଉଁଠି—କାମ ଅଛି କି ବୋଲି ପଚାରିଗଲେ ଲୋକେ ଚୋରି ଅପବାଦ ଲଗାନ୍ତି । ଧୀରେ ଧୀରେ ସବୁ ଧୋବ ଚରଣିବ । ଥିଲାବାଲାଙ୍କ କୋଠା । ହାସହାଁସିଆ ହୋଇ ସନଆର ଖାଲି ଅନେଇଁ ରହିବା । କୂଳରେ ଠିଆ ହୋଇ ପକ୍ଷି ହେଉ ହେଉ ଅଡ଼ଡ଼ା ଉପରର ଉଚ୍ଚହୁଙ୍କା ନଘା ପଡ଼ିଥିଲା । ମଲ୍ଲିଗଛର ଥେଣ୍ଟା ଉପରେ ସାନ ବଡ଼ ହୋଇ ଅସଂଖ୍ୟ ଉଚ୍ଚହୁଙ୍କା । ଭର ଭର ହୋଇ ଗଡ଼ାଲି ଲାଗିଛନ୍ତି । ଦନ ଦନ ବଢେଇ, ଗୁଣ୍ଡ ଲାଳ ଡାଳ, ବାଦବୁଦଆ ହୋଇ ଗଢ଼ିଲାଗିଛନ୍ତି ନୂଆ ନୂଆ କେତେ ହୁଙ୍କାର ଗମ୍ବୁଜ । ଭାବୁଥିବେ ପରା—ଏହି ଗଢ଼େଇ ତାଙ୍କର ନଢଦନକୁ ରହିଥିବ । କେତେ ଦମ୍ଭ, କେତେ ଉଞ୍ଚ । ଏମିତି ତାଙ୍କର କୋଠାଗହଳି ସହର । ମଣିଷର ଆଶାରେ ସେ ଅକ୍ଷୟ, ଅମର । ପାଗଳ ପରି ସେହି ହୁଙ୍କା—ପୃଥିବୀ ଉପରେ ଗୋଇଠା ମାରିବାକୁ ସନଆକୁ ଭଲ ଲାଗୁଥାଏ । ଗୁଣ୍ଡା ହୋଇଯାଉଛି । ଗୋଡ଼ତଳେ ବଡ଼ ବଡ଼ ଖାଲ ଫୁଟିଗଲାଣି । ସନଆ କୋର ଲାଗିଛି, ଛେପ ପକୋଉଛି ।

କିଛି ମୂଲ୍ୟ ନାହିଁ ଏ ଚଗଲାପଣରେ । ପାଲବଡ଼ାରେ କାହାର ମୂର୍ତ୍ତି ଗଢ଼ି ନଆଁରେ ପୋଡ଼ିଲା ପରି, ବନଯାକର କାମରେ ସେ ଗଣ୍ୟ ନୁହେଁ ।

ମନ ଭୁଲେଇ ଦେଲା । ନଢ ବନର ନର୍ଘଣ୍ଟରେ ମାଗୁରେ ତାର ମନ ।

ଗ୍ରାଇଲେଉଟା ବେଳ ହୋଇଥାଏ । ମହାନଗରୀ ଆନନ୍ଦରେ ଉଚ୍ଛ୍ୱଳ । ଚାଉଁଚାଉଁଆ ଆଲୁଅରେ ସୁସ୍ଥ, ସବଳ ଭଦ୍ରପିଲା ରଙ୍ଗ ରଙ୍ଗର ପୋଷାକ ପିନ୍ଧି ଖେଳ ଖେଳୁଥାନ୍ତି । ପଡ଼ିଆର ଘାସରେ ସୁନ୍ଦା ଆଶାର ରଙ୍ଗ । ଠେଲାଠେଲି ଉଚ୍ଚତ କୋଠାର ମହୁଡ଼ ଉପରେ ତେଜ ଆଲୁଅ ପଡ଼ୁଛି । ସନ୍ଧ୍ୟା ପୂର୍ବର ସହର । କାମର ଭିଡ଼ କରକୁ ଠେଲିଦେଇ ଆନନ୍ଦ କରୁଛି । ଜନତା ଗହଳରେ ଆପଣାକୁ ଭସାଇ ଦେଇ ଆନନ୍ଦରେ ବୁଡ଼ ପାରିବା ଲାଗି ପାଦ୍ଧି ଖୋପ ପରି ଅଗଣିତ ବସାଘରୁ ମଣିଷ ଛୁଟି ଆସିଛନ୍ତି । ମହାନଗରୀର କୋଲାହଳ ଆଶାର ବାଣୀ ଗାଏ । ଗଣର ଗୀତରେ ଜଣକ ମାଉଉଠେ ନୂଆ ନ୍ୟାପାସ୍ତ୍ର ଖୋଜିବାକୁ ।

ବାଟ ଗ୍ଲୁ ଗ୍ଲୁ—

ପୁଣି ସେହି ପୁରୁଣା ପରିସ୍ଥିତିରେ ପୁରୁଣା ଚିନ୍ତା । ମୁହଁ ସଞ୍ଜ ଆସୁଛି, ଏତିକବେଳେ ସମ୍ବନ୍ଧର ଆଶ୍ରୟ ପାଇଁ ସନିଆର ମନ ଖୋଜେ । ସେ ଆଉ ପୁନି ଏବଂ ସୁଖ । ଅନେଇଁ ରହିଲେ ଲୋକ ଗହଳିରେ ଧକାଧକ, ଠେଲାଠେଲି । ଭାବି ବସିଲେ ଗ୍ଲୁଆଡ଼େ ଅସମତା, ପାତର ଅନ୍ତରର ସାତ ପାଞ୍ଚ ।

ବଡ଼ ସହରରେ ଏଡ଼େ ସମ୍ପତ୍ତି; କି ଭାଗ ତହିଁରେ ସନିଆ ହାଡ଼ିର ?
ଖାଲି ଭୂଇ ରଜା, ଭୂଇ ରାଣୀ । ବାକି ସମସ୍ତେ ଲୁଖୁରାମୁଣ୍ଡିଆ ।
କେବଳ କେଞ୍ଚାଏ ମେଞ୍ଚାଏ, ଦରିଦ୍ରର ଭାଗ ଦରିଦ୍ରପଣରେ ।

ଏମିତି କହେ ଧନୀବୁଢ଼ା । ତାର କଥାର ଅର୍ଥ ବାରି ହୋଇପଡ଼େ ମୁହଁର ଭଙ୍ଗୀରୁ, ତତଲା ଆଖିରେ ନିଆଁର ତାଉରୁ । ସେ ବିଦ୍ରୋହର ଦାୟିତ୍ୱ ନିଏ ନାହିଁ, ବିଦ୍ରୋହ ଶିଖାଏ । ତାର ତଥ୍ୟ ନୂଆ ପ୍ରେରଣା ଆଣେ । ଅନ୍ତରସ୍ଥ କେବଳ ମଣିଷଚମଡ଼ାର ନିସ୍ପଦ ରହିବା ପ୍ରବୃତ୍ତି, ମନର ଅନ୍ଧାରି ଗର୍ଭ୍ଭିରର ଆଦିମ ଭୟ । ତେଣୁ କାମ କରିବାର ନିଶା ରୁଚ୍ଛା କଥା ସୁଅରେ ଭାସିଗ୍ଲେ, ଧୋଇ ଧୋଇ ଥଣ୍ଡା ପଡ଼ିଯାଏ । ଧନୀବୁଢ଼ାର କଥା ସବୁଦିନେ ଖାଲି ଭଲ ଲାଗେ ।

ଦୀପ ଲଗୁଥାଏ ।
ଟୁଙ୍ଗୀ ଦୁଆରେ ସନିଆ ଡାକିଲା—"ଧନୀଅଜା, ଘରେ ଅଛ ?"
"ଅଛି । କିଏରେ ବାପ, ଭିତରକୁ ଆସ ।"

ଗ୍ହିଁଦେଇ ଧନୀବୁଢ଼ା କହିଲା—"କୁକୁର ପିଟି କେତେ ଅଜଲ୍ଲରେ ପିଲା ? କାହିଁ, ଅଜା ପାଇଁ କିଛି ଆଣିଛୁ ନା ରୁଚ୍ଛା ହାତରେ, ହେଇରେ ?"

କଣ୍ଠାଗ୍ରୁଟ ପରି ପିଟିପକାଏ ବୁଢ଼ାର କଥାଗୁଡ଼ାକ ।
କଳୁ ଦମ୍ଭ ସେହି, ଖୁଣ୍ଟ ସେହି । ଆଉଁସିବ, ନୂଆ ବୁଦ୍ଧି ଦେବ ।
ସନିଆ ତାର କାହାଣୀ କହିଗଲା, ମନ ହାଲୁକା ଲାଗିଲା ।

ଧନୀ ଅଜା ଠୋ ଠୋ ହସିଦେଲା । "ପାଗଳ, ଏମିତି ବାଡ଼େଇ କସ୍ଟଡ଼ ହେଲେ ଯଦି ସବୁ ମିଳିଯାଉଥାନ୍ତା ! କୁକୁର ବାଡ଼େଇ, ପଇସା କମେଇଁ ବାହା ହବୁ, ଘର କରିବୁ; ନୁହେଁରେ—?"

ଟିକିଏ ରହି ତାର ଥରି ରୁଣ୍ଡରେ ତାଟି ଚହଟେଇ କହିଲାଗିଲା—"ଗ୍ଡ ଗ୍ଡ ଏତେ ବକିଲି, ଡାକହାକ ବୁଝେଇଲି, ସବୁବେଳେ ହୁଁ-ହାଁ । କୁଆଡ଼େ ଗଲା ସେ କଥା ! ସବୁ ଗଲା ଭଣ୍ଡାଗ୍ଣ-ଜଳାରେ ? କଣ ମାଇକିନିଆ ହିଅ ହେଇଚୁ ନା ମଣିଷପିଲା ନୋହୁଁ, ଘୁଷୁରିପିଲା ? ଓଲା ଲୋକ ପଇସା ବୁଜୁଲା ଦେଖେଇ

ଦେଖେଇ ବସିଛନ୍ତି, ତାଙ୍କଠୁଁ ନେ । ଦୁବଳିଆ ଲୋକ ମାହାଳିଆରେ ଚର୍ବି ନେସି ହୋଇ ପଲସାବୁଡ଼ ଗଦେଇ ବସିଛନ୍ତି, ତାଙ୍କଠୁଁ ନେ— ।"

"ସେଇ ଚୋରବିଦ୍ୟା !"

"ହେଲେ କଣ ହେଇଗଲା ? ତୁ ତ ହାଡ଼, ଯାହା ତୁ କର, କିଏ କହିବ ତତେ ଭଦ୍ରଲୋକ ବୋଲି ? ପେଟ ପୋଷ, ନାହିଁ ଦୋଷ । ଭୋକରେ ମରିବା ତ ଆତ୍ମହତ୍ୟା, ମହାପାତକ । ସେ ବଡ ଦୋଷ କି ଚୋରି କରିବା ବଡ଼ ଦୋଷ ? ଆଜି ଯେତେ କୁକୁର ବାଡେଇଲୁ, କଣ ପୁଣ୍ୟ କଲୁ ? ଭୋକରେ ଗଡ଼ ମରୁଥିଲେ, କୋଠାରେ ବସି ମଣିଷ ହସୁଥିବେ ରେ ! ତୋର ଖାଲି ଘୂଅ କାମ, ଅଇନା କାମ; ତୋର ପାଇଁ ଅଇଁଠା ପତର, ଛିଣ୍ଡା କନ୍ଥା, କଣା ଗୁଳ । ତାଙ୍କ ପାଇଁ ଦୁନିଆ ଗୋଟାଟା । ଖଡ଼ା-ଚୋପା, ଆମ୍ବଟାକୁଆ, ମଣିଷର ଘୂଅ, ମଣିଷର ମଇ, ସବୁ ଖାଲି ତୋର ବ୍ୟବହାର ପାଇଁ ରେ ଓଲ୍ଲୁ ! ଆଖି ଥିଲେ ଦେଖନ୍ତୁ— "

"କାମ କରିବ ଧନୀ ଅଜା, ବାଟ ବତା—"

"ସେଇଆ କହ, ଅଣ୍ଡା ଭକ୍ତ୍ । ମରିବୁ ତ ଦନେ, ସେଥିପାଇଁ ଏତେ ଡର ! ହାତ ଅଛି କାମ କରିବାକୁ, ଧରାପଡ଼ିଲେ ଗୋଡ଼ରେ ବଳ ଅଛି ଦୌଡ଼ି ପଳେଇବାକୁ, ଦେହରେ ତାକତ ଅଛି ପିଟି ମାରି ପଳେଇଯିବାକୁ । ମତେ ଅନା, ମୁଁ ଦାଗୀ; ପରେଇ କରିଚ ?"

ଓଟାର ଧରିଚ୍ଛି ଆଖିକି ଆଖି । ଦୀପ ସଳିତା ଜଳୁଚି । ଗମ୍ଭୀର ମୁହଁରୁ ବିଷର ବୀଜ ବିଛିଦେଉଛି । ସ୍ଥିର ଦାଢ଼ି ବର୍ଣ୍ଣବୋଧ ବହିର ଋଷିର ଛବି ।

ସନିଆ ମୁହଁ ବୁଲେଇ ନେଇ ପାରୁ ନାହିଁ ।

କହିଲଗିଛି ଧୀରେ ଧୀରେ ଅଚ୍ଛିଣ୍ଡା ସୁଅ ।

"ଡର୍ ନା, କେତେ ଟେଲା ତାଲିମ୍ କରିଚ; ସେମାନେ ବି ବଞ୍ଚିଛନ୍ତି । ମଞ୍ଜି ବୁଣି ଦେଇଛି, ଗଛ ହୋଇଛି । ଲୋକେ କହନ୍ତି ଚୋରି ଯାହାର ଯାଏ, ସେ କହେ ଚୋର । ଯେ ନେଇ ପଳାଏ ସେ କହେ, ପାରିଲାପଣ । କାହାର କଣ ଝାଲବୁହା ମାଲରେ ହାଥ ? ସେମାନେ ଫାଙ୍କି ମାରନ୍ତି; ଗରିବର ଦାନା ଲୁଟନ୍ତି, ତାଙ୍କୁ ଉପରୋଧ କଣ ? ଖାଲି ଆମୁକୁ—କାକୁଡ଼ ଚୋରକୁ ମୁଣ୍ଡକାଟ ଶାସ୍ତି ।"

ଆଖି ଦିଟା ଜଳୁଥାଏ, ଧୋବଲା ଦାଢ଼ି ଫୁରୁ ଫୁରୁ ଉଡ଼ଲାଣି । ଗୋଟାଏ ଓଲଟପାଲଟମସ୍ତ ବିକଟ ତୋଫାନ ପରି ତାର ମୂର୍ତ୍ତି । ସନିଆ ଆଖିବୁଜି ଦେଲାଣି, ମନେ ମନେ ଧ୍ୟାନ କଲା ପରି । ବିଷମୂର୍ତ୍ତି । ଦୁନିଆ ଜଳିଯାଉ, ମଣିଷ ତାର ଓରମାଣ ମେଣ୍ଟାଇବ ।

"ଚକାଡୋଳାକୁ ଧ୍ୟାନ କଲୁ କି ରେ ପୁଅ ! ଉଠ୍, ଶିଖିଯା ପଦେ । ନେଡ଼ରେ ମାଡ଼ ସିନ୍ଧକାଠି କେମିତ ପେଲିବୁ ଅଭ୍ୟାସ କରିବୁ ଆ ।" □ □

# ପଇଁତିରିଶ

ମାନମୟୀ ଗୀତ ବୋଲୁଛି, ସନ୍ଧ୍ୟାବେଳ । ଫୁରୁଫୁରିଆ ପବନ ରେଶମୀ ଶାଢ଼ୀ ଭୁଲେ ଝିଙ୍କାଓଟାସ୍ ଖେଳୁଛି । ମାନମୟୀ ଅର୍ଗାନ୍ ବଜା ଉପରେ ଆପଣାକୁ ଅଜାଡ଼ି ଦେଇଛି । ତନ୍ମୟ ହୋଇ ଲେଟି ହେଉଛି ସଙ୍ଗୀତର ଶବ୍ଦ-ସମୁଦ୍ରରେ । କେତେ ଅଜଣା ଆକାଙ୍କ୍ଷାର ସଫଳତା ଖୋଜି ଅନୁଭୂତରେ ଛୁଇଁବାକୁ, ବୁଡ଼ିବାକୁ ଏହି ତାର ସମସ୍ତ ସମୟରେ ଉପାସ୍ୟ । ଗାଧୋଇ ପାଧୋଇ ସଜ ହୋଇ ଠିଆ ହେବ, ରକ୍ତର ବିନ୍ଦୁରେ ବିନ୍ଦୁରେ ଆପଣାର ଅବୁଝା ପ୍ରଶ୍ନର ଉତ୍ତର ପାଇବ । ସେ ମାନମୟୀ, ସେ ଜଗତର ବିସ୍ମୟ ।

ତଳେ ଅଘୋରବାବୁ ରେଡ଼ିଓ ଖୋଲି ଶୁଣୁଛନ୍ତି ଦୁନିଆଁର ଖବର । ସକାଳେ ଉଠି, ସନ୍ଧ୍ୟାରେ ସୂର୍ଯ୍ୟାସ୍ତ ଅସ୍ତ ହୋଇଗଲା । କଣ କଣ ଘଟିଛି ସସୀମ ଗୋଲାକାର ଏହି ସାନ ପୃଥିବୀରେ । ବିକୃତ କଣ୍ଠରେ ଯନ୍ତ୍ର ପ୍ରଚାର କରୁଛି ମଣିଷର ଖବର । ଅଘୋରବାବୁ ତାହା ହିଁ ଶୁଣୁଛନ୍ତି । ଦେଶ-ଦେଶର ଜଗୁଆଳିମାନଙ୍କ ସ୍ଥାନରେ ନିଜକୁ ଆରୋପି, କେଉଁ କଥାରେ ଆପଣାର ଜୟ ବୁଝୁଛନ୍ତି, କେଉଁଥିରେ ବା ଆପଣା ମତର ବିରୋଧୀ ଭାବ । ବଦଳାଦେଇ କାମ କରେଇଲା ପରି ସେ ବି ଜଣେ ସ୍ରଷ୍ଟା । ଖବର ଶୁଣିଲାବେଳେ ଦାୟିତ୍ୱରେ ଗୁରୁଗମ୍ଭୀର ।

ବାହାରେ ଖୁବ୍ ଶବ୍ଦ । ସବୁଜ ପରି ପର୍ଦ୍ଦାଟି ଖୋଲି, ଥରି ଥରି ପଶିଆସିଲେ ଅଜୟବାବୁ । କାଖତଳେ ପୁଳାଏ ବହି ।

"କଣ ହେଉଚ ଅଘୋରବାବୁ, ରେଡ଼ିଓ ? ଆଜି ଖେଳ ନାହିଁ ?"

"ନମସ୍କାର । ବସନ୍ତୁ ।"

"ମାନମୟୀ ପାଇଁ ବହି ଖଣ୍ଡେ ଦିଖଣ୍ଡ ଆଣି ଦେଇଥିଲି—"

"ଯାଉନ୍ତୁ ଦେଇ ଆସିବେ, ଭିତରକୁ ଯାଉନ୍ତୁ—"ଅଧେ ଅନ୍ୟମନସ୍କ ହୋଇ ଅଘୋରବାବୁ କହିଲେ, ରେଡ଼ିଓରେ ମନ ଦେଲେ; କିନ୍ତୁ ଅଜୟବାବୁଙ୍କ ହର୍ଷ-ଚିତ୍କାରରେ ପୁଣି ଧ୍ୟାନ ଭଗ୍ନ ହେଲା—"ଏଁ ମୁଁ ଭିତରକୁ ଯିବି ? ଆପଣ ଯିବେ ନାହିଁ ?"

ଓଠ ବଙ୍କେଇ ଅଘୋରବାବୁ କହିଲେ—"ଆପଣ ଯାଉନ୍ତୁ; ଆପଣ ଦାର୍ଶନିକ, ତେଣୁ ନିର୍ଗପଦ ।"

କିଏ ଶୁଣୁଛି ତାଙ୍କ କଥା !

ବନ୍ଧୁଜନ କାଖରେ ଯାଇ, ଆନନ୍ଦରେ ହେଣ୍ଡ୍ରିମାଣ ଉଡ଼ି ଉଡ଼ି ଚାଲିଗଲେଣି ଅଜୟବାବୁ । ମାନମୟୀ ଜବତ ହେଉ । ସାଲି ଗଲା ।

ଅଘୋରବାବୁ ରେଡ଼ିଓର ଫଳକ ବୁଲାଇଦେଲେ ।

"ଆରେ, ଆରେ—ଆପଣ କେତେବେଳୁ ଠିଆ ହୋଇଛନ୍ତି—"

ସାପ ପରି ଫଣାକୁ ପଛକୁ ଢାଳଦେଇ ଦୋହଲି ଦୋହଲି ମାନମୟୀ ପାଖକୁ ଆସୁଛି । ସଙ୍ଗୀତ ଉତ୍ସରୁ ସ୍ୱପ୍ନବୋଳା ମୁହଁ, ଛଳ ଛଳ ଆଖିରେ ମୋହିନୀ, ପ୍ରାଣର ଆବେଗରେ ଯେପରି ତାଙ୍କରି ଉପରେ ନିଜକୁ ଅଜାଡ଼ି ଦେବାକୁ ଚାହୁଁଛି ହସିହସିକା ।

"ମିଛରେ ଆସି ମୁଁ ବାଧା ଦେଲି ମାନ । କି ସୁନ୍ଦର ଗାଉଥିଲ; ସତେ କି କାଶ୍ମୀରର ବୁଲ୍‌ବୁଲ୍ । ହୋସ୍ ନ ଥିଲା ମୁଁ କୁଆଡ଼େ ଭାସି ଚାଲିଛି—।" ଅଜୟବାବୁ ଥରୁଥିଲେ ।

"ଆହା-ହା, କହିବାକୁ କି ସ୍ୱରୂପ ! ତା ହେଲେ କାଶ୍ମୀର୍ କରି ଆପଣ । ନିଜେ । ବୁଲ୍‌ବୁଲ୍‌ର ସଙ୍ଗୀତର ଗୁଣ ବୁଲ୍‌ବୁଲ୍‌ର ନିଜର ନ ଥିଲା, ବୁଝିଲେ ? ସତେ କଣ ମୁଁ ଏତେ ଅସୁନ୍ଦର ?"

ମୁହଁ ପାଖେ ତାର ସୁନ୍ଦର ମୁହଁ, ପରୀକ୍ଷା ଦେଉଛି ।

"କଣ ଯେ କହ ! ତୁମ ପରି—"

"ହଉ, ବସନ୍ତୁ ଆପଣ । ଯାଏଁ, କହିଦେଇ ଆସେ ଚା ଆଣିବ—"

"ଯେତେବେଳେ ଆସିଲେ ଖାଲି ଚା—"

"ନାହିଁ, ନାହିଁ; ଖାଲି ଚା' ନୁହେଁ । ଟିକିଏ ବସନ୍ତୁ ନା—" ଦୌଡ଼ି ଦୌଡ଼ି ସେ ଚାଲିଗଲା, ଅଜୟବାବୁ ଏକୁଟିଆ । ଆଜି ଏ କି ପରିବର୍ତ୍ତନ, କି ସୌଭାଗ୍ୟ ! ସୁଖ-ଭାବନାରେ ଭଉଁରି ଖେଳୁଥିବା କୁଞ୍ଚୁକୁଞ୍ଚିଆ ବାଳ ସହିତ ବଦ୍ଧାନ୍ ମୁଣ୍ଡଟିକୁ ହାତ ଉପରେ ଆଶ୍ରା କରି ପ୍ରତୀକ୍ଷମାଣ ମନରେ ଅଜୟବାବୁ ଅପେକ୍ଷା କରି ରହିଲେ । ମାନମୟୀର ଏପରି ସମାଦର; ଏପରି ବ୍ୟବହାର ତାଙ୍କ କଳ୍ପନାର ବାହାରେ । ଚାହୁଁ ଚାହୁଁ ହାତଗଢ଼ା ଭବିଷ୍ୟତର ସ୍ୱପ୍ନ ପାଖକୁ ଆସିଲା । ସତେ କି ମାନମୟୀ ହିଁ କହୁଛି, ବନ୍ଧୁ ଅଘୋର ମଧ୍ୟସ୍ଥ ହୋଇଛି, ସମସ୍ତେ ହିଁ ଭରିଛନ୍ତି । ଗୋଲାପୀ ଶାଢ଼ୀ ପିନ୍ଧି, ଓଢ଼ଣା ପକାଇ ମାନମୟୀ ଆସୁଛି । ଦୂରରେ ହେଉଛି ଶଙ୍ଖଶବ୍ଦ, ଦାଣ୍ଡରେ ମହୁରୀ ।

"ଏଇତକ ଖାଇନଅନ୍ତୁ ସତେରେ—ନାହିଁ ନାହିଁ, ଆପତ୍ତି ଶୁଣିବ ନାହିଁ—" ଆଲୁଅରେ ମହନ୍‌ଭୋଗ । ଗମ୍ଭୀର ହୋଇ ତା ଉପରେ ବସିଛି ପାଞ୍ଚଟି

ଅଙ୍ଗୁଠିର ଚହ୍ନ । "କଣ ଦେଖୁଛନ୍ତି, ଆରେ–ଆରେ—!" ମହନ୍‌ଭ୍ଲେଗ ଉପରେ ପାଞ୍ଚ ଆଙ୍ଗୁଳର ଚହ୍ନକୁ ଅଜୟବାବୁ ଧୀରେ ଧୀରେ ଆଉଁସୁଛନ୍ତି । ଆଖିରେ ଅଛ ସ୍ବପ୍ନ ଧଚ୍ଛା ।

"ଆପଣ ଆଗ ପସନ୍ଦ କଣ ଯାଣ ପରେ ଖାଆନ୍ତି, ନୁହେଁ ?"

"ଏଁ ? ମାନେ ?"

"ମାନେ ?—ଆପଣ ପିଲାଦନେ ଭାରି ଏକବାଜିଆ ପିଲା ଥିଲେ । ଖାଇଲାବେଳେ ବାଛୁଥିଲେ, ଭାତ ଗଣ୍ଡିଏ ପାଟିରେ ପୂରେଇ ପୁଣି ଯାକୁଥିଲେ । ଖାଇଦଅନ୍ତୁ ଝାଉ ଝାଉ କରି, ମୁଁ କହୁଚ—" "ଯେତେ ଦୂରଯାକେ ମୋର ଆଙ୍ଗୁଠିର ଚହ୍ନ, ସବୁଯାକ ଖାଇବାକୁ ପଡ଼ିବ—"

"ଉଃ, ଗରମ୍—"

"ଗରମ ହେଇଚ, ଆଁ କରନ୍ତୁ ଖୋଇଦେବି । ବାସ୍ତବିକ୍ ଆପଣ ଭାରି ପିଲାଳୋକ । ହୁଁ, ଦେଖାନ୍ତୁ—"

"ନାହିଁ, ନାହିଁ, ନାହିଁ; ମୁଁ ଖାଇଦେଉଚ, ମାନ—"

"ବେଶ୍—"

ଚଟଳା ଅଠାଳିଆ ମହନ୍‌ଭ୍ଲେଗ, ଚଂଚଳ ଖାଇବାକୁ ପଡ଼ିଲା । ଆଖିରୁ ପାଣି ବାହାରିଲାଣି । ମାନମୟୀ ଚଉକି ପିଠିରେ ହାତ ଦେଇ ଠିଆ ହୋଇ ଦେଖୁଛି, ରେଶମୀ ଶାଢ଼ୀ ପବନରେ ଉଡ଼ୁଛି । ଆଜୟବାବୁ ମନେ ପକେଇଲେ, ବହି ଆଣିଥିଲେ । ତୁମ ପାଇଁ ବହି ଆଣିଥିଲି, ଦେଖିଲଣି ?"

"ସତେ !"

ବହିତକ ହାତକୁ ବଢ଼ାଇ ଦେବାକୁ ପଡ଼ିଲା । ଆଗ୍ରହରେ ସେ ଝାମ୍ପି ନେଉଛି ! ସତେ କ ସବୁଯାକ ପଢ଼ିପକେଇବ ଏକା ନଶ୍ବାସରେ !

"ଆପଣ ପ୍ରଫେସର ହେବେ—ନା ?"

"ହଁ, ଆଶା ତ ଅଛି—"

ମାନମୟୀ ଥରି ଥରି ହସୁଥାଏ । କହିଲା—"ପ୍ରଫେସର ଜୀବନରେ ଆଉ କାହାରି ସ୍ଥାନ ନାହିଁ ବୋଧହୁଏ—" ଅଜୟବାବୁ ବ୍ୟାକୁଳ ହୋଇ ଅନେଇଁ ଦେଲେ । ଦେଖିଲେ; କଣେଇଁ ଚାହିଁ ମାନମୟୀ ହସୁଛି ।

"କଣ ପ୍ରଫେସର ଜୀବନ ?"

"କିଛି ନାହିଁ—" ହସି ହସି ମାନମୟୀ ଲୋଟୁଥାଏ, ବହିଟିକ ଓଠରେ ମାଡ଼ୁଥାଏ, ଗାଲରେ ମାଡ଼ୁଥାଏ । "ଖାଲି ବହି ବହି—କି ସୁନ୍ଦର ଜୀବନ—ସ୍ୱର୍ଗୀୟ—"

ଆଉ ବଖରାରେ ।

ଇନ୍ଦ୍ରଜିତ୍‌ବାବୁ ଆସିଛନ୍ତି ।

"ବାଃ, ଅଘୋର, ରେଡ଼ିଓ ଖବର ସବୁ ଭଲ ?" ବସିପଡ଼ି ସିଗାରେଟ୍ ଲଗାଇଲେ । କହିଲେ—"ସବୁ ଠିକ୍‌ଠାକ୍ ହୋଇଗଲା ତା ହେଲେ । ହାଡ଼ିସାହି କିଣିନେବାକୁ ଅନୁମତି ମିଳିଗଲା । ତୁମର ନାଁ ଯେ ବାହାଦୂର୍—"

"ଦେଖ ଇନ୍ଦ୍ରଜିତ୍, ସେପରି ବାହାଦୂରୀ ମୋର କାମ୍ୟ ନୁହେଁ ବା ଏମିତି ବାଜେ ସାଧାରଣ କଥାରେ ଅଭିନନ୍ଦନ ମୂଳେଇବାକୁ ମୁଁ ଖୋଜୁ ନାହିଁ ।"

"ଆଃ, ରାଗୁଛ କାହିଁକି ? ତୁମେ ଅଭିନନ୍ଦନ ଖୋଜୁନାହିଁ, କିନ୍ତୁ ଅଭିନନ୍ଦନ ତ ତୁମକୁ ଖୋଜେ । କଥାଟା ଏଡ଼େ ସାଧାରଣ କି ବାଜେ ନୁହେଁ ଅଘୋର ! ସେ କଥା ତୁମେ ବି ଜାଣ ମୁଁ ବି ଜାଣେ । ଘର ପାଖରେ ମସ୍ତବଡ଼ ଜାଗା, ଗୋଟାଏ ପ୍ରକାଣ୍ଡ ଫ୍ୟାକ୍ଟ୍ରୀ ହୋଇପାରିବ । ଗୋଟାଏ ବହୁମୂଲ୍ୟ ସମ୍ପତ୍ତି—"

"ସ୍ଟପ୍, ମୋର କି ଯାଏ ! ତୁମେ ତ ଭଲ କରି ଜାଣ ଏ ଯୋଜନାକୁ ମୁଁ କିପରି ଘୃଣା କରେ, ହଜାରେ ଥର କହିଛି—" ପ୍ରଶଂସମାଣ ଦୃଷ୍ଟିରେ ଅଘୋରବାବୁଙ୍କୁ ଅନେଇ ରହି ଇନ୍ଦ୍ରଜିତ୍ କହିଲେ—"ବାଃ, ବାଃ, ବାଃ, ଚମତ୍କାର ! ତୁମେ ଏଡ଼େ ନିଖୁଣ ! ମୁଣ୍ଡବାଳଠୁ ଆଙ୍ଗୁଠିର ଅଗଯାକେ ! ଯେତେ ଚେଷ୍ଟା କଲେ ବ୍ୟବସାୟ ପାଇଁ ତୁମର ମନ, ତୁମର ବୁଦ୍ଧି ମୋର ହୋଇପାରିଲା ନାହିଁ । ତୁମେ ଆଶ୍ଚର୍ଯ୍ୟ ।" "କଣ ଏଥିରେ ଆଶ୍ଚର୍ଯ୍ୟ ହେବାର ଅଛି ?" ଦୁଃଖିତ ହୋଇ ଅଘୋରବାବୁ କହିଲେ । "ନ ଜାଣିଲା ପରି କହୁଚ କାହିଁକି ମ ? ଏଇ ତ କାଇଦା । ଯାହା କହିବ, ତାହା ଥିବ; ଯାହା ଭାବୁଥିବ ତା'ଠୁ ବହୁ-ଦୂରରେ । ଯେପରି ଅବସ୍ଥାକୁ ଯେଉଁପରି ରୂପ । ପ୍ରକୃତରେ ସିଦ୍ଧି ପାଇପାରିବା ମଣିଷର ବହୁରୂପ । ଯୋଜନାକୁ ଘୃଣା—ତୁମେ ଅବଶ୍ୟ କର, ତା ନ ହେଲେ ଯୋଜନା ତୁମର ହାତରେ ହୋଇପାରନ୍ତା କାହିଁକି ? କିନ୍ତୁ ବାହାଦୂରୀ ଏକୁଟିଆ ତୁମର ନୁହେଁ, ତାହା ମୁଁ ଜାଣିଛି; ବୁଝେଇବାକୁ ପଡ଼ିବ ନାହିଁ । ସୁବିଧା ଆମର ଜନ୍ମଗତ, ବଳେଇ ଦେବାକୁ ଆମରି ଲୋକ । ସ୍ଥାନକୁ ସ୍ଥାନ, ଠିକ୍ ଗୋଟାଏ ଫୁଟ୍‌ବଲ୍ ମ୍ୟାଚ୍ ପରି । ବାପାଙ୍କଠୁ ଆସିଲା, ତୁମେ ଧରିଲ; ତୁମଠୁ ଗଲା, ଧରିଲେ ଶୈଳେନ୍ଦ୍ରବାବୁ; ତାଙ୍କଠୁ ଅନ୍ୟମାନେ, ପୁଣି ତୁମେ । ଏଥର ସିଧା ଗୋଲ୍ । ଯୋଜନା ଅଟକେଇବ କିଏ ? ହାଡ଼ିସାହିର ମଲମୁଣ୍ଡିଆ ?"

"ଆଜି ଠିକ୍ ଯୁକ୍ତିବାଦର ବେଦାନ୍ତ ଗାଇଲା ପରି ଦର୍ଶନଶାସ୍ତ୍ର ଚଳେଇଛ ଯେ ଇନ୍ଦ୍ରଜିତ୍ ! ଯାହା କହୁଛ, ତାହା ତୁମ ନିଜର ଧାରଣା ହୋଇପାରେ । ପରନ୍ତି ତାକୁ ଆରୋପ କରି ଭାଇ ଲାଭ କଣ ? ତୁମେ କଣ ସତେ ଭାବୁଛ, ଦାଉଁ ମାରିନେଇ ମୁଁ ଭାରି ଖୁସି, ନୁହେଁ ? ଗୁଡ଼ାଏ ନିଆଶ୍ରା ଗରିବ ଲୋକ, ହୀନ କାମ ନ କଲେ ଯାହାଙ୍କୁ ଆଧାର ଜୁଟେ ନାହିଁ—" ଅଘୋରବାବୁ ବକ୍ତୃତା ରଚନା କଲା ଭଙ୍ଗୀରେ କହିଗଲେ—"ଗରିବର କୁଡ଼ିଆ—ଯୋଗୀର ଥାଳ—"

"ଆହା !" ଇନ୍ଦ୍ରଜିତ୍ କରୁଣ ହୋଇ କହିଲେ । ଆଖିମିଟିକା ମାରି କହିଲେ—"ଘରେ ନିଶୋଲାରେ ବି ବକ୍ତୃତା ! ଯାଉଁ ଯାଉଁ ବନ୍ଦ କରିଦିଅ ଭାଇ, ଲାଗୁଛି ଠିକ୍ ଯେମିତି ଥିଏଟର ସଲଲୋକ । କଣ ମିଳିବ ସେଥିରୁ ? ବୃଥା ପରିଶ୍ରମ ! ତେବେ ହଁ, ସତରେ ଯଦି ତୁମେ ଏତେ ଅନୁତପ୍ତ, ତେବେ ଗୋଟାଏ କାମ କରିପାର । ନିଜେ ନ ରଖି, ମାନମୟୀ ନାଁରେ ଯୌତୁକ କରିଦେଇ ପାରିଲେ ଖୁବ୍ ଭଲ ହୁଅନ୍ତା—"

ଇନ୍ଦ୍ରଜିତ୍ ହସି ହସି ଗଡ଼ିଲେ । ଅଘୋର ବିରକ୍ତ ହୋଇ ଚାହିଁ ରହିଲେ—ବଜାଖି କଣ ଗଛରେ ଫଳନ୍ତି ? ଭାବିଲା ପରି ।

"କି ଅଘୋର, ଆଜି କଣ ଖେଳ ହେବନାହିଁ କି ?" ସୁରବାବୁ ଆସିଲେ । "କାହିଁ ଏମିତି ଥିରି ହୋଇ ବସିଛ, ସବୁ ମାନ୍ଦା ମାନ୍ଦା ?"

ଭିତର ପାଖୁ ଅଜୟବାବୁ ଆସିଲେ । ଇନ୍ଦ୍ରଜିତ୍ ଓ ସୁର ଏକାଠି କଳରବ ଆରମ୍ଭ କଲେ—ହେଇଟି ତ ଦାର୍ଶନିକ, କୁଆଡ଼େ ଯାଇଥିଲେ ? ଓ ବହି ନେଇ ଦେଇଥିଲେ ? କି କି ବହି; କାହିଁ ଆମେ ଦେଖିଲୁ ନାହିଁ ତ ! ଖେଳ ସଜା । ରହି ଥା, ମୁଁ ଆସୁଛି —

ସୁରବାବୁ ଭିତରକୁ ପଶିଗଲେ । ପାଟି ଶୁଭୁଥାଏ—'ମାଉସୀ—ମାଉସୀ—' ମାନମୟୀ ଆପଣାକୁ ପ୍ରସ୍ତୁତ କରୁଥାଏ । ଅର୍ଗ୍ୟାନ୍ ଉପରେ ନୂଆ ରାଗିଣୀର କ୍ଷୀଣ ଆଳାପ । ଅଜୟବାବୁ ମନ୍ତବ୍ୟ ଦେଲେ—"ଏଇ ସୁରବାବୁ ଆମର—ବଡ଼ ହୁମ୍‌ଦୁମିଆ । ଭଦ୍ରତା ଜିନିଷଟା—ମାନେ—" ବାଧା ଦେଇ ମୁଣ୍ଡ ହଲେଇ ହଲେଇ ଇନ୍ଦ୍ରଜିତ୍‌ବାବୁ କହିଲେ—"ଠିକ୍ କଥା ।" ଅଘୋରବାବୁଙ୍କ ହାତକୁ ତାସ ମୁଠା ବଢ଼େଇ ଦେଇ କହିଲେ—"ତୁମେ ଜିତିଛ, ନିଅ ଫେଣ୍ଟ; କିନ୍ତୁ ଜାଣିଛ ତ ଅଘୋର, ତାସରେ ଜିତିଲେ,, ଆଉ ଗୋଟାଏ ଜାଗାରେ ଭାଗ୍ୟ ବିଗିଡ଼େ ।"

ଅଘୋରବାବୁ ହସିଦେଇ କହିଲେ—"ବହୁତ କହିଲଣି ।"



# ଛତିଶି

ସେ ଥର ଅବିନାଶବାବୁ ଘରକୁ ଆସିଥାନ୍ତି ।

ଯଶୋଦା ଦେଖୁଥାଏ, ମାନମୟୀ କି ସୁନ୍ଦର ଗୋଳ କରୁଛି । ବଳେଇଟିକି ତାଙ୍କ କୋଡ଼ରେ ଗୁଡ଼ିଦେଇ କେଡେ ସୁନ୍ଦର କହୁଥାଉଛି, "ବାପା ଦେଖିଲଣି ପୁଣି କେଡ଼େ ଦୁଷ୍ଟ ହେଉଚ ! ଖାଲି ମୂଷାଗୁଡ଼ାଏ ମାରୁଚ । ହେଇ, ପୁସି ତୁନ୍ନି, ବାପାଙ୍କ ଜାମା ଆଞ୍ଚୁଡ଼ୁଚୁ ? ବାପା, କହୁଥିଲ ସାନ୍ଜା ଗୋଲପ ଗଛ ଆଣିଦେବ ବୋଲି, ତୁମେ ଖାଲି ଠକୁଚ—ହେଁ—"

ଯଶୋଦା ଦେଖୁଥାଏ । କେଡ଼େ ଶାନ୍ତ, ସୁବୋଧ ହୋଇ ଅଘୋରବାବୁ ଠିଆ ହୋଇଛନ୍ତି । ଆଜ ବୈରାଗ୍ୟ, ବୁଲିଯିବାକୁ ଆଦୌ ତରବର ନାହିଁ । ଆପଣା ପ୍ରସାଧନ ପାଇଁ ସଉକ ଉଭେଇ ଯାଇଛି ।

କଣିକଅା ହୋଇ ଅନ୍ଧାରରେ ମିଶିଯାଇ ଯଶୋଦା ଠିଆ ହୋଇଥାଏ । "କଣ ସେଠି କରୁଚୁ ଯଶୋଦା, ତୋର କାମ ନାହିଁ କି ?" ଅଭ୍ୟାସ ଯୋଗୁଁ ଗମ୍ଭୀର ଘଡ଼ଘଡ଼ି ପରି ସ୍ୱର ଅନ୍ଧାରରେ ଶୁଭିଗଲା ପରି ଲାଗେ । ଯଶୋଦା ଚକ୍କେ ନାହିଁ । ଅଧା ପଗଲା ମୁଣ୍ଡ ଦେଲା ଖୋଜୁଛି । ଭାବୁଛି, ଏମିତି ସଞ୍ଜ କେତେବେଳେ ଥରେ ମିଳେ ?

ସମସ୍ତେ ଗଲେଣି ।

"ବାବୁ—"

"କଣ କହୁଚୁ ଯଶୋଦା ?"

"ଆସିଛ ତ, ଏଇ ଥର ମତେ ମୋ ଦେଶକୁ ପଠେଇ ଦଅନ୍ତ ନାହିଁ, ବାବୁ ?"

ଅବିନାଶବାବୁ ହସରେ ଉଚ୍ଛୁଳିଦେଲେ । କହିଲେ—"ଆମ ଘରେ ଥରପାଣି ନଅଣ୍ଟ ହଉଚ କି ଯଶୋଦା ?"

"କଣ ଥରପାଣି ମନେ ଦବ ବୋଲି ଆଣିଥିଲ ବାବୁ ?"

"ଧେତ୍, ପୁଣି ବାହାଣିଲା—"

ଯଶୋଦା କାନ୍ଦପକେଇ ହାଉଳି ହେଲା, "ମୋ ଘର । ଗୁଡ଼ିଦେଇ ଆସ, ତମ ଗୋଡ଼ତଳେ ପଡ଼ୁଚି ବାବୁ । ସେଠି ଯୋଉଠି ହେଲେ ଭିକ ମାଗି ଖାଇବି ।

ମୁଁ ଚାଲିଯିବ । ନଇଲେ ତମ ଉପରେ ମୋ ଅଶ୍ରୁ ପଡ଼ବ ବାବୁ, ତମୁକୁ ଦୋଷ ଲଗିବ—"

"ଆରେ—" ଅବିନାଶବାବୁ ତାଙ୍କର ସଙ୍କୁଚିତ ଗଳାରେ କହିଲେ, "ଭଲ ହଟା, ଏମିତ ଘଡ଼କେ ପହରକେ ଚୋର ବାହାରେ ହଇଲେ ? ଆଏ, ଆଏ, ମତେ ଦେଖିଲେ ସ୍ବାର ବେଗ ମନେପଡ଼େ ! ଆଚ୍ଛା ବିପଦ ! ରୁନ ହ, ହେ ଯଶୋଦା, ଏ ଇମିତ କାହିଁକ ହଉଚୁ ?"

ଦୂରରୁ ଗର୍ଜନ—"ଏ ଯଶୋଦା—" ଉମା ପାଟି କରୁଛନ୍ତି । ଦୁଇ ଥର ଉଚ୍ଚରେ ଯଶୋଦା କାନ୍ଦଣା ବନ୍ଦ କର ସିଧା ହୋଇ ଠିଆ ହେଲ । ଶୁଭିଲ— "ହେ ଯଶୋଦା, କୋଉଠି ମରୁଚୁ ?"

"ଯାଉଚ ମା—"

କଲ ଚାଲିଲ ପର ଯଶୋଦା ଚାଲିଗଲ । ଆପଦରୁ ଉଦ୍ଧାର ପାଇ ଅବିନାଶବାବୁ ରୁମାଲରେ ମୁହଁ ପୋଛିଲେ । ମାନମୟୀ ଗୀତ ବୋଲିଲଣି । ଶାନ୍ତ ପଡ଼ୁଛି । ଆପଣାର ଘରସଂସାର । ସୃଷ୍ଟିର ପ୍ରାଚୁର୍ଯ୍ୟ । ଦୁମୁ ଦୁମୁ ଶବ୍ଦ ଶୁଭୁଛି । 'ସେ' ଆସୁଛନ୍ତି, ସଂସାରର ନଦୀ ମନ୍ତ୍ରି ।

"କଣ କରୁଛ କ ? ଯଶୋଦା କଣ କହୁଥିଲ ବା ?"

"କହୁଥିଲ, ତାକୁ ଏଠି ଭଲ ଲଗୁ ନାହିଁ ଘରକୁ ଯିବାକୁ କହୁଛି—"

ଯଶୋଦା ନାହିଁ । ଦେବୀ କହିଲେ—"ମଲ ମୋର, ସେପଖେନା ! ଦେଲ ନାହିଁ ପିଠି ସିଧା କର—"

"ଗୁଡ଼, ଗରବ କଥାଣୀ ଲୋକ—"

"କଣ ଗୁଡ଼ ମ ! ଛଡଶାନଯୋଗ ଖଣ୍ଡା ହୋଇଛି, କୋଉଠୁ ଚେଣ୍ଟା ପଶିଗଲ ଯେ, ତମକୁ ଦେଖିଲେ ଛଲ ପଶିଯାଉଚ, ସକ ବାହାରୁଚ ଖାଲ ଫେସବ୍ । ହପା ଉଠିଚ ଘରରୁ ଯିବେ ! ମୁହଁ ନ ଭାଙ୍ଗିଲେ କୁକୁର ଉପରକୁ—"

ସ୍ୱରଟା ଉଚ୍ଚକୁ ଚଢ଼ିଯାଇଥିଲ । ମଝିରେ ବାଧା ଦେଇ ଗୋଟାଏ କରରୁ ଧୀର ଅଥଚ ବିଷାକ୍ତ ଗଳାରେ ଜବାବ୍ ଆସିଲ—"କାହା ମୁହଁ ଭାଙ୍ଗିବ ଯାଆନ୍ତାଣୀ ?" ଅଲଗ୍ ହୋଇ ମୁହଁ ଉପରେ ବାଲ ଲେଟୁଛି, ମସିଆ ଲୁଗାଟା ବେଢ଼େଇ ହୋଇଛି, ଗୁଳ-ଅନ୍ଧାରର ଘୋଡ଼ଣି ପର । ଗୁଞ୍ଜୁଣୀ ମୁଠା ମୁଠେଇ ଧରିଛି । ପାଖକୁ ଆସି ମୁହଁ ଭ୍ରୂକୁଟି କର ଯଶୋଦା କହିଲ—"ତମ ଜମିଦାଷ୍ଟରେ ମୋର ଘର ଲୁହେଁ ।"

ରମା କାଠ ହୋଇ ଅନେଇଁ ରହିଲେ । ଅବିନାଶବାବୁ ଗମ୍ଭୀର ହୋଇ କହିଲେ—"ଏ ଯଶୋଦା—" "ଆହା-ହା—ଏ ଯଶୋଦା -!" ଖଟେଇ ହୋଇ ଯଶୋଦା ହସିଲା, ହସି ହସି ଦମ୍ ବନ୍ଦ ହେବ ସନ୍ତେ କି ! ତା ପରେ ତରତର ହୋଇ ପ୍ରଳାପ ବକୁଛି । ସେ କେତେ ଦରଝଣ୍ଡିଆ ଢାଙ୍ଗହାସ । କଥାକୁ କଥା ଖିନ୍ଦାଖିନ୍ଦ, ବିରାମ ନାହିଁ । ହାମୁଡ଼େଇ ହୋଇ ତଳେ ବସିଛି । ଝୁଲିଝୁଲିକା ଦ' ହାତରେ ଦନ୍ତାଣ୍ଡିଲ ପରି କରୁଛି, ମୁହଁ ପୋଡ଼, ମୁଣ୍ଡ ଝାଙ୍କି ଝାଙ୍କି ଏକା ନିଶ୍ୱାସରେ ବକି ଲାଗିଛି ନ କହିବା କଥା । ସମସ୍ତେ ଗଦା ହେଲେଣି ।

"ଯଶୋଦା—ଯଶୋଦା—!" ଶୁଣୁ ନାହିଁ ।

"ଛାଡ଼ି କଣ ପଶିଛ, ତାକୁ କଣ ଲାଗିଚ !"

"ତୁମେ ରହ—" ଅବିନାଶବାବୁ କହିଲେ । ପିଠିରୁ ହଲେଇ ଦେଇ ଡାକିଲେ—"ଯଶୋଦା—!"

ଯଶୋଦାର ଦେହ ଥରିଗଲା । ମୁଣ୍ଡ ଟେକି ଥରେ ଗୁହିଁଦେଲା । ତା ପରେ ସେହି ସେମେଟା-କଇଁଆ କେନ୍ଦୁକାଠ ପରି ମୁହଁରୁ ଖାଲି ଝର ଝର କାନ୍ଦଣା ।

ଯଶୋଦାର ହୋସ୍ ଆସିଲା । ଝଡ଼ି ପଡ଼ିଥିବା ଆତ୍ମସମ୍ମାନର ତଳିତଲାନ୍ତ ଗୋଟେଇ ପୋଟେଇ, ଭୂତ ପରି ଉଠି ତଳକୁ ଓହ୍ଲେଇଗଲା ।

ଗହଳ ଭାଙ୍ଗିଗଲା ।

ଅବିନାଶବାବୁ ସ୍ତ୍ରୀଙ୍କୁ କହିଲେ—"ଦେଖିଲ !"

"କଣ ?"

"ମୁଁ କଣ କହୁଥିଲି—"

ନିଆଁ ପରି ଗୃହିଣୀ ମେଞ୍ଚାଏ ଫୋପାଡ଼ି ମାରି, ଓଠ ମୋଡ଼ିଦେଇ ରମା କହିଦେଇ ଗଲେ—'ହୁଁ' । ଦୁଲ୍ ଦୁଲ୍ ହୋଇ ଉଠି ଗୁଲିଗଲେ ।

ଅବିନାଶବାବୁ ବିରକ୍ତ ହେଲେ ।

କାନ୍ଦିବାକୁ ରମାଙ୍କର ମନର ବୟସ ନାହିଁ । ତାଙ୍କର ମତାମତ ସେହି ସାନ 'ହୁଁ'; କିନ୍ତୁ ତାର ଅର୍ଥ ଅବିନାଶବାବୁଙ୍କୁ ଅଛପା ନୁହେଁ । ପାଗଳପଣିଆର ପ୍ରଶ୍ରୟ ନେଇ, ଗରମ ନିଶ୍ୱାସ ଆଉ ତତଲ ଲୁହରେ ଯଶୋଦା ଯେଉଁପରି ତାଙ୍କ ମୁହଁରୁ ଭଦ୍ରତାର ପରସ୍ତେ ଖୋଳପା ଛଡ଼େଇ ଦେଇଗଲା, ମୁହଁ ଦେଖାଇବାକୁ ଆଉ ଜାଗା ରଖିଦେଇ ଗଲା ନାହିଁ । ଯାହା ରହିଲା, ପବନ ଲାଗିଲେ, ପାଣି ଲାଗିଲେ ବି ସେ କାଟିବ ।

ଦ'ଟା ମଣିଷ, ସେ ଆଉ ତାଙ୍କ ସ୍ତ୍ରୀ । ପ୍ରତିଦ୍ୱନ୍ଦ୍ୱିତାମୟ ଘରକରଣା ତାଙ୍କର । ଜଣେ ତଳକୁ ଖସିଲେ ଆର ଜଣକ କେତେ ଉପରକୁ ଉଠିଯାଏ । ସେହି ଉପରୁ ତଳକୁ ଅନୁକମ୍ପା ଦେଖାଇ ଟିକିଏ ହସିଦିଏ; ଅଥବା ମୁହଁ ବଙ୍କେଇ କହେ 'ହୁଁ' । ପିଠି ବୁଲେଇ ଚାଲିଯାଏ ।

କେବଳ ସେତିକି ନୁହେଁ, ଅତୀତର ସେହି ଲଙ୍ଗଳା ଇତିହାସ ପାଖ କରି ଗାଇଲାବେଳକୁ ଦେଖଣାହାରୀ ଥିଲେ । ଥିଲେ ମାନମୟୀ, ଅଘୋର । ଓଃ !

କେତେ ଚଞ୍ଚଳ ମତାମତ ଠିକଣା କରିଦେଇ ଲୋକେ ଚାଲିଗଲେ ! କାହିଁ, କିଏ ? ଘର ମାନ୍ଦା ପଡ଼ିଛି । ମାନମୟୀର ଗୀତ ନାହିଁ, କାହାରି ଶବ୍ଦ ନାହିଁ । ଘରେ ଲୋକ ଅଛନ୍ତି କି ନା, ବାରି ହେଉ ନାହିଁ ।

କାଗଜ ଉପରେ, କାମ ଉପରେ ଦୃଷ୍ଟି ରଖି ବେଳ କଟିଗଲା । ତା ପରେ ଭାତଖିଆ । ବାଢ଼ିଦେଇ ପୁଝାରୀ ଅପେକ୍ଷା କରିଛି । ସେଠି ବି ଏକୁଟିଆ ।

ପଦେ ବି ଉଁ-ଚୁଁ ନାହିଁ । ଯଶୋଦାର ଅଭିଶାପରେ ଆପଣାର ଚାକର ପାଖେ ଆପେ ସାନ ହେବାକୁ ପଡ଼ିବ । ଶଙ୍କି ଶଙ୍କି ପଚାରିଲେ—"ମା କାହାନ୍ତି ରେ ?"

"ଭୋଜନ ସାରି ଗଲେଣି ହଜୁର୍ । କହିଲେ, ମୁଣ୍ଡ ବଥାଉଛି; ରହି-ପାରିବି ନାହିଁ ।"

ଚଞ୍ଚଳ ଆଞ୍ଚେଇ ସାରି ଶୋଇବାକୁ ଗଲାବେଳକୁ ପିଣ୍ଡା କରରେ କାନ୍ଥକୁ ଆଉଜି ଯଶୋଦା ଠିଆ ହୋଇଥାଏ । ରାଗରେ ଦେହ ଜଳିଲେ । କଥା କହିବାକୁ ମନ ହେଲା; ପୁଣି ଭାବିଲେ, କିଛି ଲାଭ ନାହିଁ । ପୁଣି ହୁଏ ତ ତାକୁ କାଳସି ଲାଗିବ, ଅର୍ଥକୁ ଅନର୍ଥ ଘଟେଇବ । ଶୋଇବାଘରେ ପଶି ସ୍ୱିଚ୍ ଟିପିଦେଲାବେଳକୁ ପିଠି ବୁଲେଇ କରମାଡ଼ି ରମା ଶୋଇଛନ୍ତି ।

"କଣ ଶୋଇଲଣି କି ?"

କିଛି ଜବାବ ନାହିଁ ।

ମୋଟାସୋଟା ସ୍ତ୍ରୀ । ବୟସର ମାଡ଼ କେଉଁଠି ଖାଲି କରି ନାହିଁ । କେତେ ଯତ୍ନ, କେତେ ରୋଜଗାର ଦରକାର ପଡ଼ୁଛି ଏ ଦେହକୁ ପାଳି ସୁସ୍ଥ ରଖିବାକୁ ।

କି ପରିଶ୍ରମ !

ପ୍ରତିଦିନ ଏହି ପିଠି, ଚିକ୍‌କଣ, ଚର୍ବି ବହଳ ।

ଆଲୁଅ ଲିଭେଇ ନିଜ ସ୍ଥାନରେ ଅବିନାଶବାବୁ ଶୋଇପଡ଼ିଲେ । ନିଦ ହେଉ ନାହିଁ । ଯାହାକୁ ମୁହାଁମୁହିଁ ଅନେଇ କିଛି କହିହୁଏ ନାହିଁ, ତାହାରି ପାଖରେ ଶୋଇରହି, ଭାବି ଲାଗିଲେ ତାହାରି ବିରୁଦ୍ଧରେ ।

ତୋଫାନ ଉଠିଛି । ଅନ୍ଧାର ରାତି । ଅବିନାଶବାବୁ ଭାବି ଲାଗିଲେ ।



## ସଇଁତିରିଶ

ଦୂରରେ ତୋଫାନ ଡାକ ଶୁଭୁଥିଲା । ଘର ଅନ୍ଧାର, ବାହାର ଅନ୍ଧାର । ପୁରୁଣା ଅନୁଭୂତ ଚେଇଁ ଉଠୁଛି, ରକ୍ତରେ ଖେଳୁଛି ବନ୍ଧୁଲ । ବୟସର ବୋଝ ଆଡ଼େଇଦେଇ, ଅଜାଡ଼ି ଦେଇ, ସ୍ମୃତି ଅଣ୍ଡାଳ ଅଣ୍ଡାଳ, ମନ ସୁଖ ଖୋଜୁଛି । ସେଠି କାଠ-ପଥର ବାଡ଼ ନ ଥିଲା, ପାପ-ପୁଣ୍ୟର ଜଗୁଆଳି ନ ଥିଲେ । ସେଠି ଯଶୋଦାର ସ୍ଥାନ ଥିଲା । ଆଜିର ଏ ଗୃହଲକ୍ଷ୍ମୀର ନୁହେଁ, ସେ କାଳର ଯଶୋଦାର ।

ଆଉ କେତେ ଥିଲେ, ସେମାନଙ୍କ ନାଁ ମନେନାହିଁ । ସମସ୍ତିଙ୍କର ସବୁ ମନେନାହିଁ । ସେମାନେ ସୁଖ ଦେଇ ଦୁଃଖ ନେଇ ଚାଲିଯାଇଛନ୍ତି, ଅଟକି ରହି ନାହାନ୍ତି । ବିବାହିତା ସ୍ତ୍ରୀ ପାଖରେ ଶୋଇ, ଅବିନାଶବାବୁ ସେହିମାନଙ୍କର ଛବି ଦେଖୁଥିଲେ, ଶାନ୍ତି ଲାଗୁଥିଲା ।

କେତେ ରାତି ହେବ କେଜାଣି, ପାଖ ଘରୁ କଣ ଶବ୍ଦ ଶୁଣି ନିଦ ଭାଙ୍ଗିଗଲା ! ନିଜ ଅର୍ଜନରେ ଧନ ବହୁତ ଥିବାରୁ ସ୍ୱଭାବରେ ତାଙ୍କର କାନ ପାତଲା । କାନେଇଁ ରହି ଗାଲିପାରି ଶୋଇଲେ । ପାଖ ଘରୁ ଶବ୍ଦ ଆସୁଛି ଖୁବ୍ ଧୀରେ ଧୀରେ; କିନ୍ତୁ ଅନେକ ଥର ଏକାପ୍ରକାର ଶବ୍ଦ । ଉଠିପଡ଼ି ଚାଲିଯାଇ ଅବିନାଶବାବୁ ଆଲୁଅର ସ୍ୱିଚ୍ ଟିପିଦେଲେ । ତାପରେ ଚମକିପଡ଼ି ଆଁ କରି ଅନେଇଁ ରହିଲେ । ଭୁଣ୍ଡରେ ପଦେ କଥା ନାହିଁ ।

ଗୋଡ଼ଠୁ ଜଙ୍ଘଯାକେ ଖୋଲା ଦେହ, ସେଥିରେ କଳା ବୋଳା ହୋଇଛି । କଳା ଜାଙ୍ଘିଆ ଉପରେ କଳା ଫତୁଆ । ମୁହଁରେ, ମୁଣ୍ଡରେ କଳା କନା ବନ୍ଧା ହୋଇଛି । କିଛି ବାରି ହେଉ ନାହିଁ । ବଡ଼ ବଡ଼ ଛୁରୀ ଦି ଖଣ୍ଡ ଧରି ଦି'ଟା ଲୋକ ମୂର୍ତ୍ତିପରି ଠିଆ ହୋଇଛନ୍ତି ଝରକା ପାଖରେ । ଛୁରୀ ଉଞ୍ଚେଇ ଦି ହାତ ଉଠିଲା, ଅବିନାଶବାବୁ ଠକ୍ ଠକ୍ ଥରିଲେ ତଣ୍ଟିରୁ କିଏ ଯାପି ଧରିଲା ପରି । ତାଙ୍କର ବୁଦ୍ଧି ହଜିଯାଇଥିଲା ।

ଜଣେ ଆଗେଇ ଆସିଲା, ଡେଙ୍ଗା, ପାତଳା ଜଣକ । ଅନ୍ଧାର ରାତିରେ ଛୁରୀ ଉଞ୍ଚେଇ ମାଡ଼ି ଆସୁଛି କଳାମୁଖା ପିନ୍ଧା ମଣିଷ । ଅବିନାଶବାବୁ ପଛେଇ ପଛେଇ କାନ୍ଥରେ ମାଡ଼ିହୋଇ, ହାତ ଯୋଡ଼ିଲେକି ଥରିଲେ । ଖାଲି ମୁହଁରେ ଆକୁଳ ଭିକ୍ଷା ।

"କଏ ତୁମେ ! ଏ କଣ ? ଛୁଞ୍ଚ ଉପରେ ଠିଆ ହୋଇଛ କାହିଁକ ? କଏ ?" କାନ୍ଥ ଘଣ୍ଟାରେ ଟିକ୍ ଟିକ୍ ବାଜଯାଉଛି । ସବୁ ନିସ୍ତବ୍ଧ, କେଉଁଠୁ ଜବାବ ନାହିଁ । ବେଳୁବେଳ ଆପଣା ଭିତରର ଫମ୍ପା ଆବାଜ୍ ତୀବ୍ର ହୋଇଉଠୁଛି—"କଏ ତୁମେ ?"

"ପାଟି କଲେ ଏଇ ହତିଆର୍ । ତୁମେ ମରିବ । କାହିଁକି ମରିବାକୁ ହଉଚ ?" ସବୁ ଧୈର୍ଯ୍ୟ ପୁଣି ପାଣି ଫାଟିଯାଉଛି, ଦେହ ଝିମିଝିମି ଲାଗୁଛି । କାଠରେ କାଠ ବାଜିଲା ପରି ପାତଳା ଲୋକର ମୁହଁା ଭିତରୁ ଗୁଡ଼ାଏ କର୍କଶ, ନିର୍ମମ ଶବ୍ଦ; ଯାହା ନାଁ ହସ । ଥରି ଥରି ଚୌକିରେ ବସିଲେଣି । ଗ୍ଲାସ ଥଣ୍ଡା ହୋଇଯାଉଛି, ମୁଣ୍ଡ ଝାଙ୍କି ହୋଇଯାଉଛି ଟେବୁଲ ଉପରକୁ । ପ୍ରାଣ ଅସ୍ଥିର ।

"କଥା କହୁ ନା କାହିଁକ ? ମୁଁ ପଚାରୁଛି, ମଲେ ତୁମର ଆପତ୍ତି ଅଛି ?"

"ଉଃ !"

ବାହା ଉପରେ ମୁହଁ ପୋତିଦେଇ, ଟେବୁଲରେ ଲଦିହୋଇ ପଡ଼ିଲେ । ଖୁଟ୍ କରି ଶବ୍ଦ ହେଲା । ଆଲୁଅ ଲିଭିଗଲା, ଘର ଅନ୍ଧାର ।

"ଆଲୁଅ ସହି ହେଉ ନ ଥିଲା, ନୁହେଁ ? ଭଲ, ତେବେ ଶୁଅ । ଶୋଇ ଶୋଇ ସ୍ୱପ୍ନ ଦେଖ । ଆମେ ଅଛୁଁ, ଆମ ହାତରେ ହତିଆର ଅଛି । ଚମକିଲେ ଫୋଡ଼ିହେବ ତା ମନକୁ । ଭାରି ଦାଢ଼, ଭଲ ଲାଗୁଛି ?"

ପିଠି ଉପରେ ଥଣ୍ଡା ହତିଆରର ମୁନ ପରଖ ହେଉଛି, ଦାନ୍ତ ଚପି ଚପି ହସ । ଅବିନାଶବାବୁ ଆଶା ଛାଡ଼ିଦେଇ ଆଖି ବୁଜିଥିଲେ । ଭାବୁଥିଲେ, ଏ ଦୁଃସ୍ୱପ୍ନ ।

"ଏଇ ତୁମର ସାହାସ ? ଏତେ ଚଞ୍ଚଳ ପାଣି ଫାଟିଗଲା ? ହତାଶ ହୋଇଗଲ ? ଭାବ, କେତେ ବୀର ତୁମେ, କେତେ ତୁମର ସାହସ । କାଲି ତୁମେ କେତେ ସାନ ଥିଲ, ଆଜି କେତେ ବଡ଼ ! ସବୁ ତୁମ ପାଗଳପଣ । ମିଛ କହିଲି ? ଲୋକଙ୍କ ଆଖିରେ ଅନ୍ଧପୋଟଳା ବାନ୍ଧିଦେଇ ଟଙ୍କା ଥଳି ବୋହି ଆଣିଲାବେଳକୁ ତୁମେ ବୀରଟାଏ । ଗର୍ଜନ ଛାଡ଼ି, ଡରେଇ, ଗୋଇଠା ପ୍ରହାର, ଗରିବଙ୍କ ସଂସାର, ଗରିବଙ୍କ କୁଡ଼ିଆ ଚୂନା କରିଦେଲା ବେଳକୁ ତୁମେ ମହାବୀର ! ପରର ସ୍ତ୍ରୀ, ପରର ଝିଅ ଘରୁ ଉଠାଇ ଆଣି ରାସ୍ତାରେ ଗଡ଼ାଇଦେଲା ବେଳକୁ ତୁମର ବେଜାଏ ସାହସ । କାହିଁକି ତେବେ ଭୟରେ ମରୁଛ ? ତୁମେ କଣ ବଦଳିଗଲ ? କହ, କଥା କହ ।"

"କେଉଁ ଦେଶରେ ତୁମର କେତେ ପୁଅ ଝିଅ, କେତେ ତୁମର ରଖିଲା ସ୍ତ୍ରୀ, ତାଙ୍କର ଖବର ନେଇଥିଲ ? କେବେ ତାଙ୍କର ମଲା ହଜିଲା ଯାଇଥିଲ ଖୋଜି ?

କେତେ ଲୋକଙ୍କ କପାଳ ଫଟେଇଛ, କେତେ ଲୋକଙ୍କ ରକ୍ତ ଶୋଷିଛ ? ସେମାନେ ଆଜ କଣ କରୁଛନ୍ତି, ବଞ୍ଚିଛନ୍ତି କ ମଲେଣି—କେବେ ଖବର ବୁଝିଥିଲ ? ନା, ଖବର ନେବା ତୁମର କାମ ନୁହେଁ । ତୁମର ଭଲ ଉପାସ୍ନ, ଶୋଇପଡ଼ବ, ଆଖି ବୁଜଦେବ । ବହୁତ ଜୁହାଡଲଣି, ଏଥର ହଡଆର୍—"

ଆଉ ଜଣକ ପିଠୁଲା ପଛ ଠିଆ ହୋଇଥିଲା, ହଠାତ୍ ଅଉରିତି ପାଟିକଲା—"ଲଟେଇବ ?"

"ଆଉ ପଗୁରୁଛୁ —?"

ଚୌକିରୁ ଡଆଁମାର ଉଠିପଡ଼ ଠିଆ ହୋଇ ଥରଲେ ଅବନାଶବାବୁ । "ନାହିଁ, ନାହିଁ; ମତେ ମାର ନାହିଁ, ମାର ନାହିଁ । ଯାହା ଅଛ ନଅ ପଛେ, ପ୍ରାଣରୁ ମାର ନାହିଁ— "

"ପ୍ରାଣ ପ୍ରତ ଏତେ ମମତା ? ନମିଷକେ ଦାତାକର୍ଣ୍ଣ ! ହାଃ, ହାଃ, ହାଃ—ଖାଲ୍ ନଅ, ନଅ—କଣ ନେବୁଁ ? ତୁମେ କଣ କମ୍ ହୁସିଆର ଯେ, ସବୁ ଧନ ପାଖରେ ରଖିଥିବ ! ଘରର ଇଟା, ପଥର ବୋହ କଣ ନେବାକୁ ଆମେ ଆସିନୋଉଁ । ଦେବାପଣ ଦଶୁଚ ! କବାଟ ଖୋଲ୍ ପଦାକୁ ଗୋଡ଼ କାଢ଼ିଲେ ସବୁ ଅଡଥିସେବା କୁଆଡ଼େ ଗାଧେଇ ଯାଇଥିବ । ଦେଖାଯାଉ, ଏଇ ବଡ଼ ସିନ୍ଦୁକଟାରେ ଯାହା ଥିବ ! ଭଲ ପିଲା ହୋଇ ବଢ଼େଇ ଦବଟି ଗୁବଟା—ହଉ, ବସ ।"

ସିନ୍ଦୁକ ଖୋଲାଗଲା । ଯାହା ଥିଲା, ତାହା ବୁଜୁଲି ବନ୍ଧାହେଲା । ଡେଙ୍ଗା, ପତଳା ଲୋକ ଆରଜଣକ ହାତକୁ ତାକୁ ବଢ଼େଇ ଦେଇ କହିଲା, "ଯା—।"

"ବସ, କଥାସ୍ୱସା ହେବା । ଏଇ ହଡଆର ଦେଖୁଛ ? ବଡ଼ ସୁରୁସ୍ । ଥରେ ଭୁଷିଦେଇ, ଟାଣିଦେଲେ ଢ'ଗର କଣ ଯୋଇଦଏ । ତୁଣ୍ଡ ମୁଣ୍ଡ ନାହିଁ, ଗୋଲମାଲ ନାହିଁ, ଧୀରେ ଧୀରେ । କେଇଟାଙ୍କୁ ମାରଛୁ—ରହ, ମୁଁ କହିବ—ତୁମେ ଶୁଣିବ—।" ସେମିତ କାଠରେ କାଠ ପିଟିଲ୍ ପରି ଠୋ ଠୋ ହସ । ଅନ୍ଧାରରେ ତାର ଗ୍ରଇ ଦଶୁଛ । ହଡଆର ହଲେଇ କୁଦାମାର ସେ ଛକଲଣି । ମୁରୁଗୁଖିଆ ପୁରୁଣା ଲୁହାର ଖଣ୍ଡେ ନଜନଜ ପର୍ଜି ପର ।

"କେତେ ଲୋକଙ୍କ ତଣ୍ଡି କାଟିଛ । ଆପଣା ତଣ୍ଡି ପାଇଁ ଲୋଭ କର ନାହିଁ—ହେଇ ଦେଖ—"

ଗଁ ଗଁ ହୋଇ ଛଟପଟ କର, ଦେଖୁ ଦେଖୁ ଅବନାଶବାବୁ ଟେବୁଲ ଉପରେ ମୁହଁ ଯୋଡ଼େଇ ତଳପଡ଼ିଲେ । କେତେବେଳ ଏମିତ କଟିଲା, ଜଣା

ନାହିଁ । ଧୀରେ ଧୀରେ ସେ ସିଧା ହେଲେ । ଦେହ ଝାଳରେ ଜୁଡ଼ୁବୁଡ଼ୁ, ଠକ ଠକ ଥରୁଛ ବରଡ଼ାପତ୍ର ପରି । ସ୍ୱପ୍ନ କେଉଁଠି ଛକ ବସିଛ, କବୁ ଡଣ୍ଡି କାଟି ନାହିଁ, ରହିଛ । ବେଳ ଗଲ; ଶବ୍ଦ ନାହିଁ । କେବଳ ଘଣ୍ଟାର ଟିକ୍ ଟିକ୍ । ଠିଆ ହେଲେ, ଧୀରେ ଧୀରେ ବାହାରିଲେ, କେହି ବାଧା ଦେଲ ନାହିଁ । ତଥାପି ପ୍ରାଣରେ ଭୟ, ହୃଦଥାର ବନ୍ଧେଇ ଛପିଛ ସେ କେଉଁଠି । ଧୀରେ ଧୀରେ କବାଟ ଆଡ଼କୁ ମୋହିଁ ଗଲେ । କେହି ବାଧା ଦେଲ ନାହିଁ । କବାଟ ଖୋଲି ଦେଲେ ତଥାପି କାହାରି ଶବ୍ଦ ନାହିଁ । ସ୍ୱାଭାବିକ ବୁଦ୍ଧି ଫେରିଆସିଲ । ଅବନାଶବାବୁ ବିଶ୍ୱାସ କଲେ, ହୃଦଥାର ନାହିଁ, ସ୍ୱପ୍ନ ନାହିଁ, ଘରେ କେହି ନାହିଁ । ଅତି ଉଲ୍ଲାସରେ ଆଲୁଅର ସ୍ୱିଚ୍ ଟିପିଦେଇ ଦେଖିଲବେଳକୁ ଘରେ କେହି ନାହିଁ । ଯେଉଁଠି ଯାହା ଥିଲ, ସବୁ ରହିଛ । ଟେବୁଲ ଉପରେ ଗ୍ଲବ ଥୁଆ ହୋଇଛ । ବାକ୍ସ ବନ୍ଦ ଅଛ ।

ତେବେ କଣ ଏ ଦୁଃସ୍ୱପ୍ନ !

ସମ୍ଭବ । ନିଦବାଉଳାରେ କେତେବେଳେ ଏ ଘରକୁ ସେ ଉଠି ଆସିଛନ୍ତି, ନିଦ ହୋଇଯାଇଛ ।

ଆପଣାର ମନ ବୁଝିବା ବାହାନାରେ ସିନ୍ଦୁକ ଖୋଲିଦେଲେ । ସିନ୍ଦୁକ ପଡ଼ିଛ, ଟଙ୍କା ନାହିଁ । ଅତି ଦୁଃଖରେ ଗ୍ଭତି ଭାଙ୍ଗିପଡ଼ିଲ । ବୁଝିଲେ,. ସବୁ ସତ । ଅଥଚ ନିଜ ଆଖି ଆଗରେ ଏପରି ଘଟିଛ ବୋଲି କାହାରିକୁ କହିହେବ ନାହିଁ; ଲଜ ମାଡ଼ିବ ।

ସିନ୍ଦୁକର କବାଟ ଠିଆମେଲ ରଖି, ଶୋଇବା ବଖରାର ବାରଣ୍ଡାରେ ଆସି ଠିଆହେଲେ । ପିଣ୍ଡାରେ ଆଲୁଅ ଜାଳିଦେଇ, ଖୁବ୍ ବଡ଼ ପାଟିରେ ହାଉଳି କଲେ—"ଗ୍ୱେର—ଗ୍ୱେର—।"

ନିଦ ବାଉଳାରେ ରମା ଉଠି ଆସି ଝୁଣ୍ଟିପଡ଼ି ପାଟି କଲେ— "ଗ୍ୱେ—ଗ୍ୱେ— "

ହଲ୍ଲା ହେଲ—"ଗ୍ୱେ – ଗ୍ୱେ —ଗ୍ୱେର—ଗ୍ୱେର ।"

□ □

# ଅଠତିରଣି

ପାହାନ୍ତାର ଧୀର ପବନରେ ନାକଫଟା ମଇଲା ଗନ୍ଧ ଚହଟି ଆସୁଛି । ମଶା ବାହୁଡ଼ାଣି, ମାଛି ଲେଉଟାଣି ସନ୍ଧି ସମସ୍ତ । ଜଗତଯାକକୁ ଖଟେଇ ହେଲା ପରେ ଆପଣା ଦେହର ହାଡ଼ ଚମ, କୋରଡ଼ ଦେଖେଇ ମେହେନ୍ତର ପଲ୍ଲୀ ଚେଇଁ ଉଠୁଛି । ଛାଟି କବାଟ କିଳଦେଇ ସନିଆ ନାଟ କରୁଛି । ତାର ଜୀବନରେ ନୂଆ ଅଧ୍ୟାୟ । ଗରିବର କୁଡ଼ିଆକୁ ଟଙ୍କା ଆସିଛି ।

ଘର କଣରେ ଅଳିଆକୁଢ଼ ଭିତରେ ଠାଏ ଗୋଟାଏ ଗାତ ଖୋଳା ହୋଇଛି । ପାଖିକିଆ ହୋଇ ମାଟି ଗଦା ହୋଇଛି, ହାଣ୍ଡିଟାଏ ଥୁଆ ହୋଇଛି । କନାରେ ବାନ୍ଧି ଗାତରେ ପୋତା ହୋଇଥିଲା ଯୋଡ଼ାଏ ଟଙ୍କା, ଆଠଣି, ସୁକି, ଦୋଣି ଖୁଚୁରା । ସନିଆର ଦୃଷ୍ଟି ତାହାର ଉପରକୁ ।

ପଇସା — ପଇସା — ! କେବେ ନ ଦେଖିଥିବା ମନଇଚ୍ଛା ପଇସା ଖେଳା ହୋଇ ପଡ଼ିଛି । ସେଥିରୁ ମୁଠା ମୁଠା କରି ଗୋଟେଇ ନେଇ ଘରର ଛାଟିର ଫାଟବାଟେ, କାନ୍ଥର କଣାବାଟେ ଆଲୁଅ ଛୁରକି ପଡ଼ୁଥିବା ଜାଗାରେ ତାକୁ ଦେଖେଇ, ଅନେଇଁ ଅନେଇଁ ସନିଆ ଆନନ୍ଦ ପାଉଛି । ଚପୁଛି, ମୁଠେଉଛି, ବାରମ୍ବାର ଗଣୁଛି, କାନପାଖେ ଝଣଝଣେଉଛି । କୁଦାମାରି ଘର ଭିତରେ ଡେଇଁ ବୁଲୁଛି । ପିଠେଇ ପଡ଼ି ଶୋଇ ଗୋଡ଼, ହାତ ଉପରକୁ ଗୁଞ୍ଚୁଛି । ଦୂରରେ ବସି ଗାଲରେ ହାତ ଦେଇ ପଇସାକୁଢ଼କୁ ଅନେଇଁ ଭାବୁଛି, ଭାବୁଛି । ଧୀରେ ଧୀରେ ମୁହଁ କୁଞ୍ଚେଇ କୁଞ୍ଚେଇ ଫାଟିପଡ଼ୁଛି ଠୋ ଠୋ ହସ ।

ଆହୁରି ବହୁତ ଥିଲା, ଧମାବୁଢ଼ା ନେଇଗଲା । କେତେ କଣ ଖସ୍ ଖସ୍, ମଚ୍ ମଚ୍; ଅନ୍ଧାରରେ ଦେଖିହେଲା ନାହିଁ । ଧମାବୁଢ଼ା ବୁଦ୍ଧିର ଅବତାର । ମନ ଭିତରେ ଯେତେ ଅବ୍‌ଶୋଷ୍ ଥାଉ ପଛେ, ଥରେ ପିଠି ଆଉଁସି ଆପୁଡ଼େଇ ଦେଲେ, ସବୁ କୁଆଡ଼େ ପାଣି ପରି ବୋହିଯାଏ । ଆଉ ତାର ଯୁକ୍ତି ସହଜରେ ମରମକୁ ଭେଦେ । ମୁହଁ ଉପରେ କିଛି କହିହୁଏ ନାହିଁ ।

"ଏତେ ପଇସା କଣ କରିବୁ ପୁଅ ? କୋଠା ଗଢ଼ିବୁ ? କୋଠା ଘରେ ରହିଲେ ମଣିଷ ଜକମା ହୋଇଯାଏ । ବେଶି ପାଇଲେ ମୁଣ୍ଡ ବୁଲେଇଦବ, ଦେଖେଇ ହବୁ, ବକି ହବୁ, ରଖିପାରିବୁ ନାହିଁ, ଧରାପଡ଼ିବୁ । ଯାହା ଦଉଚି ସେତକ ନେ । ଆହୁରି କେତେ ଥର ଅଛି, ଏତକରେ ସବୁ ନାହିଁ—"

କାମକୁ ବାହାରିଲା । ପଇସା ସଙ୍ଗେ ସଙ୍ଗେ ଚିନ୍ତା ଆସିଛି । ମନରେ ଦୋ ଦୋ ପାଞ୍ଚ; କୋଉଠି ଛାଡ଼ିଦେଇ ଯିବ ଏ ପଇସା ! ଘର ନିରାପଦ ନୁହେଁ । କାମକୁ ଯିବା ପଛେ ପଛେ କିଏ ସ୍ନେହ କରି ନେବ ନାହିଁ ତ ? ଯେ କେବେ ଦାରିଦ୍ର୍ୟ ଚିନ୍ତା କରି ନ ଥିଲା, ଜୀବନରେ ପହିଲି ହୋଇ ତାକୁ ବୋଝ ମାଡ଼ି-ପଡ଼ିଲା । ବହୁତ ଭାବି, ସେହି ଗାତରେ ଲୁଚେଇଦେଲା, ମାଟି ଢାଙ୍କିଦେଲା, ଆଗୁଡ଼୍ ଯାଗୁଡ଼୍ ଗଦେଇ ହାଣ୍ଡି ଘୋଡ଼େଇଦେଲା । ସନିଆ କାମକୁ ଗଲା ।

ସାହିଲୋକଙ୍କ ଭିତରେ ଚହଲ ପଡ଼ିଛି, କୁହାକୋହି ଲାଗିଛି, ରାତିରେ କୁଆଡ଼େ ବଡ଼ ବାବୁଘର କୋଠାରେ ଡକେଇତି ହୋଇଯାଇଛି । ପୁଲିସକୁ ଖବର ଯାଇଛି । ସନିଆ ମଝି ପରି ଥାଏ । ବାରମ୍ବାର ଗ୍ରାମ ଭିତର ଦେଖିଯାଏ, କାଳେ ସେ ଧରାପଡ଼ିଯିବ ନାହିଁ ତ ! କେହି ଜାଣି ନାହିଁ, କେହି ଦେଖି ନାହିଁ । ତଥାପି— । କିଏ ଅନେଇଁଛି, ନିଘା କରୁଛି ? କାହିଁକି କିଏ ହସୁଛି ? ଏକାଠି ଯାନ ଯାନ ଦଳ ହୋଇ ଠିଆ ହୋଇ, କଣ ସବୁ ଲୋକେ ଫୁସୁରୁ ଫାସୁରୁ ହେଉଛନ୍ତି ? ବାରମ୍ବାର ସନ୍ଦେହ, ଅନ୍ୟମନସ୍କତା ।

"ବଜା ପରି ଠିଆହୋଇ ରହିଚୁ କାହିଁକି ସନିଆ ? ଗାଡ଼ି ନେଇ ଯାଉନୁ ? ସମସ୍ତେ ଗଲେଣି ପରା !" ମୁହଁ ବୁଲେଇ ଦେଖିଲା ମିସ୍ତ୍ରୀ ହେଣ୍ଡାକୁଛି । ତରତର କରି ଗାଡ଼ି ବାହିନେଇ ଚାଲିଗଲା ସହର ଭିତରକୁ ।

ଲୋକ ଗହଳରେ କାମ କରୁ କରୁ ମନରେ ଦମ୍ଭ ଆସିଲା । କେହି ତାକୁ ଦେଖି ଅଟକି ରହୁନାହିଁ । କିଏ କାହାକୁ ଚହ୍ନୁଚି ? କିଏ କାହାକୁ ଖୋଜୁଚି ? ସବୁ ଆଶଙ୍କା ହସରେ ଉଡ଼େଇଦେଲା ।

ଏଣିକି ଅନ୍ୟ ଚିନ୍ତା । ଏତେ ଦୋକାନ-ବଜାର, ଏତେ ଜିନିଷ । କୌଣସି ଦିନ ଏହି ବାଟେ ବାଟେ ମଇଲାଗାଡ଼ି ଅଡ଼େଇ ଗଲାବେଳକୁ ତେଣିକି ସେ ନିରେଖି ଅନେଇଁ ନାହିଁ । ଝାଳଅଣ୍ଟା ଥିଲାବେଳେ ସବୁ ଜିନିଷ ତା ପାଇଁ ନିରର୍ଥକ । ଆଜି ଆଖି ବୁଲି ଲାଗିଛି । ଆଖି କଆଁରରେ ପଶୁଛି । କେଉଁଟା ସେ କିଣିବ, ବାରି ସହୁ ନାହିଁ । କେତେବେଳେ ସେ କାମରୁ ଫେରିବ ! ହଠାତ୍ ଏହି ଅସନା କାମରୁ ମୁହଁ ଉଠେଇ ଆଉ ଗୋଟାଏ ଜୀବନର ସ୍ୱପ୍ନ ଝାପ୍‌ସା ହୋଇ ଦଶିଯାଉଛି ।

ଚଞ୍ଚଳ କାମ ସାରି ଫେରିଲା । କବାଟ ଫିଟେଇ ପ୍ରଥମେ ଦେଖିଲା ତାର ପୋତା ଧନକୁ । ଠିକ୍ ଅଛି, କେହି ଆସି ନାହାଁନ୍ତି ।

ପୁଣି କାମକୁ ଫେରି ନ ଥିବ । କେତେ ଦିନ ହୁଏ ଦଉଡ଼ିଯାଇ ପୁଣିକି କହିବାକୁ ଯେ ଆମର ଭାଗ୍ୟ ଫେରିଛି, ଭୟ ନାହିଁ; କାରଣ ଅଭାବ ନାହିଁ । ମନର ଆନନ୍ଦ ସମ୍ଭାଳି ହୁଏ ନାହିଁ । ବାରମ୍ବାର ଭାବେ, କିଛି ଗୋଟାଏ ସେ କରିବ । ଭାବୁ ଭାବୁ କାମ ପାଣି ଫାଟିଯାଏ । ସନିଆ ପଡ଼ ପଡ଼ ଖାଲି ସ୍ୱପ୍ନ ଦେଖେ ।

ଦ' ପହର ଗୋଟାକ କଟିଗଲା । କେହି ପଗ୍ଚରିବାକୁ ଆସି ନାହିଁ ଘରେ ସେ କୁଆଡ଼େ ଯାଉଥିଲା, କଣ କରୁଥିଲା । ଆପଦ ନାହିଁ । କଣ କିଣିବ; କଣ କିଣିବ ହୋଇ, ମନ ଭିତରେ ବାରମ୍ବାର ତାଲିକା ତିଆରି ହୋଇ ବାରମ୍ବାର କଟିଗଲା । ଝିଗ୍ ଚାଲିଥାଏ । ସନିଆ ଉଠିଲା । ମୋଟାମୋଟି ଏତିକି ଧାରଣା କରିଛି, ଭାଗ୍ୟ ବଦଳିବାର ଆଜି ପହିଲି ଦିନ । ଆଜି ସେ ଭଲ ଖାଇବ, ଭଲ ପିନ୍ଧିବ, ପୁଣିକି ସନ୍ତୋଷିବ । ତାପରେ ଯାହା ହେବାର ହେଉ, ପଛର କଥା ।

ପୁଣିଘରକୁ ଗଲା । ଦୁଆରବନ୍ଧରେ କେମିତି ବସିଛି । ପୁଣି ଘରେ । ସୁବିଧା ହେବ ନାହିଁ । ସନିଆ ଏକୁଟିଆ ବଜାରକୁ ଗଲା । ପ୍ରଥମ ଦୋକାନରେ ବଡ଼ କଠାଏ କିଣିଲା । ଏକାଥରେ କଠାଏ ବଡ଼ କିଣିବା ସୌଭାଗ୍ୟ ସବୁଦିନେ ମିଳେନାହିଁ, ଯେତେବେଳେ ପଇସାଏ ଦ' ପଇସାର । କଣକିଆ ହୋଇ ଠିଆହୋଇ ମହାଆନନ୍ଦରେ ଗୋଟାକ ପରେ ଗୋଟାଏ ବଡ଼ ଶୋଷି ଲାଗିଲା । ଦେଖିଲା, ପାନ ଦୋକାନକୁ ବାବୁମାନେ ଆସୁଛନ୍ତି । ଆଗ ଖିଲିଏ ପାନ ଗ୍ଚେବେଇ ଦେଇ ତା ଉପରେ ଗୋଟାଏ ଲେଖାଁ ସିଗାରେଟ୍ ଲଗାଇ, ଟାଣି ଟାଣି ଚାଲିଯାଉଛନ୍ତି । ଠିକ୍ କଥା, ସନିଆ ଭାବିଲା, ସିଗାରେଟ୍ କିଣିବା ଦରକାର ।

"କଠାଏ ସିଗାରେଟ୍ ଦେଲ ।" ଅଦନିଆଁ ଗରାଖି ମୁହଁକୁ ଦୋକାନୀ ଗ୍ଚାହିଁରହିଛି; କିନ୍ତୁ ସନିଆ ଅଣ୍ଟା ଅଣ୍ଟାଳିଲାଣି । ସିଗାରେଟ୍ ମିଳିଲା । ସିଗାରେଟ୍ ମୁହଁରେ ଦେଇ, ଅଣ୍ଟାରେ ପଇସା ମାରି ଅଭିଯାନ ଲଗେଇଦେଲା ବଜାର ଭିତରକୁ ।

ବଗ୍ ପିଆଜ ଦୋକାନକୁ ଅନେଇଁ, ମୁହଁ ବଙ୍କେଇ ଅବହେଳାରେ ଗୁଡ଼ିଆ ଦୋକାନକୁ ଗ୍ଚାଲିଗଲା । ଧୋବଧାଉଳିଆ ଗରାଖି ଅନେକ । ଠେଲି ପେଲି ପଶିବାକୁ ସାହସ ହେଉନାହିଁ । ସନିଆ ଅପେକ୍ଷା କଲା । ଭିଡ଼ ପାତଳ ଦେଖି ହାତ ପତେଇ ମାଗିଲା ଟଙ୍କାକର ମିଠେଇ । ଠିଆ ଠିଆ ଖାଇଲାଗିଲା । ଦୋକାନୀ ନିମନ୍ତ୍ରଣ କଲା, "ସେଠି କାହିଁକି, ଉପରେ ବସି ଖାଅ ।"

"ଉପରେ—!" ଛୁଆଁତା ହାଡ଼ ସେ । କଣ କହୁ କହୁ ଭୁଣ୍ଡରେ ଅଟକିଗଲା । ହସିଉଠି ଅଇଣ୍ଠାପଣ ଧରି, ଗୋଡ଼ ଛୁଟି ଛୁଟି ସନିଆ ଉପରକୁ

ଚଢ଼ିଚାଲେ । ନିଶା ଖାଇଲା ପରି ଲାଗୁଛି । ପୁରୁଣା ଆଇନ ଭାଙ୍ଗିଦେଇ ପୁରୁଣା ଲାଇନ୍‌କୁ ଗାଡ଼ି ଟପେଇ ଦେଇଛି ସେ । କାହାକୁ ଡର, କାହାକୁ ସରମ ? ପାଖରେ ଟଙ୍କା ଅଛି । ବସି ବସି ଖାଇଲାଗିଲା ଗୋଟାକୁ ଗୋଟା ମିଠେଇ । କେତେ ଦିନର ଜହ୍ୱଲ ବିକଳ ସ୍ୱପ୍ନ ଆଜି ସଫଳ ହେଉଛି । କି ସୁଆଦ ! କି ଆରାମ୍ ! ଓଠ ଚାଟି ଚାଟି, ଗିଳି ଗିଳି ଖୁବ୍ ଚଞ୍ଚଳ ପଫ ଖାଲି ହେଲା । ଆଜି ଏତିକିରେ ଛାଡ଼ି ଯାଇପାରିବ ନାହିଁ । ଆହୁରି ଟଙ୍କାକର । ଆହା, ସାଙ୍ଗରେ ପୁଅ ନାହିଁ । ବିଚରା ପୁଅ — ସହାନୁଭୂତିରେ ଆଖି ନରମ ହୋଇଆସିଲା ।

ପେଟପୂରା ଖାଇ, ପୁଅ ଲାଗି ପୁଳାଏ କାଗଜରେ ବାନ୍ଧି ସନିଆ ଉଠିଲା । ସିରା ବୋହିପଡ଼ୁଛି, ଲୁଗା ଓଦା ହେଲାଣି । ଘନୁରେ ସମ୍ବାଦ ଧରି ଖାରବର ହୋଇ ସନିଆ ଚାଲିଛି ।

ନିତି ଦିନର ବଡ଼ ସଡ଼କ । ସେଠି ସନ୍ଧ୍ୟା ଓହ୍ଲେଇଛି । ଜାତି ଜାତି ମଣିଷ । ଦୁଇ ପାଖେ ବଜାର ଦୋକାନ ଝଲମଲ ହସୁଛି । ଫୁର୍ତ୍ତିରେ ସନିଆ ଚାଲିଛି, ମନ ଭିତରର ମାନ୍ଦା ଭୟ ଉଭେଇ ଗଲାଣି । କାଳି ଗେଞ୍ଜି ବାଟେ ଲୁଙ୍କୁଚେଇ ଲୁଙ୍କୁଚେଇ ପଳେଇବାକୁ ତାର ଗରଜ ନାହିଁ । ଅଣ୍ଟାରେ ଟଙ୍କା ଅଛି, ଲୁପ୍ତ ନାଗରିକତା ଫେରିଆସି ଆଣିଛି ସାହସ । ଆଜି ସେ ଭିଡ଼ ଭିତରେ କହୁଣୀରେ ପେଲି କାତ ମାରିଲା ପରି ଆପଣାକୁ କଟେଇ ନେଇପାରେ । ସେ ହାଡ଼ିଟୋକା ନୁହେଁ, ମଇଳା କଢ଼ାଳ ମଜୁରିଆ ନୁହେଁ । ଏଇ ବଡ଼ ସହରର ବଡ଼ ରାସ୍ତାରେ ଜଣେ ମଣିଷ, ଯାହାଠିଁ ଟଙ୍କା ଅଛି ।

ଚଳନ୍ତି ଛବି ପରି ନିତିଦିନଆଁ ଦି ପାଖର ହାଟ ବଜାର । ସେ ଖାଲି ନିରର୍ଥକ ଦୃଶ୍ୟ ନୁହେଁ । ଜିନଷର ରୂପ, ଜିନଷର ରଙ୍ଗ ଆଖିରେ ପଡ଼ୁଛି । ସେ ଭାବୁଛି କଣ ତାର ବିଶିଷ୍ଟ ଉପକାର ଆପଣା ପାଇଁ ? ଏତେ କାଳ ଶୋଇ ରହିଥିବା ସହରର ବଜାର ଯେପରି ନିଦରୁ ଉଠି ଚହଲ ପକାଉଛି ତାହାରି କାନପାଖେ ଏକୁଟିଆ । ସାକୁଲେଉଛି, ଫୁସୁଲେଉଛି । ତାର ଆଖିରେ ବି ପୂରିଛି ବ୍ୟବସାୟୀ ସ୍ତରର ମଲଚଷ୍ମା ଚାହାଣୀ । ଦେଖିଲାମାତ୍ରେ ମନେ ମନେ ଆନ୍ଦୋଳନ—ଇସ୍‌କା କ୍ୟା କିମ୍ମତ୍—କେତେ ପଇସା ଯାର ଦାମ୍ ?

ବାନମୁଣ୍ଡା ଗରଜୁଛି ।

ଚହଟିଛି ନିଶା ।

ସନିଆ ଥରେ ମରି, ଆଉ ଥରେ ଜନ୍ମହୋଇଛି । ପାଦ ତଳେ କଅଁଳ ଗଦି ପରି ନରମ ସ୍ୱପ୍ନ । ଘୂରି କରେ ବିଚିତ୍ର ଆଲୁଅ ।

ଗାଡ଼ି ଚଢ଼ି, ଦାମୀ ଶାଢ଼ୀ ପିନ୍ଧି ଚାଲିଛନ୍ତି କଏ ସେ ଏମାନେ ସିନେମା ଦେଖି ! ତୋଡ଼ାଏ ମଲ୍ଲୀଫୁଲ ପରି । କି ସୁନ୍ଦର ! ଚାହିଁଲମାନେ ମୁଣ୍ଡ ଧକ୍ ଧକ୍ ହେଉଛି । କେତେ ସ୍ୱାର କମ୍ପନ୍ତ୍ !

ଗାଡ଼ି, ମଟର ଗହଳ ।

ଧୂଳି, ଶବ୍ଦ ।

କମ୍ପିତ ଦୁନିଆରେ ମନକୁ ମନ ମୂଲ୍ ପଚାରି ପଚାରି ଟଳି ଟଳି ଚାଲିଛି ମଉନ ଗବଖି । ଏହି ଜନ୍ମରେ ଘଡ଼ିଏ ତାର ପୁନର୍ଜନ୍ମ ହୋଇଛି ।

ଚାରିଆଡ଼େ ଖାଲି ଉଜ୍ଜ୍ୱଳ କୁହୁଡ଼ିର କଣିକା ପରି ।

ଏ ଜନ୍ମର ଆଶାର ବାମ୍ପ ହୋଇଛି ଆର ଜନ୍ମର ବାତାବରଣ ।

ଲୁଗା ଦୋକାନରେ ସନିଆ ପଚାରିଲା, ତାର ଖୁବ୍ ବଡ଼, ଲୁଗା ଦରକାର—ଦୁଇଟା ଫଙ୍କା; ଖୁବ୍ ବଡ଼, ଖୁବ୍ ଭଲ ।

ଦୋକାନୀ ଗୋଛାଏ ଅଜାଡ଼ି ଦେଲା । ବାଛିବାକୁ ବହେ ଡେରି, ମନକୁ ଆସୁ ନାହିଁ ।

ପ୍ରକାଣ୍ଡ ଲୁଗା···ବଡ଼ ଥାନ । ବିଚିତ୍ର ଫୁଲ ପଡ଼ିଥିବା ଖୁବ୍ ଲମ୍ବା କାମିଜ୍ । ଗରମ କନାର ମୋଟା ଗେଞ୍ଜି, ସେଥିରେ ନାଲି ନାଲି ଛାପ, ନାଲି ନାଲି ଫୁଲ, ଲତା । ପୁନ ପାଇଁ ଛିଟ ଶାଢ଼ୀ, ବାସ୍ନା ତେଲ ଦ ବୋତଲ, ସାବୁନ । ପୁନବୋଉ ପାଇଁ ଧୋତି । ବଡ଼ ଗଣ୍ଠିଟାଏ । ଅଣ୍ଟା ଉଶ୍ୱାସ ପଡ଼ିଲାଣି । ଆଶା ଅଛି ଫେର୍ କାଲିକି ।

ଉପହାର ଧରି ଝାପ ଲଗିଲା ପହରେ ପୁନକୁ ଡାକିଗଲାବେଳକୁ, ହରୁଦିନ ପରି କେମା ଖେଙ୍କି ଗୋଡ଼େଇଲା—"କୁଆଡ଼େ ଆଇଲୁ ରେ ଚୁଲିପଣା ! ରାତିଟାରେ ପୁନ—ପୁନ—ହେଇ ରେ ?"

"କାହିଁକି ଗାଳି ଦଉଚୁ ମାଉସୀ ! ଦେଖିଲୁ, ତମ ପେଇଁ କଣ ଆଣିଚି— !" ଫିଟେଇ ଦେଇ ସଜେଇ ଥୋଇଦେଲା ।

କେମାର ଗାଉଁ ଗାଉଁ ଭଣ୍ଡିରେ ମରିଗଲା । ବିସ୍ମୟରେ ଥରେ ଜିନିଷକୁ, ଥରେ ସନିଆ ମୁହଁକୁ ଅନେଇଁ ଅନେଇଁ ହୁଗୁଲା ହୋଇ, ଥୋମଣୀ ଲଟକି ପଡ଼ିଲା । ଖାଲି ଗୋଟାଏ ବଡ଼ ଆଁ ।

କେତେ ବେଳ ପରେ— । ତଣ୍ଟି ବସେଇ ବସେଇ ଜେମା କହିଲା—"କୋଉଠୁ ପାଇଲୁ ଏଗୁଡ଼ାକ ସନିଆ ! କହ, କହ; ମୁଁ କାହାକୁ କହିବି ନାହିଁ ।"

କେମିତି କୁଟୀଳ ତାର ଚାହାଣୀ ! ଡିବି ଆଲୁଅରେ ମୁହଁଟା ଦିଶୁଛି ଭୟଙ୍କର । ସନିଆର ମୁରୁକିହସା ମଉଳିଗଲା । ଗମ୍ଭୀର ହୋଇ କହିଲା—''ସେମିତି କାହିଁକି ହଉଚୁ ମାଉସୀ ? କଣ ଚୋରି କଲି କି ? ବଜାରରେ ଜିନିଷ ଯାହାକୁ ଯେତେ, କିଣି ଆଣିଲେ ହେଲ ।''

''ହଁ ରେ; ଜାଣିଚି, ଜାଣିଚି । ପଇସା ଡିଆଁ ମାରୁଥିଲା ତୋ ଅଣ୍ଟିରେ କହିବୁ ନାହିଁ ?"

''ପଇସା ନ ଥିଲା ତ କିଏ ମାହାଲିଆ ଦେଲା ? ମୋର କି ଖର୍ଚ୍ଚ ? ଜଣେ ମଣିଷ ତ, କୋଉଦିନାଳୁ ସାଇତିଥିଲି ପୁନି ପାଇଁ କିଛି ଆଣେ—''

ଜେମା ମୁଣ୍ଡ ହଲେଉଥାଏ । ସନିଆ କହିଲା—"ପୁନିକି ଟିକିଏ ଛାଡ଼ି ଦେ ମାଉସୀ, ଯିବା ବାଇସ୍କୋପ୍ ଦେଖି ।''

ଜେମା ଶୁଣିପାରୁ ନ ଥାଏ, ମୁଣ୍ଡ ହଲେଉଥାଏ । ସନିଆ ଅତି ଆବେଗରେ କହି ଲାଗିଛି—''ମୋର କିଏ ଅଛି ମୋ ପେଇଁ ମାଗୁଣି କରିବ ମାଉସୀ ! ଦେଖିବୁ ନାହିଁ, ତୋ ପୁନିକୁ ଫୁଲ ପରି ସାଇତି ରଖିଥିବି । ଅଗ ଗୋଡ଼ରେ କଣ୍ଟା ବାଜିବ ନାହିଁ, ମଇଲା କରେଇବି ନାହିଁ, କାମ କରେଇବି ନାହିଁ । ମୋର ଯାହା ଅଛି ସବୁ ନେ, ପୁନିକି ମତେ ଦେ । ହେଇଟି ଦେଖ୍, ତୋ ଗୋଡ଼ତଳେ ପଡ଼ୁଚି କଣ କହୁଚୁ—ପଦେ ତ କଥା—''

''ମଲି, ତୁ ଯାଇନୋଉଁ କି ରେ ଚୁଲିପଣା ! ତତେ କଣ ନାଗିଚି କି ରେ, ରାତିରେ ହଟା କରୁଚୁ—''

ନିଆଁ ଧାସରେ ପୁନି ଠିଆ ହୋଇ ଆଖିମିଟିକା ମାରୁଛି, ହାତ ଠାରି କଣ ବୁଝୋଉଛି । ରାତିକ ପାଇଁ ସେତିକି ସ୍ମୃତି । ସ୍ଥା ପରେ ଟୋକିଲ ମଦ ।

ପୁନି ଆସିବ ନାହିଁ । ଜେମା ଜଗି ବସିଛି ।



## ଅଣଗ୍ରଲଣ

କି ଉପଦ୍ରବ !—ଅଘୋରବାବୁ ଭାବୁଥିଲେ । ଅନ୍ଦାଜ କଲେ ଜଣାପଡ଼େ, ପ୍ରତି ପନ୍ଦର ମିନିଟ୍‌ରେ କାହାର ନା କାହାର ଗାଡ଼ି ଆସି ତାଙ୍କ ଘର ସାମ୍ନାରେ ଅଟକୁଛି, ଲୋକ ଆସୁଛନ୍ତି । ପ୍ରତି ମୁହୂର୍ତ୍ତରେ ଆଶଙ୍କା ଯେ, ତାଙ୍କୁ ବାପାଙ୍କର ଡାକରା ଆସିବ । ଅଘୋରବାବୁ ବିରକ୍ତ ହେଉଥିଲେ । ଦୁଇ ଦିନ ହେଲା ଏପରି ଲାଗିରହିଛି । ସମସ୍ତ ନାହିଁ, ଅସମସ୍ତ ନାହିଁ, ଖାଲି ଚିତ୍କାର—'ଅଘୋର', 'ଅଘୋର' । ତଳକୁ ଓହ୍ଲେଇଗଲେ ବୈଠକଖାନା ଘରେ ନିଶ୍ଚୟ ନୂଆ ଲୋକ ଥିବେ । ପ୍ରଶ୍ନ ଉଠୁଥିବ, "ଚୋରି କଥା କଣ ହେଲା ? କିଛି ସନ୍ଧାନ ମିଳିଲା ? ଆଃ, ଆଜିକାଲି ସହରର ଯେଉଁ ଅବସ୍ଥା, ରହିବା ଅସମ୍ଭବ ।"

ଏମିତି ସହାନୁଭୂତି ଜଣାଇବାକୁ ସେମାନେ ଆସନ୍ତି । ଅଗଣିତ ଯାହାଙ୍କର ନାଁ, ତାଙ୍କ ସିଗ୍ରି ସମସ୍ତ ନଷ୍ଟ କରିବା ଦରକାର ପଡ଼େ । ହସ ନ ମାଡ଼ିଲେ ବି ହସିବାକୁ ହେବ । ବିରକ୍ତିରେ ଶିରା-ପ୍ରଶିରା ବି ତାତି ଉଠିଲାବେଳେ ଅଣ୍ଟା ହୋଇ, ସଦାପ୍ରସ୍ତୁତ ହସ ହସି ଶିଷ୍ଟାଚାର ବଜାୟ ରଖିବାକୁ ପଡ଼ିବ ଏବଂ ଶହେ ଥର ପରେ ଶହେ ଏକ ଥର ଲାଗି ସେହି ଆଲୋଚନାରେ ଯୋଗଦେବାକୁ ପଡ଼ିବ ଯେ, ତାଙ୍କ ଘରେ ଚୋରି ହୋଇଥିଲା ।

ଅଘୋରବାବୁ ବସି କବିତା ଲେଖୁଥିଲେ ।

ମାସିକ ପତ୍ରରେ ଛପା ହେଉଥିବା ଶବ୍ଦ-ଧନ୍ଦାର ଉତ୍ତର ଯୋଡ଼ିବା ଯେପରି ତାଙ୍କର ଗୋଟିଏ ପ୍ରଧାନ କାର୍ଯ୍ୟ, କବିତା ଲେଖିବା ମଧ୍ୟ ସେହିପରି । ସମସ୍ତ-ଶତ୍ରୁକୁ ଜୟ କରିବା ପାଇଁ ତାଙ୍କ ପକ୍ଷରେ ଯୋଡ଼ିକଯାକ ଅମୋଘ ଅସ୍ତ୍ର; କିନ୍ତୁ କେବଳ କାଳକ୍ଷେପଣ ନୁହେଁ; ସେଥିରେ ସେ ଆପଣା ଆଦର୍ଶବାଦ ପାଇଁ ପରିସର ପାଆନ୍ତି ଏବଂ ତାହା ହିଁ ଆନନ୍ଦ ଦିଏ । ଶବ୍ଦ-ଧନ୍ଦାର ଉତ୍ତର ଖୋଜିଲା-ବେଳେ ଆଖି ଆଗରେ ନାଚୁଥାଏ, ପ୍ରଥମ ପୁରସ୍କାର ପନ୍ଦର ହଜାର ବା କୋଡ଼ିଏ ହଜାର, ଦେଶଭ୍ରମଣ ପାଇଁ ମାଗଣାରେ ବନ୍ଦୋବସ୍ତ, ମଟରଗାଡ଼ି ଇତ୍ୟାଦି । ଅବଶ୍ୟ ଉତ୍ତରଟି ଷୋଳଅଣା ଠିକ୍ ହେଲେ । କବିତା ରଚନାରେ ଆଦର୍ଶ ଭିନ୍ନ ପ୍ରକାର । ତାଙ୍କର ଦୃଢ଼ବିଶ୍ୱାସ, ଦିନେ ନା ଦିନେ ଅନ୍ଧଜଗତ ବୁଝିବ, ତାଙ୍କୁ ଚହ୍ନିବ ।

ନଡ଼ିଆ କୋଠରି, ଆଂଶଆଂଶିଆ - କରମଙ୍ଗା ପରି । ବଡ଼ ବଡ଼ ଝରକା, ସେଥିରେ ରଙ୍ଗ ରଙ୍ଗର କାଚ । ହେଲେ ବାହେ ବଡ଼ ସହରର ଦୁର୍ଗନ୍ଧ ଧୂଳି, ଧୂଆଁ

ଝାଡ଼ିଦେଇ ଭିତରକୁ ପଶି ଆସେ କେବଳ କବିତାର ଉପାଦାନ ହେବାକୁ । କବିତା ଘର । ସେଠି ପ୍ରବନ୍ଧ ଶାନ୍ତ ଉପରେ ଧୀରେ ଧୀରେ କବିତାର ଢେଉ । ଟେବୁଲରେ ଦାମୀ ସାଜ । ଫୁଲଦାନୀରେ ଫୁଲ ଭର୍ତ୍ତି । ସାମ୍ନାରେ ଖୋଲା ହୋଇ ପଡ଼ିଛି ମରକ୍କୋ ଚମଡ଼ା ବନ୍ଧେଇ ନଭୂତ କବିତା ପୋଥି, ସେଥିରେ କାଚ ପରି ପାଲିସ କାଗଜ, ହାତୀଦାନ୍ତ ରଙ୍ଗର । ସାମ୍ନାରେ ବଡ଼ ଦର୍ପଣ । ଭାବିଲାବେଳେ, ଲେଖିଲାବେଳେ ଅନେକ ରହ, ନଜ ଉପରେ କଳାଶକ୍ତିର ଅବତାରର ପ୍ରତିଷ୍ଠା ଦେଖିବାକୁ ପଡ଼େ । ଦାମୀ ଫାଉଣ୍ଟେନ୍ ପେନ୍ ଉଠାଇ ଅଘୋରବାବୁ କବିତା ରଚନା କରନ୍ତି । ବିଜୁଳିପଙ୍ଖା ମୁଣ୍ଡକୁ ଶୀତଳ କରେ । ଅଳ୍ପ ଲେଖି ବେଶି ଭାବନ୍ତି । ମୁହଁ ପାଖର ବଡ଼ ଦର୍ପଣରେ ଆପଣାର ବ୍ୟକ୍ତିତ୍ୱକୁ ଅନାଇଁ ବସନ୍ତି ସଜ୍ଞେଏ କାଳ ।

ଏହି ସାଧନା ମଝିରେ କାନରେ ପଡ଼େ ଚହଲ ଗହଲ । ଦୁଲ୍ ଦୁଲ୍ ହୋଇ ମାନମୟୀ ଯାଏ, ଆସେ । ତେଣୁ ପାଟି ଶୁଭେ—"ଅଘୋର—ଅଘୋର—"

ଆଖି ଆଗରେ ଫୁଟିଉଠୁଛି ଗ୍ରୀବ ତଳର କବିତାର ପାଖୁଡ଼ା । ତାର ନୂଆ ଭାଷା, ନୂଆ ଶୈଳୀ ।

ଆଉ କେହି ବୁଝିବେ ନାହିଁ ତାର ଅକ୍ଷରର ସଙ୍କେତ, କେବଳ ତାଙ୍କ ନଜ ବିନା ।

ଅକୁହା କଥାର ବାହନ ସେ ଅଛପା କବିତା । ମନଇଚ୍ଛା ଅର୍ଥ ଆରୋପି ହେବ । ସେ ମୁକ୍ତ ।

ଘଣ୍ଟା ଘଣ୍ଟା ବସି ଭାବ ଭାବ, ଧାଡ଼ିଏ ଦୁଇ ଧାଡ଼ି । ସେ ଅସମାପ୍ତ ।

ଅଘୋରବାବୁ ବିଶ୍ୱାସ କରନ୍ତି । ସେ ଭବିଷ୍ୟତର କବି ।

କେହି ଜାଣନ୍ତି ନାହିଁ, କେବଳ ଆଉ ଘରେ ମାନମୟୀ ଜାଣେ । ସେ ନଜେ ଚିଠି ଲେଖେ ।

ସେହି ଉପରେ ବସିଲେ ସହରର ଚଲ ଶାଗୁଣା ଦିଶନ୍ତି । ଘରର ଗ୍ରୀବ, ନଡ଼ିଆଗଛର ମଥୁଡ଼, ମନ୍ଦିରର ଉପର । ସେହି ସ୍ତରରେ ଅନ୍ୟମାନଙ୍କ ସଙ୍ଗେ ନୀରବ ଆଳାପ ହୁଏ । କିଶୋର, କିଶୋରୀ, କେବଳ ଭଙ୍ଗୀରେ ତାଙ୍କର ମନକଥା କହିଦେଇ ଯାଆନ୍ତି । ସେ ମଧ୍ୟ କବି ପାଇଁ ଆଧାର । ତଳର ଦୁନିଆ ଉପରକୁ ଗ୍ରୀଡ଼େ ଖବରର ବାମ୍ଫ, କବି ପାଇଁ ଯେତିକି ଦରକାର, ସେତିକି ମାତ୍ର । ଖଣ୍ଡିଏ ଦ୍ୱିପ୍ରହରେ ଝାଳ ସର ସର ନଗ୍ନଛିଆ ବାଟୋଇ ଦାଶ ହୋଇପଡ଼େ ସେହି ଉପରୁ । ବର୍ଷାଦିନେ ଓଦା ମୂଷା ପରି ତଳର ମଣିଷ ।

ଅକୁହା କଥା ପ୍ରକାଶ ପାଇଁ ଛଟପଟ ହେଉଥିଲା, ଫାଉଣ୍ଟେନ୍ ପେନ୍ ଧରିଥିଲେ କବି । ନିରୁପମାର ବିଭାଘର ପାଙ୍ଗ ହେଉଛି । ଏହି ଲଗ୍ନରେ ଯିବେ ଚଳ୍ତା-ଅଚଳ୍ତା ମିଶି ଆହୁରି କେତୋଟି । ଗାଡ଼ି ଚଢ଼ା, ମଟର ଚଢ଼ା ସମାଜ ତେଣ୍ଡ ଫମ୍ପା ଲଗେ । ନାଟଶାଳା ବଖରାରୁ ବିଦ୍ରୋହର ରାଗିଣୀ ବାଜେ ମନେ ମନେ । ତା ପରେ ପୁନ । କେଉଁଠିକୁ ସେ ଆସି ନାହିଁ । ହାଡ଼ସାର ଆଡ଼େ ଦୃଷ୍ଟି ଗଲେ ଅନାବୃତ ମଣିଷର ଅଛୁଆଁ ଦେହର ଛବି ମନରେ କେଉଁଠି ସମଗୁଣ ଉପୁଜାଏ । ଧୀରେ ଧୀରେ ସ୍ତରରୁ ସ୍ତରକୁ ପାଦ ପକାଇ ଭିତରର ଚକ୍ରୀ ବାହାରର ଉପାଦାନ ହୁଏ । ଆଜକାର କବି ଭାବନା ସର୍ବହରାଙ୍କ ଦୁଃଖ, ଅଭାବଙ୍କ ଦାବୀ । ଗରିବ ଗୁଣ୍ଡା, ମୂଲିଆ, ମଜୁରିଆ—ସମସ୍ତିଙ୍କ ପାଇଁ ଗୋଟିଏ କୋହମୟ 'ଆହା' ପଦ । ଆପଣାର ବ୍ୟକ୍ତିତ୍ୱ ଅଳ୍ପପାତରେ ସାଙ୍କେତିକ ଭାଷାରେ ପଦେ ଦ ପଦ ଝରିବାକୁ ଆରମ୍ଭ କରିଥିଲା । ପୁଣି ଉପଦ୍ରବ—ଗାଡ଼ିରେ କିଏ ସେ ଆସିଲେ । ଦୁଲ୍ ଦୁଲ୍ ହୋଇ ମାନମୟୀ ଉପରକୁ ଚଢ଼ିଆସିଲା । କବିତା ଖାତା ଲୁଚେଇ ଲୁଚେଇ, ପାଖକୁ ଆସି ହସିଦେଇ କହିଲା—"ଆରେ ବାଃ !"

"କଣ ଆରେ ବାଃ ?"

ଖାତା ଲୁଚିଗଲାଣି—ଗମ୍ଭୀର ହେଲେ ଅଘୋରବାବୁ । ମାନମୟୀ କହିଲା—"ଗାଁତ ଖାତାରେ କଣ ଚନ୍ଦ୍ର ବ ହୁଏ ଭାଇ ? ନା, ମୁଁ କହୁଥିଲି ପ୍ରାଗୈତିହାସିକ ଯୁଗରେ ମଣିଷ ଗୁମ୍ଫାରେ ଯେଉଁ ଛବି ଗାରେଉଥିଲା, ଆମେ ସେଥିରୁ ଯାହା ବୁଝୁଁ, ସେ ତହିଁରୁ ଯଥେଷ୍ଟ ଅଧିକ ଭାବ ଭାବ ତାଙ୍କୁ ଆଙ୍କିଥିଲା ।"

"ହଠାତ୍ ପ୍ରାଗୈତିହାସିକ ଯୁଗ କଥା ପଡ଼ିଲା କାହିଁକି ?" ଗମ୍ଭୀର ମୁହଁ ଭୀଷଣ ହେଲାଣି ।

"ଆରେ, ଆରେ; ତମେ ରାଗୁଛ କାହିଁକି ଭାଇ ? କାଲି ପଢ଼ୁରେ ଠିକ୍ ଏହି କଥା ପଦକ କହିଥିଲି ଯେ, ସୁରବାବୁ କହିଲେ, 'ବାଃ;' ସେହି ତାଙ୍କର ଅତିମାତ୍ରା ପ୍ରଶଂସା । ଅଜୟବାବୁ ଦୁଇ ହାତ ଲମ୍ବେଇ ତେଇଁ ତେଇଁ ଦୌଡ଼ି ଆସିଲେ । କହିଲେ—'କି ବୁଦ୍ଧିମାନ୍ ଚର୍ଚ୍ଚା ! ଗୁମ୍ଫାମଣିଷର ମନୋଭାବ ବିଷୟରେ ସୁନ୍ଦର ବହିଟିଏ ସେ ଆଣିଦେଇଥିଲେ କି ନା ! ଏଡ଼େ ଦାମୀ କଥା, ପ୍ରଶଂସା ନ କରି ତୁମେ ଓଲଟି ରାଗୁଛ ? ମୁଁ କଣ ତମକୁ କହିଲି କି ?"

ଗମ୍ଭୀର ମୁହଁର ଭୟଙ୍କରଗଣ ଚାଲିଯାଇ, ଆଏ ଘୃଣା । ଅଘୋରବାବୁ କହିଲେ—"ଭାରି ଫାଜିଲ୍ ହେଇଯାଉଚୁ, ନୁହେଁ ? ହଉ, ହଉ; ଏତେ ମଣିଷଙ୍କ ଏତେ ମତବାଦର ପୁଲ୍ଲକମ ହେବାକୁ ମୁଁ ଚାହେଁ ନାହିଁ । ଚାଲୁ ତୁ ଏଠୁ !"

ମାନମୟୀ ଗୋଟାସୁଦ୍ଧା ନାଲି ପଡ଼ିଯାଇଛୁ । ଓଠ ଥରେଇ ଥରେଇ କହିଦେଇ ଗଲା—"ଭଲେ ସମସ୍ତେ ଅଛନ୍ତି, ବାପା ଡାକୁଛନ୍ତି ।"

"ହୁଃ !"

ଅନୁତାପ ଆସୁଛି, ମାନମୟୀ ଗଲାଣି । ମନ ଭିତର ଗୋଳେଇ ଘୋଳେଇ ହେଉଛି । ସବୁ କଥରେ ଅଣ୍ଡାଳିଲେ ଖାଲି ଭଉଣୀ—ଭଉଣୀ ! ଗୋଟିଏ ବୋଲି ଭଉଣୀ ସେ ତାଙ୍କର, ବିନାକାରଣରେ ଏତେ ରୂଢ଼ କଥା ଆସିଲା କାହିଁକି ? କେଉଁ ଗୋଟାକ ଅଡ଼ୁଆ ଲାଗିଲା, କାହାର ଉଦ୍ଧେଗ ?

ଭାବି ଭାବି ବାଟବଣା ହୋଇ ମାନମୟୀର ବଖରାଯାକେ । ଭିତରୁ କବାଟ କିଲା ହୋଇଛି । ଡାକିଲେ—"ମାନି—ମାନି !"

"ପୁଣି କୁଆଡ଼େ ଆସିଲ ଗାଳିଦବାକୁ ! ତୁମେ ଗଲ !" କାନ୍ଦୁରି ପାଟି । ଅନୁମାନରେ ଏତେ ଟିକିଏ ଭୁଲ ନାହିଁ । ଅଘୋରବାବୁ ଲେଉଟିଗଲେ ।

ଦାଣ୍ଡ ଘରେ ଦଳେ ବସିଛନ୍ତି । ମଝିରେ ସୌମ୍ୟ, ଶାନ୍ତ ହୋଇ ଶୈଳେନ୍ଦ୍ରବାବୁ, କରକୁ ଅସ୍ୱସ୍ତି ଅନୁଭବ କଲି ପରି ଜଣେ ପୁଲିସ୍ କର୍ମଚାରୀ ତାଙ୍କର ଅପ୍ରସନ୍ନ ଭାବ । ସହାନୁଭୂତିର ଧ୍ରୁପଦ ଚାଲିଥାଏ । "ବଡ଼ ଦୁଃଖର କଥା···କେଡ଼େ ସାହସ ସେ ଚୋରଙ୍କର !···ଭଗବାନଙ୍କୁ ଧନ୍ୟବାଦ, ଆପଣଙ୍କର ବିପଦ ଆପଦ କିଛି ଘଟି ନାହିଁ ।"

ଶୈଳେନ୍ଦ୍ରବାବୁ ହସିଦେଇ କହିଲେ—"ଆରେ, ଅଘୋର—ଚୋରକୁ ଦେଖିଲ ? କଣ କହିଲ ?" ତା ପରେ ପୁଲିସବାବୁଙ୍କୁ—"ଆପଣଙ୍କର ପାଠ କଣ ଡାକୁଛି ? 'ଏଣ୍ଟର୍ ଟ୍ରୁ ନୋ କ୍ଲୁ' କେବଳ ଏତିକ ନା ଆଉ କିଛି ? ଟିକିଏ ଭଲକରି ଚେଷ୍ଟା କରି ଦେଖିବେ ।"

"ଚେଷ୍ଟା ତ ପ୍ରାଣପଣେ ଚାଲିଛି; କିନ୍ତୁ ଅସୁବିଧା ଏତିକି ଯେ, ଟଙ୍କା ପଇସା ଦେଖି ଚିହ୍ନଟ କରିବା ଜିନିଷ ନୁହେଁ ।" ପୁଲିସ କର୍ମଚାରୀ ଠିଆ ହୋଇ ପଡ଼ିଲେଣି, କହିଲାଗିଛନ୍ତି ।

"ଆପଣ ଆଉ ନୂଆ କଥା କଣ କହିଲେ ଆଜ୍ଞା ?" ଶୈଳେନ୍ଦ୍ରବାବୁ ଖେଞ୍ଚା ଦେଲେ । "ତେବେ ତ ଆମର ଅନୁମାନ ଠିକ୍ । ଦିନାକେତେ ଗଲେ ତୁନ କରି କହିଦେବେ - ପତ୍ତା ମିଳିଲା ନାହିଁ, ନା କଣ ?"

ପୁଲିସ୍ କର୍ମଚାରୀ ଦୁଆରମୁହଁ ଆଡ଼କୁ ମୋଡ଼ିଲେ । କ୍ଷୋଭରେ କହିଦେଇ ଗଲେ—"ବ ସ୍ତବିକ, ଅସୁବିଧା ସେତିକି ଯେ, ଟଙ୍କା ଉପରେ ମାଲିକର ନାଁ,

ଗାଁ ନାହିଁ । କେଉଁ ଝଙ୍କା କେଉଁ ସୂତ୍ରରୁ ଆସିଲା, ତା ଝଙ୍କା ଦେଖି କହିହେବ ନାହିଁ । ଆଇନର ଗଳତ । ତା ଯଦି ନ ହୋଇଥାନ୍ତା, ତେବେ ସବୁ ବଡ଼ ଚୋରଙ୍କ ପୁଞ୍ଜି ପରୀକ୍ଷା କରି ତାଙ୍କୁ ହାଜତରେ ପ୍ରେରଣ ହୁଅନ୍ତା; କାରଣ ଜନ୍ମର ଚୋର ତ ସାମାନ୍ୟ ଚୋର, ଝଙ୍କା ଚୋର ହିଁ ଚୋରୀ ବିଦ୍ୟାରେ ବିଶୁଦ୍ଧ କଳାଶିଳ୍ପୀ । ସେ ନିରାପଦରେ ଆଇନ୍‌ର ପରି ତଳେ ବସି କଳ ଚଳେଇ ଉଦ୍ଧରଣ ଜାରି କରିପାରେ । ହଉ ଆଜ୍ଞା, ନମସ୍କାର ।''

ନମସ୍କାର, ନମସ୍କାର ହୋଇ ସଭା ଭାଙ୍ଗିଗଲା । କେମିତି ଗୋଟାଏ ଗୁମ୍ ପଡ଼ିଗଲା, ସବୁ ଶୁନ୍‌ଶାନ୍ । ପୁଲିସ କର୍ମଚାରୀଙ୍କ ଶେଷ କଥାଗୁଡ଼ାକ ଅଘୋରବାବୁଙ୍କ କାନରେ ଝଣଝଣେଇ ଲାଗିଥାଏ । ହୋହ୍ ହେଲା, ଶୈଳେନ୍ଦ୍ରବାବୁ କହୁଛନ୍ତି— ''ଶୁଣିଲ ତ ଅବିନାଶ, ଚୋରୀର ଦର୍ଶନଶାସ୍ତ୍ର ବିଷୟରେ ଅନେକ କଥା ଶୁଣାଗଲା । ବୋଧହୁଏ ସେତିକ ଶୁଣି ସନ୍ତୁଷ୍ଟ ରହିବାକୁ ପଡ଼ିବ । ଚୋର ଧରାପଡ଼ିବା ଆଶା ଅତି ଅଳ୍ପ ।''

ଅବିନାଶବାବୁ ଗମ୍ଭୀର ହୋଇ ବସିଥାନ୍ତି । ଶୈଳେନ୍ଦ୍ରବାବୁ ଉପଦେଶ ଦେଲେ—''ଏମିତି ଦୁଃଖିତ ହେଲେ ଚଳିବ ନାହିଁ । ଭବିଷ୍ୟତ ପାଇଁ ଆୟୋଜନ କରିବାକୁ ହେବ । ଅନୁମତି ପାଇ ସାରିଛ, ହାଡ଼ସାହି କିଣି, ବିପଦକୁ ପାଖରୁ ହଟେଇ ଦିଅ । ସେମାନେ ଦୂରକୁ ଗଲେ, ତୁମ ଘର ଉପରେ ଉପଦ୍ରବ କମ୍ ହେବ ।''

ଦେଖୁ ଦେଖୁ ମେଘ ଲଦି ଆସିଲାଣି । ଚଡ଼୍ ଚଡ଼୍ କରି ଘଡ଼ଘଡ଼ି ମାରିଲା । ଶୈଳେନ୍ଦ୍ରବାବୁ କହିଲେ—''ଏଥର ମୁଁ ଉଠେ—''

''ଉଠିବ କଣ ? ଶୁଣ କଥା ଅଛି ।'' ଅବିନାଶବାବୁ ଅଧୀର ହୋଇ କହିଲେ—''ସବୁ ତୁମରି ଉପରେ, ତୁମେ ନ କଲେ ମୁଁ କଣ କିଛି କରି ପାରିବି ? ତୁମେ ଅନୁମତି କରେଇ ଦେଲ, କିଣାକିଣି ଭାର ବା ମୁଁ ନେବି; କିନ୍ତୁ ତା ପରେ ? ଏଗୁଡ଼ାକୁ ଏଠୁ ଉଠେଇବାକୁ କି ବ୍ୟବସ୍ଥା ?''

ହସି ହସି କହୁଥାନ୍ତି । ଏପରି ସମସ୍ୟାକୁ—ଯେତେବେଳେ ସଂସାରର ହିତ ପାଇଁ ସେ କୋବଲେଉଥିବେ, ଫୁସୁଲେଉଥିବେ, ତାଙ୍କର ଏହିପରି ପିଲାଳିଆ ମିଠା ହସ । ବନ୍ଧୁଙ୍କର ଶକ୍ତିକୁ ପ୍ରଶଂସା କରି ସେ କହୁଥାନ୍ତି, ''ଏ ଯେଉଁ ପଶୁଗୁଡ଼ାକ, ସେମାନେ ମୋ କଥା ମାନିବେ ନାହିଁ । ତୁମରି ପଦ ସେଠି ବୋଲ କରିବ—''

ଚଷମା ଆଢ଼ୁଆଳରୁ ଉଜ୍ଜ୍ୱଳ ଦୃଷ୍ଟିଦ୍ୱାରା ଶୈଳେନ୍ଦ୍ରବାବୁ ଶୁଣୁଥାନ୍ତି । କହିଲେ—''ତା ପରେ ?'' ''ତୁମେ ତୁମରି ସଭା ଡାକି ତାଙ୍କୁ ବୁଝେଇବ ନା ଇସ୍ତାହାର ଦେବ କାଗଜରେ, ନା ଅନ୍ୟ କଣ କରିବ; ସେ କଥା ତୁମ ଉପରେ ନିର୍ଭର କରେ । ଯାହା କର, ତାଙ୍କୁ ଏଠୁ ହୁରୁଡ଼ାଅ—'' ଶୈଳେନ୍ଦ୍ରବାବୁ

ତୀକ୍ଷ୍ଣ ଦୃଷ୍ଟିରେ ଅଘୋର ଆଡ଼କୁ ଅନେଇ ରହିଲେ । ଅବିନାଶବାବୁ କହିଲେ—
"ଅଘୋର, ଟିକିଏ ଯା; ପଛେ ଡାକିବି ।"

ଗୁଲଲ୍ ଏଣିକି ମନ୍ତ୍ରଣା ଦୁଇ ବନ୍ଧୁଙ୍କର । ଆଦାନ ପ୍ରଦାନରେ ବନ୍ଧୁତା ବଢ଼ିଚାଲିଛି, ସେମାନେ ଅଜେୟ । ଅବିନାଶ ବଳେଇ ଦେବେ ଶୈଳେନ୍ଦ୍ରଙ୍କୁ, ଶୈଳେନ୍ଦ୍ର ଅବିନାଶଙ୍କୁ, ଅବିନାଶ ଶୈଳେନ୍ଦ୍ରଙ୍କୁ । ଯୋଜନା ସମ୍ପୂର୍ଣ୍ଣ ହୋଇଥିବ, ସଫଳ ହୋଇଥିବ । ଅବିକଳ ଫୁଟବଲ୍ ଖେଳ । ଅଘୋର ଭାବି ଭାବି ଗଲେ । ଉପରର କବାଟ-କୋଠରୀ ସହିତ ତଳର ଏ ମନ୍ତ୍ରଣାକକ୍ଷ ଖାପଖାଉ ନାହିଁ, ତୁଳନାରୁ ବିଷାଦ ଜନ୍ମେ । ଏହି ଶୈଳେନ୍ଦ୍ରବାବୁ, ସବୁଦିନଆଁ ନେତା, ଦମ୍ଭିଲ ଶ୍ରେଣୀର ଦମ୍ଭ ଖୁଣ୍ଟ । ଭଙ୍ଗାଘରର ଅଙ୍କୁଆଁ ମଣିଷ—ତୁମ ପାଇଁ କିଛି କରିହେବ ନାହିଁ—ସମସ୍ତ ଅସଜ ପଡ଼ିଛି ରେ; କିଛି କରିହେଲା ନାହିଁ, କରିହେଲା ନାହିଁ ।

କବି ଭାଷାରେ ଧନାମାର ଗ୍ରାମପୁତ୍ରଙ୍କ ସ୍ୱଗତ ପଦ୍ୟରେ ଆପଣାର ସହାନୁଭୂତି ମନେ ମନେ ଆବୃତ୍ତି କରି କରି ଅଘୋରବାବୁ ଉପରକୁ ଚଢ଼ିଗଲେ ।

ତୋଫାନ ଉଠିଛି, ଆକାଶରେ କଳାମେଘ ଲଦାଲଦି । ନଈ ଭିତରେ ମଲା ବାଲିରେ ଚହଲ ପଡ଼ିଛି, ଗୁଳିଆଡ଼େ ବତାସର ଧୂମ । ବଜ୍ର, ଘଡ଼ଘଡ଼ି; ବଜ୍ର, ଘଡ଼ଘଡ଼ି, କମ୍ପ, ବେଗ, ଓଲଟ ପାଲଟ, ବିପ୍ଳବ । କି ସୁନ୍ଦର—କି ସୁନ୍ଦର ! ଅଘୋରବାବୁ ଠିଆ ହୋଇ ଦେଖୁଥାନ୍ତି । ବଡ଼ ବଡ଼ ଗଛ ଝାଙ୍କି ହୋଇ, ଦୁହିଁ ହୋଇ ଝାଡ଼ି ଝାଡ଼ି ଡାକୁଛି, ନଇଁପଡ଼ି ଦଣ୍ଡବତ କରୁଛି । ହୁଲ୍ହୁଲି ପକେଇ ଧାଇଁଛି ତୋଫାନ । ଉପରେ ମେଘ ଆସୁଛି; ଫାଟୁଛି, ଯୋଡ଼ୁଛି । ଅଜଣା ବାଟରେ ଖସିଯାଉଛି ଗାଢ଼ କଳା ମେଘ, ଭସ୍ମ ହୃଦୟର ଉଛୁଳା କବିତା ପରି ।

କୋଠା ଉପରୁ କି ସୁନ୍ଦର ଦିଶେ—ଦମ୍ଭ କୋଠାର ନିର୍ଭର ବିଶ୍ୱାସର ଆଶ୍ରାରେ ଦେଖିବାକୁ ସମ୍ବାଦ, କଳ୍ପନାକୁ ଠେଲିପେଲି ଦେଇ ହୁଏ ସେହି ଆବର୍ତ୍ତ ଭିତରକୁ । ପ୍ରତି ରକ୍ତବିନ୍ଦୁ ଯେପରି କି ଚଳାର କରି ଉଠେ, ମୁଁ ତୋଫାନ—ମୁଁ ତୋଫାନ ।

ରାସ୍ତାରେ ପଲେ ଗୋରୁଗାଈ ଡେଇଁ ଡେଇଁ ପଳାଇଲେ । ବିକଳ ହୋଇ, ଅନ୍ଧ ହୋଇ ଧାଇଁ ଧାଇଁ ଗଲେ ପକ୍ଷୀ ପକ୍ଷୀ ଲୋକ । ଗୁଡ଼ ଗୁଡ଼ କରି ତୋଫାନ ଗୋଡ଼େଇଛି । ମନେ ମନେ ଅଘୋରବାବୁ ଧାଇଁଛନ୍ତି ପଛେ ପଛେ । ପହିଲି ଆଷାଢ଼ ଜଣା ଚହଟେଇଛି, ପ୍ରାଗୈତିହାସିକ ଯୁଗରୁ ଉଠି ଧାଇଁଛି ବଳକାମୀ ବ୍ୟକ୍ତିତ୍ୱ । ସହାନୁଭୂତିର ସନ୍ତସନ୍ତିଆ ଦୁର୍ବଳତା ମନରୁ ଶୁଖିଗଲାଣି କେତେବେଳୁ । 'ମୁଁ' କାରର ଧ୍ୱନି ଉଠିଲାଣି । ବଜ୍ର ଘଡ଼ଘଡ଼ିର ପଟୁଆର ସଜେଇ ରକ୍ତଗତ ମାଲିକପଣର ଅଭିଯାନ—ସବୁ ଭାଙ୍ଗିବ ଭୁଜିବ, ସବୁ ଗୁଣ୍ଡା ହୋଇ ଧୂଳି ହେବ ଗୋଡ଼ତଳେ । ରହିଥିବ ଏକା ମୁଁ—ଯୁଗେ ଯୁଗେ ।

ଅଭିଜାତ ଅବିନାଶଙ୍କ ପୁତ୍ର ଅଘୋର ବଂଶମର୍ଯ୍ୟାଦାର ସ୍ୱପ୍ନ ଦେଖୁଥିଲେ ।



# ଗୃହଲକ୍ଷ୍ମୀ

ବରଷା ଛେଚୁଛି । ଅନ୍ଧାର ଘରେ ପୂନ ଓ ତା ମା ଏକୁଟିଆ । ଭଙ୍ଗା ଛପରର କଣା ବାଟେ କେଉଁଠି କେଉଁଠି ଦର ଦର ପାଣି ଗଳୁଛି । ମଝିରେ ମଝିରେ ଘର ଚଟାଣରେ ଟୋପା ଝରିପଡ଼ିବାର ଶବ୍ଦ । ସମାନ ବ୍ୟବଧାନ ରଖି, ସମାନ ଛନ୍ଦରେ ତାଳରେ ବାଜି ଲାଗିଛି ।

ଚୁଲିରେ ପାଣି ପଶିଛି, ରନ୍ଧାବଢ଼ାକୁ ଗରଜ ନାହିଁ ।

"ଆଲେ ପୁନ, ଦେଖ୍ ବା କୋଉଠି ଗଳୁଚି ! କଂସାଟାଏ, ଡାଟିଆଟାଏ ହେଲେ ଥୋଇ ଦେ । ଘର ତ ଭାସିଲା !"

"କୋଉ ଗୋଟାଏ ଜଲା ହେଇଚି କି ଥୋଇଦେବି ? କୋଉଠୁ କଣା ଖୋଜିବି, ନଥଁ ଆଣିବି କୋଉଠୁ ? ଡ଼ିବି ଲଟେଗଇଲେ ପବନ କଣ ରଖିଦବ !"

"ନଇଲେ ଘର ଏମିତି ଭାସୁଥବ ? ଶୋଇବୁ କୋଉଠି ? ଦେଖୁଚୁ ଏ ଚୁଲିପଣା ଗାଡ଼ ରଡ଼ ମେଘର ବଢ଼େଇ ! ଘରେ ଖୁଣ୍ଟିଏ ମସ୍ ହୋଇ ନାହିଁ, ଏମିତି, ଗାଳି ପକେଇଲା । ନଥଁ ସିଁ ଦଇବ ହାଟ ଦୋଖ୍ଚ ଲୋ—"

"ତୁ ବ' ଥିର ହୋଇ, ଘର ଭାସିଲେ ଭାସୁ । ଯୋଉ ଘର ତ—"

"ହେଇ ଲୋ, ଘରକୁ କାହିଁକି ଗାଳିଦଉଚୁ ? ଘର ତୋ ମୁଣ୍ଡରେ ଲଦା ହେଇଚି କି ?"

ବୋଉର ଚଢ଼େ଼ାଳ ଉଠିଛି । ପୁନ କିଛି କହିଲା ନାହିଁ ।

ଭୁନତାନ ପଡ଼ିରହି କେମା କାନ୍ଦୁଣିମାନ୍ଦୁଣି ହୋଇ କହିଲା—"ଆହା ପୁନ ଲୋ, ଉପାସ ଶୋଇବୁ ଆଜି ? ଚୁଡ଼ା କି ଭୂଜା ଦ ପଇସାର ଆଣିଥିଲେ ହେଲେ..."

"ତୁ ଥିର ହେଇ ବସୁନୁ କାହିଁକି ? ଯୋଉ ପାଗ— !" ଝପର, ଝପର, ଝପର । ହାଉ ହାଉ ହୋଇ ବତାସ । କଳା ମିଶ୍ ମିଶ୍ ଅନ୍ଧାର ! ଛାଇ ଛାଇ ହୋଇ ଘଡ଼ଘଡ଼ି ମାରେ ।

"ହେଇ, ଶୁଣୁ ଲୋ ପୁନ, ନଇମୁଣ୍ଡ ଡାକୁଚି । ଲାଗିବ ଝଡ଼ । କାନ୍ଥ ତ ପଡ଼ିବ, କଣ କରିବା ?"

"ସେଇଥିପାଇଁ କହୁଥିଲୁ କାମକୁ ଯାଆନା ବୋଲି ! ଜଣକ ରୋଜଗାରରେ ସବୁ ଗୁଜୁରାଣ ମେଣ୍ଟିବ—"

"ଭୁଲି ହୁ, ଭଲ ବେଳେ ଅକଲ ଦଉଚୁ । କାମକୁ ଗଲୁ ଯେ କଣ କୋଠା ପିଟିଲୁ ?"

ନା—ବୋଉ ଚଢ଼ୋଳ ଧରୁଛୁ । ପୁନି ଭୁଲି ହେଲା ।

କାଲିର ପୁନି ଆଜି ଆଉ ନାହିଁ ।

କାଲି ସେ ଥିଲା ଜେମାର ଆଦରମଣି ଗେହ୍ଲାଝିଅ । ଘରେ ବସିବ, ଖେଳିବ, ଖାଇବ । ନରକ ଘାଣ୍ଟି ଘାଣ୍ଟି ଶୁଖିଲା ମୁହଁରେ ଜେମା ଘରକୁ ଫେରିଲାବେଳକୁ ସଜ କଇଁଫୁଲ ପରି ଅଗଣାରେ ଫୁଟି ଉଠି, ଜେମାକୁ ଆଶ୍ୱାସ ଦେବ—ତାର ମଣିଷପଣ ଡୁବି ନାହିଁ, ଘରେ ସାଇତା ହୋଇ ଅଛି ।

ଆଜି ସେ କେବଳ ମେହେନ୍ତାଣୀ । ମା'ର ସାଙ୍ଗସରିସା, ଘରଲେଖାରେ ଜଣେ । କେତେ ଚଞ୍ଚଳ ପୁନି ଫୁଟିଉଠୁଛି—ଜେମା ଦେଖେ, ଆଶ୍ଚର୍ଯ୍ୟ ହୁଏ, ଦୁଃଖିତ ହୁଏ । କାରଣ, ଜୀବନର ପାଚିଲା ଅଭିଜ୍ଞତା ଯେନ ସେ ବୁଝିପାରେ, ଯେ ଜଳଦ ଫୁଟିଲେ ଜଳଦ ମଉଳିଯାଏ, ତା ପରେ ଝଡ଼ିପଡ଼ିଯାଏ, ରୋକି ହୁଏ ନାହିଁ ।

ମେହେନ୍ତାଣୀର ଶହେ ଚିନ୍ତା, ଶହେ ପିଆ ଭୋକ; ଯାହାକୁ ଲୁଚେଇ ପାରୁ ନାହିଁ ବଢ଼ିଚାଲିଛି ସେ, ପୁନିର ବୟସ । ଅନ୍ଧାର ଆସି ଡାକ ନେବ, ଅମଡ଼ା ମାଡ଼ି ସେ ଚାଲିଯିବ, ଦରିଦ୍ରର ସଙ୍ଗୀତ । କଣ ଲୁଚିରହିଛି ସେ ସୁନ୍ଦର ମୁହଁ ପଛଆଡ଼େ ?

ସେହି ଛୋଟିଆ ମୁଣ୍ଡର ଚିନ୍ତା ଅଭିଜ୍ଞତା ଫିଟାଇ ପଢ଼ିବା ସକାଶେ ମା'ର ମନ କୌଣସି ଆମ୍ବଳକୁ ବଡ଼ ମଣନ୍ତା ନାହିଁ । ବସି ରହିଛି । ମଉନମୁଖୀ, କଅଁଳକଣ୍ଟି ପରି । ପୁନିର ମନ ଛକପକ ହେଉଛି ।

ଭାବୁଥିବ ପରି, ମା'ର ପଣତ ତାର ପଘା । ପୁନି ସ୍ୱାତନ୍ତ୍ର୍ୟ ଖୋଜୁଛି ।

ଓଃ, କି ଅନ୍ଧାର ! ବଢ଼ି ଅସୁରୀ ଡାକୁଛି, ନରମୁଣ୍ଡ ଡାକୁଛି ।

"କାହିଁକି ସେଠି ଦୁଆରମୁହଁଟାରେ ବସିଛୁ ପୁନି ? ମିଛେରେ ଥଣ୍ଡା ଲାଗିବ ।"

"ଘର ପରି ଲାଗୁଚି !" ମୁହଁରେ ଲୁଗା ମାଡ଼ି ହସ ରୋକି ପୁନି କହିଲା ।

"ଆଲୋ, ତୋ ଆଖିକି ନିଦ ନାହିଁ ?"

"କଣ କହୁଚୁ ବୋଉ, ଏତେ ପହରୁ ? ଦେ, କଣ ମୁଢ଼ି ଭୁଜା ଆଣିବୁ ପରା ! ମୁଁ ଯାଏଁ, ବଡ଼େ ମେଘ ପକେଇବ ।"

"ଗଲୁଟଆଲ ହ'ନା । ଶୋଇବୁ ତ ଶୋ, ବସିବୁ ତ ବସି ଥା ।"

ପୁନି ବସି ଭାବୁଥାଏ, କଜଳମତୀ ଘରେ ଆଲୁଅ ଲିଭିଥିବ । ଟିକିଏ ସେ ଯାକେ ଯାଇପାରନ୍ତେ, ବରଷା ବରଷା ପଣ ଲଗନ୍ତା ନାହିଁ ।

କେମା ତା କରେଇ ଦେବ ନାହିଁ ।

କାହିଁକି ? କଣ ଆଉ ବାକି ? ଅଭିମାନ କଣ ସେ ଭାବୁଥିଲା । ଯୌବନର ପହିଲି ଝଲକରେ ଜୀବନକୁ ଭଲ ପାଇ ସେ ପାଇଥିଲା ପାଇଖାନା । ତା ପରେ କଜଳମତୀ—ଯାହା ଅଗଣାରେ ଫୁଲ ଫୁଟେ, ଯାହା ଘର ବାସେ । ଆପଣା ଦେହର ତାଠାରୁ ଆନନ୍ଦ ମିଳେ ଯେଉଁଠି ।

ଶିକ୍ଷା ନାହିଁ, ଉନ୍ନତତର ଆନନ୍ଦ ନାହିଁ । ସାରା ଦୁନିଆରେ ସମ୍ପତ୍ତି ବୋଲି ଅଣ୍ଟାଳ ବସିଲେ, ମିଳେ ଖାଲି ନିଜ ଦେହ । ତାକୁ ହିଁ ଖର୍ଚ୍ଚ କରି ଚୁଲି ଉପରେ ହାଣ୍ଡିରେ ଥୋଇ ଥୋଇ, ମନର ଅଭାବ, ଦେହର ଅଭାବ ମେଣ୍ଟାଇବା କାମ । ଭଦ୍ର ଜୀବନ ମୁହଁ ଆଗରେ ଟୋକେଇ କାଖେଇ ନିଠ ବୁଲି, ମଣିଷର ଜନ୍ମଗତ ଭୂଷଣ ଯେଉଁ ଆତ୍ମସମ୍ମାନ, କେଉଁଦିନୁ ତାହା ଝଡ଼ପଡ଼ ନର୍ଦ୍ଦମାରେ ଲେଟି ସାରିଛୁ ।

ଖାଲି ନରକ, ଭିତରେ ବାହାରେ । ସେଠି ଆନନ୍ଦର ଉପାସ୍ୟ କ୍ଷଣିକ ଉତ୍ତେଜନା । ପିମ୍ପୁଡ଼ି ବଢ଼ି ବଢ଼ି ହାତୀ ହେବ ନାହିଁ । ତେବେ କାହିଁକି ଏତେ ଆକଟ କଟକଣା ?

"ବୁଲି—।"

"ଶୁଭୁଚ ପୁନି, କାହା ଘର କାନ୍ଥ ପଡ଼ିଲା ଲୋ—"

ଅନ୍ୟମନସ୍କ ହୋଇ ପୁନି କହିଲା—"ପଡ଼ୁଥିବ ।"

"ପଡ଼ୁଥିବ କଣ ଲୋ, ତତେ ଡର ମାଡ଼ୁ ନାହିଁ ? ଶୋଇପଡ଼ ।"

ଝର ଝର ବରଷା । ତାହାର ଭିତରେ ବସ୍ତିସର ବଇଁଶୀ କାନରେ ବାଜୁଛି; କଜଳମତୀ କଣ କରୁଥିବ ?

ନିଦ ନାହିଁ ।



# ଏକଗୃଜଣ

କାଉଳା ଅନ୍ଧାରୁଆ ପାଗ । ପଚ୍ ପଚ୍ କାଦୁଅ । ନର୍ଦ୍ଦମାରେ ସୁଅ ପଡ଼ୁଛି । ସଢ଼ାପଗ୍ଧ ଅସନା ଭାସି ଆସୁଛି । ପାଇଖାନାର ତଳ ଏକାକାର । ଚହଲ ଆସୁଥିବା ମଇଳା ଉପରେ ପଲ ପଲ ମାଛି ।

ସଫା କର କର ଠନ ବନ୍ଧୁ ଗୁଳୁଥାନ୍ତି । ରଙ୍ଗ, ଟେଙ୍ଗ, ପୁନ । ଭୁହାଇ ଭୁହାଇ ମେଘ ଅସବ୍ର ଆସେ । ଶୀତରେ ଦେମ ଟାଙ୍କର ଉଠେ । ପିନ୍ଧାଲୁଗା ଦେହରେ ଲଗିଯାଇ କେଉଁଆଡ଼େ ଅଦୃଶ୍ୟ ହୋଇଯାଏ ।

ତରତର ହୋଇ ପାଇଖାନାରୁ ପାଇଖାନା । ଅବସର ଦେଖି କାହା ବାଗପଟେ କ ଓଳତଳେ ଠିଆ ହୋଇଯାଇ ଟିକଏ ଗପସପ । ପୁଣି କାମ, ଅଟୁଣ୍ଡା ନଟ ।

ମଇଳା ହାତରେ ପିଙ୍କା ଖଣ୍ଡେ ମୁହଁରେ ଗେଞ୍ଜ ଦେଇ, ଙ୍ଗେବେଇ ଙ୍ଗେବେଇ ପୁନ ଟେଙ୍ଗକୁ କହିଲା—"ଦେଲ୍ ପିଙ୍କାଟା ଟିକେ ନଗେଇଦଏଁ, ଆଣେ ବା ତୋ ମୁହଁଟା—"

"କାହିଁକି ବା ମୋ ମୁହଁଟା, ଏଡ଼େ ସକାଳୁ ଆଉ ମୁହଁ ପାଇଲୁ ନାହିଁ, ମୋର ମୁହଁକୁ ଲେଭେଇଲୁ ?"

"ହଉ, ହଉ । ଅଭୁତ ଲୋ, ଷିଧା ଦେଖା—" ଟେଙ୍ଗର ବେକକୁ ଭାଙ୍ଗି ଦେଇ ପୁନ ପିଙ୍କା ଲଗେଇଲା ।

ରଙ୍ଗ କହିଲା—"ତୁ ମଣିଷଟାଏ ଏ ପାଗରେ ଏମିତ ଫୁଙ୍କା ବାହାରୁଚୁ ଯେ, ଟୋପାଏ ପିଇକି ବି ଆଇଲୁ ନାହିଁ; ଖାଲି ପିଙ୍କା ଟାଣି ଏ ଥଣ୍ଡା ସହୁଚୁ କି ?"

"ହଉ, ତୁ ତ ପିଇଚୁ, ତତେ କୁଣ୍ଢେଇ ଧଇଲେ ଉଷୁମ ଆସିଯିବ ନାହିଁ କି ?"

"ମତେ, କାହିଁକି ମ--ମଲା, ପୁଆଗରେ ଗଣ୍ଡି ନାହିଁ ନା ଛୁଣ୍ଡିଯାଉଚ ଗାଁଟରଟ ହେଇ—ଇଲୋ, ଦେଖେ ଲୋ—ଇଲୋ ହେଇ, ଦେଖିଲୁ, ଦେଖିଲୁ; ଯେ କାହାକୁ ଚାହିଁଚ—" କଲକାଲିଆ ହୋଇ, ଫାଟି କରି ଉଠି ରଙ୍ଗ ହାତ

ଦେଖାଇଲା ଅବିନାଶବାବୁଙ୍କ କୋଠାକୁ । ଉପର ଝରକା ଖୋଲା ଅଛି, ଅଘୋରବାବୁ ଉହୁଙ୍କି ଅନେଇଛନ୍ତି ।

ରଙ୍ଗ, ପୁନ, ଟଣ୍ଡ ଚମୁଟାଚମୁଟି, ଠେଲାଠେଲି, ହସାହସି ହେଲେ । ଅବକାଶ ପାଇଲେ ସେମିତି ସେମାନେ ହୁଅନ୍ତି ।

ଟଣ୍ଡ କହିଲା—"ତାଙ୍କର ଘରେ ପଶ୍ଚ ଓକେଇଛି ହେଉଥିଲା ?"

"ସେଥିପାଇଁ ଆମୁକୁ ଅନେଇଁଛ ନା କଣ ମ ? ଗ୍ଲେର ଧଶବ ବୋଲି ?" ରଙ୍ଗ କହୁଥାଏ—"ଡାକଲେ ଶୁଭନ୍ତା କ ! ହୋ ବାବୁ ଆଜ୍ଞା, ଦେଖିଲ, ଆମ ଲୁଗାପଟା ଜୁଉରୁଡ଼ୁ; ଲୁଗା ଖଣ୍ଡେ ଦିଅନ୍ତ ନାହିଁ !"

"ହୋଇ ହୋଇ," ଟଣ୍ଡ ଝଡେଇ ହେଲା । "ଲୁଗା ଖଣ୍ଡେ ଦେବ । ତତେ ନ ଦେବ ଆଉ କାହାକୁ ଦେବ ଲେ, ମୋ ରଙ୍ଗଣି ଗେହ୍ଲା ! ରୁ ତ କାହିଁ କୋଟିକରୁ ଗୋଟିଏ ।" ରଙ୍ଗ କହିଲା—"ହଇ-ଓ ବାବୁ, ଏଡ଼େ ନଦସ୍ତା ତମେ ! କେଡ଼େ ସୁନ୍ଦର ବସିଚ, ମିଟିମିଟିକା ଅନେଇଚ, ଫେଣେ ଚନ୍ଦ ବୁଲୋଉଚ ଆମ ବାସ ଉଠେଇବାକୁ ? ଶୁଗୁଚଟି, ହାତ୍ ତମ—"

ଟଣ୍ଡ କହିଲା—"ସେମିତି କାଇଁକ ହଉଚୁ, କଏ ଶୁଣ୍ଡଚ ? ଏଣେ ଅନା ବା ରଙ୍ଗ !"

"କାଇଁକ ବା ?"

"ପୁନ କଣ ହଉଚ, ଟିକଏ ଦେଖ୍ ।"

ଏକା ଧ୍ୟାନରେ ପୁନ ସେହିଆଡ଼କୁ ଅନେଇଥାଏ, ପଦେ କଥା ବି ନାହିଁ । ପୁନକୁ ଝାଙ୍କି ଦେଇ, ହଲେଇ ଦେଇ ରଙ୍ଗ କହିଲା—"ବେଲେ ରେ, ପକା ସିଆଣିଆଟା—"

"କଣ !"

"କଣ ? ସାଙ୍ଗରେ ଆଇଥିଲୁ, ଆମୁକୁ ଛାଡ଼ିଦେଇ ରୁ ଯାଇ ସେଠି ଉଠିଲୁଣି !" ଆଶ୍ଚର୍ଯ୍ୟ ହୋଇ ପୁନ କହିଲା—"କୋଉଠି ?"

"ରୁ କଣ ଏଠି ଅଛୁ ? ଖାଲି ପିଣ୍ଡଟା ନା, ରୁ ପଶ୍ଚ ଗୋଟାସୁଦ୍ଧା ଯାଇ କୋଠା ଉପରେ ।"

ପୁନ କହିଲା—"ସତେରେ, ମୁଁ ଯାଉଛୁ ।"

ସମସ୍ତେ ଚାହାଁ ହୋଇ ଅନେଇଲେ ତା ମୁହଁକୁ । ପୁଣି କହିଲା—"ନାଇଁ ମ, ଦେଖୁନୁ ପାଗ, ଆଜି ବୋଉ କାମୁକୁ ଆସିବ କି ନାହିଁ ଜଣା ନାହିଁ, ବେମାଣିଆ ଧୁଅ । କାମଟା ସାରିଦେଇ ଗଲେ ଯାଏ ।"

ରଙ୍ଗ କହିଲା—"ଠକକା ଠକହେଁ ଏକା ସାଥିରେ ଗଲେ, ଦୁଂଅଟି ଦୁଂଅଟି ଛୁଞ୍ଚିଯିବ । ଚାଲ୍, ଆମେ ବି ଯାଉଛୁ—"

ପୁଣି ଅପେକ୍ଷା କଲା ନାହିଁ, ତରତର ହୋଇ ଚାଲିଗଲା । ପଛଆଡ଼ୁ ଟାପରା ମାରି ରଙ୍ଗ କହିଲା—"ଯା ଲୋ, ଯା ଲୋ, କେହି କୁଆଡ଼େ ନାଇଁ, ସକାଳ ପେ, ସଞ୍ଜ ସେ—"

ଅସରାଏ ମେଘ ଆସିଲା । ପଡ଼ଶାଘର ଓଳତଳେ ଠିଆ ହୋଇ ରଙ୍ଗ କହିଲା—"ଶୁଣିମୁ ଟକି, କଥାଟିଏ କହିବ ?"

"କି କଥା ?"

"ଶୁଣ୍—କଥାଟିଏ କହୁଁ କଥାଟିଏ କହୁଁ

କସ୍ କଥା—ବେଙ୍ଗୁଲି କଥା

କସ୍ ବେଙ୍ଗୁଲି—କାଠ ବେଙ୍ଗୁଲି

କସ୍ କାଠ—ତେଲଙ୍ଗି ମାଠ

କସ୍ ତେଲଙ୍ଗି—ଆଖୁ ପେଲଙ୍ଗି—"

"ହଁ, ତୋ ମୁଣ୍ଡ ଗଣ୍ଡି, ତୋ କଥା ତୁ ଶୁଣ୍—"

"ଆଲୋ, ବୁଝିପାରିଲୁ ନୋଉଁ କି ଲୋ ଟୁଣ୍ଡି ! ମୋ କଥାଟି ସରିଗଲା, ଫୁଲଗଛଟି ମରିଗଲା—"

"ମରୁ—"

"ନାଇଁ ନାଇଁ, ଶୁଣ୍ ଶୁଣ୍,

ସୁଖରେ ଘର ଦୁଆର କଲେ,

ଖାଇଲେ ପିଇଲେ, କବାଟ କିଳିଦେଲେ,

ମୁଁ ଗଲିଖିଣି ପାଟି ଫିଟେଇଲେ ନାହିଁ ।

ଶୁଣିଲୁ ତ, କାହିଁକି ଆଉ ଯିବା ?"

□ □

## ବନ୍ଧ୍ୟାକ୍ଷଣ

ଅସହ୍ୟ ଅସହ୍ୟ ଲଦହୋଇ ପବନ ଆସୁଛି । ଘାଉଁ ଘାଉଁ ରଡ଼ୁଛି । କବାଟ ଖୋଲ, କବାଟ ଖୋଲ । ଅଭିଭୂତ ହେଲା ପରି ଟାଣିହୋଇ ଆସି ବାର କବାଟ ପାଖେ ପୁଣି ଠିଆହେଲି, କବାଟରେ ପିଟିଲି । ଆଗରୁ କଥା ଥିଲା ପରି କବାଟ ଫିଟିଗଲା, କବାଟ ବନ୍ଦ ହେଲା । ଏକୁଟିଆ ଅଘୋରବାବୁ ଠିଆ ହୋଇଛନ୍ତି । କେମିତି ଅନେଇଛନ୍ତି । ଶୂନ୍‌ଶାନ୍ ଅଗଣା । ବାହାର ଖଞ୍ଜାର ଗୃରପାଖେ କବାଟ ପଡ଼ୁଛି ।

ଜୀବନ ଭିତରେ ଗୋଟାଏ ଉଦୁମୁଦା ଅନ୍ଧାର ମୁହୂର୍ତ୍ତ । ଥଳ ନାହିଁ, କୂଳ ନାହିଁ; ଈଶ୍ୱର ନାହିଁ, ଜୀବନ ନାହିଁ ।

ସ୍ୱପ୍ନରେ ଡଆର ମରମଭାବରେ ଜଡ଼୍ ବୁଡ଼୍ ମାସ୍ଥାଲେଙ୍କର ଗୁଇ ଦୁଇଟା । ପାଖକୁ ପାଖ ଓଟାର ହୋଇ ଆସୁଛି, ଓଟାର ହୋଇ ଆସୁଛି । ଦୁଇଟା ଗୁଇ ଏକାଠି ହୋଇଗଲା । କଳା ନର୍ଦ୍ଦମା ଭଳି କଳା ଅନୁଭୂତିରେ ହଜିଗଲି ପୁଣି ।

ମୁହୂର୍ତ୍ତ ବଳି ଯେନଲ । ତାହାର ଜମିତ୍ୱ ହେଲା ପରି ମଣିଷର ସ୍ଥୂଳ ଦେହ ହେଲା କେବଳ ଉପାଦାନ ।

ସେହି ଇନ୍ଧନ, ତାହାର ନାଁ ପୁଣି ମଧର ।

ମନର ପ୍ରତିକ୍ରିୟା ଫେରି ଆସୁଛି ପୁଣି । ସ୍ମୃତି ଝଲସୁଛି । ଝର ଝର ବରଷା ପଡ଼ୁଛି, ଅନ୍ଧାର ଢାଙ୍କିଛି । ଟାଣି ଓଟାରି ହସି ପୁଣି ଆରକ ମୁହଁକୁ ଅନେଇଲି । ଏ କଣ ଆନନ୍ଦ ! ଏ କଣ ଦୁଃଖ !

ଜାଠ ରହିବା ଘର । ତଳେ ଅଳଥା କୁଢ଼ କୁଢ଼ । ଆପଣା ଦେହରେ କେତେ ପାଇଖାନାର ଛିଟା ।

ନା, ଦୁନିଆ ପାଗଳ ହୋଇଛି । ଗନ୍ଧ, ବାସ୍ନା ସବୁ ବୁଡ଼ିଛି । ଚେତନା ନାହିଁ । ପୁଣି ମୁହଁ ମାଡ଼ିଦେଲି, ଆଖି ବୁଜିଦେଲି ।

ବାହାରେ ଟୋକେଇଟା ଉଲୁଛି । ଘୋଡ଼ା ହୋଇଥିବା ସାରୁପତ୍ର ଉପରେ ପାଣି ପଡ଼ୁଛି ଟପର ଟପର ।

ଘଡ଼ିଏ ଗଲା । କପସ୍ତ ଆଲୁଅ ଫିଟି ଆସିଲଣି । ଅଘୋରବାବୁ ଙ୍ଗ୍‌ ଙ୍ଗ୍‌ ହେଲେଣି । ପୁନ ପଦାକୁ ବାହାର ଆସିଲାବେଳକୁ ସେ ଆଉ ନାହାନ୍ତି । କବାଟ ଆଉଜାଇ, ମେହେନ୍ତାଣୀର ସହଜ ଗଢରେ ଖୋଜ ମେଲଦେଲା । ବର୍ଷାରେ ଛନ୍ଦୁରୁଡ଼ି ଗ୍ଲୁଛି ମେହେନ୍ତାଣୀ, ପିଠିଆଡ଼େ ଟେକେଇ । ଗୋଟାଏ ଶ୍ରେଣୀର ମୁଖା ପିନ୍ଧି ଗ୍ଲୁଛି, ଶହେ ଜଣରୁ ଜଣେ । ବଡ଼ ଘରର ଉଞ୍ଚ ମହୁଡ଼ି କେତେ କୋଠାର ଆଢୁଆଳରେ ଲୁଚିଗଲଣି । ଘସରା ଜୀବନରେ ଆଜର ଢନ ଆଣିଦେଲା ଏଥକ । ତୃପ୍ତି ନାହିଁ, ଅତୃପ୍ତି ନାହିଁ । ଅଭ୍ୟାସ ପର ବନ୍ଧା ଗତିର ମଡ଼ାବାଟ ।

"କଲେ, କଲେ ପୁନ--" ଟଙ୍କା ଆସିଛୁ, ଅଣ୍ଡା କରୁଛୁ । ରଙ୍ଗ କହୁଚ— "ହୁଁ—ହୁଁ— ।" ପିଙ୍କା ନଇଯାଇଚ । "ଦେଲୁ ରଙ୍ଗ, ଦେଖେଇଲୁ ତୋ ପିଙ୍କାଟା, ଲଗେଇ ନଏଁ ।" ପିଙ୍କା ଟାଣି ଟାଣି ଗନ୍ଧ ଯାଉ ନାହିଁ । ଘାର୍ଘଶ୍ୱାସ ପକେଇ ପଛ ବୁଲପଡ଼ି ସେହୁଆଡ଼େ ଗ୍ଲହିଲା । ଓଦା ପଚ୍‌ ପଚ୍‌ ଜର୍ଜନ ଗ୍ରସ୍ତା । ନଏଜ୍ଞୋଣରେ ଘୁଅ ପଡ଼ୁଛି । ଟିପି ଟିପି ବରଷା ।

ଶାନ୍ତ ପାଉନ ନାହିଁ । କୁଡ଼ିଆ କୋଠାର ନୁହେଁ, କୋଠା କୁଡ଼ିଆର ନୁହେଁ । ଅସମଞ୍ଜସ ଲର୍ଦ୍ଦି ନ ପାଣ, କଳ୍ପନା ଗଢ଼ି ନ ପାର, ପୁନ ଗ୍ଭବଲା ସେ ପଥରା ହୋଇଛି । କାନ୍ଦ ହେଲା ନାହିଁ ।

ଗ୍ଭବଲା, ଗ୍ଭବଲା, ଜାଥ-ଅଜାଥ, ଛୁଆଁ-ଅଛୁଆଁ, ଗନ୍ଧ-ବାସ୍ନା । କୁଟିଳ ଗ୍ରହାଣୀରେ ବଜୁଳି ଖେଳେଇ ଦେଇ, ମନକୁ ମନ ହସି ହସି ଫାଟି ପଡ଼ିଲା ।

"କ ଲେ, କଣ ହେଲା ? କାହିଁକ ଏତେ ହସ ବା ? କଣ, କଛି ଧନ ଦରବ ପାଇଲୁ କ ଲେ ?"

ହସିଦେଇ ପୁନ ମନର ମଳ ଝଡ଼େଇ ପକେଇଲା । ଏହା ପରେ ସେ ଗାଧୋଇବ, ପବନ୍ନ ହେବ । ତାର ଅଭ୍ୟାସ ହୋଇଯାଇଛି ।

କନ୍ତୁ ବାରମ୍ବାର ମନେ ପଡ଼ୁଥାଏ ତାହାର କଥା । କେବଳ ଗାଧୋଇ ପଡ଼ିଲେ ସେ ପବନ୍ନ ହୋଇପାରବ ନାହିଁ ।

"ହସୁଥିବୁ ଏମିତ ? ହେ ପୁନ, ହେ ଦେଖ୍‌ ତୋ ପିଙ୍କା ପଡ଼ିଗଲା ।"

"ପଡ଼ୁ, ଗ୍ଲ୍‌ ଯିବା ।"

୮ □

# ଦେଖ୍ୟାଳଣ

କଳା ମେଘ ଫାଟିଯାଉଛି । ପରସ୍ତ ପରସ୍ତ ହୋଇ ଧଳା ମେଘ ଉଡ଼ି ଆସି, ଝଡ଼ିପଡ଼ୁଛି ହାଲୁକା ବରଷା । କାଠ ଗୁଣ୍ଡି ଗୁଣ୍ଡି କଳା ମେଘ ସନ୍ଧରେ ସାପୁଆ ଆକାଶ ଦଶୁଛି ସୁନ୍ଦର, ନିର୍ମଳ, ଚକ୍‌କଣ । ଉତ୍‌ଦଳସ୍ତରେ ଅନନ୍ତର ସହସ୍ରେ ଫଣା ।

ଅସମାପିକାର ଛନ୍ଦ ବାଜୁଛି । ହାଟରେ କଳରବ, ବାଟରେ ଗୋଳମାଳ, ମଇଳାବୁହା ଗାଡ଼ିର କେଁ-କଟର । ବରଷାରେ ଟାଙ୍କି ହୋଇ ରହିଥିଲ, ଟାଙ୍କିଣି ଉଠାହୋଇଛି ।

ସାମ୍ନାରେ ଗ୍ଲ' ପାତ୍ରରୁ ବାମ୍ଫ ଉଠୁଛି । ହତଶ୍ରୀକ ପରି ବିମର୍ଷ ହୋଇ ବସି ରହିଛନ୍ତି ଅଘୋରବାବୁ । ପାଖ ଘରୁ ମାନମୟୀର ସଙ୍ଗୀତ-ଚର୍ଚ୍ଚା ବିରକ୍ତ ଲଗୁଛି ।

କିନ୍ତୁ ମାନମୟୀକୁ ବି ଟିପ୍‌ପଣୀ ପଦେ ହାଣିବାକୁ ମନରେ ଆଉ ସାହସ ନାହିଁ । ପାଣି ସର ସର କାଦୁଅ ମେଞ୍ଚା ପରି ଦେହ ଆଉ ମନ । ସେ ଯୁକ୍ତ ମୂଲ୍ୟ ନାହିଁ ।

"ତମ ଗ୍ଲ' ଶୀତଳ ହୋଇଗଲଣି ବାବୁ—"

ଏଁ—" କୋରଡ଼ା ମାଡ଼ ଖାଇଲା ପରି ଗୃହଗୃଣୀର ଏ ଆଶ୍ଚର୍ଯ୍ୟ ସହାନୁଭୂତିରେ ଚମକ ପଡ଼ି ଅଘୋର ବୁଲିପଡ଼ିଲ । ଦୁଆରମୁହଁରେ ଯଶୋଦା ଠିଆ ହୋଇଛି । ଅନ୍ୟ ଦିନ ହୋଇଥିଲେ ଅବା ସେ କହିଥାନ୍ତେ, ହେ ଅପରିଚ୍ଛନ୍ନମୁହାଁ, ତତେ କିଏ ଡାକିଲା ? ଯା, ଚେଣେ ବାସନ ମାଜିବୁ । ଆଜି ନାହିଁ । ଚେପା କାଦୁଅ ପରି ଚୌକିରେ ଲଗି ରହି ଖାଲି ସେ ଗୃହିଁଛନ୍ତି । ଦେଖୁଛନ୍ତି ଯଶୋଦାର ମୁହଁ, ଖାଲି ଭାବୁଛନ୍ତି । ଏଇ ବିଚିତ୍ର ଗୃହାଣୀ ଯଶୋଦାର, ତାର କଣ ଅର୍ଥ ନାହିଁ ? ଓଠ କୁଞ୍ଚେଇ ନିହାଇଯାଉଛି । ଯଶୋଦା କଣ ହସୁଛି ? ଉତ୍ତରକୁ ଯଶୋଦା ମ ଡ଼ିପଡ଼ୁଛି, ତାର ଆସନ ଉଠିଯାଉଛି କେତେ ଉଚ୍ଚକୁ । ଏହି ବେଳରେ ସେ ଗୃହଗୃଣୀ ନୁହେଁ ।

ଓଃ—ଓଃ—ଓଃ—ତଣ୍ଟିରେ ଛେପ ଶୁଖିଯାଉଛି । ମନ ହେଉଛି ସବୁ ସେ ଗୋଳ ବାଟି ପିଇବାକୁ ରାଜି ଅଛନ୍ତି; ପିତା, କଷା, ଲୁଣିଆ । ଖାଲି ଦରକାର

ଉତ୍ତାଡ଼ରେ ଆଖିବୁଜ ଆଉକ ପଡ଼ିବାକୁ ଅନୁମତ । ମନ ଭିତରେ ଏକତାସ୍ୱରେ ଘୋରତେଇ ହୋଇ ଭୟଙ୍କର ଆଳାପ—ଯଶୋଦା ଜାଣେ କଣ ? କାହିଁକ ତାର ଖୁରଧାର ଆଖି, ଜାଣିଲା ପର ମୁହଁ ?

ଯଶୋଦା ଯତରେ ହସିଲା । ଭିଡ଼ମୋଡ଼ି ହୋଇ କହିଲା—"କଣ ଦେଖୁଚ ମ ବାବୁ ! ଆଉ ଜଣକ କଥା ମନେପଡ଼ୁଚ—"

ଗ୍ରୀତ ଗୃହିଁ କଲା । "କଣ୍, କଣ୍ ?"

ଯଶୋଦା ହାଇ ମାରିଲା । ତାହା ବ ନଯା କର ଦେଖିବାକୁ ପଡ଼ିଲା କାଳେ ଆଉ କଣ କହିବ ବୋଲି । ଯଶୋଦା କହିଲା—"ଖର ଜାଡ଼ କରୁଚ । ଜାଡ଼ କଲେ କୁଁକର-କାଁକର—"

"ବନ୍—" ଭଣ୍ଡରୁ ଉଠି ବାକ ଦୁଇଟା ପଦ ସେହି ଭଣ୍ଡରେ ହିଁ ମିଳେଇଗଲା । ଶୁଖିଲା ଓଠ ଉପରେ ଜଭ ବୁଲେଇ ଦେଇ ଖୁବ୍ ଅଣ୍ଡା ହୋଇ ଅଘୋରବାବୁ କହିଲେ—"ଶୀତ କରୁଚ ? ଘୋଡ଼ହେଲା ଦରକାର ? କଣ ନବୁ କହୁନୁ—"

କ୍ଷଣକେ ଯଶୋଦା ବଦଳିଗଲା । ଫଁ ଫଁ ହୋଇ କହିଲା—"ସେମିତ କଣ ହଉଚ ? ଏଁ—ଖର ପିଆଣିଆଁ ପଡ଼ିଚନ୍ତ ଆ ! ଗରବ ମାଇପ ସବୁର ଶାଳୀ; ଏଣେ ବାପାଙ୍କର ବ ଶାଳୀ, ତେଣେ ପୁଅଙ୍କର ବ ଶାଳୀ ! ସେକ୍‌ଚଲିଆ କଥା-ଗୁଡ଼ାକ କହି ଯାଉଚନ, ମୁହଁରେ ବାଇଶ ରହୁ ନାହିଁ ! ଦେଖରେ—!" ପାଟି କର କର ଯଶୋଦା ଗୁଲିଗଲା କଣ୍ଠା ଘୁଟରେ ପିଟିପିଟିକା । କେବେ ନ ଶୁଣିବା କଥା । ଭୁଚ୍ଛାଟାକୁ ଫୁଲ୍‌ଟି ପର ନାଚନାଚକା ଗଲା ଗୁକରାଣୀଟା; ତଥାପି କହୁ କହିହୋଇ ପାରିଲା ନାହିଁ, ପଦେ ବ ପ୍ରତିବାଦ । ଅଘୋରବାବୁ ଭୂନ ହୋଇ ବସି ରହିଲେ ।

ମାନମୟୀ ଗୀତ ବନ୍ଦ କର ଧାଇଁ ଆସି ଗର୍ଜିଲା—"ଯଶୋଦା ! କାହିଁକ ସକାଳୁ ଏମିତ ରଡ଼ିମରୁଚ ସେଇଟା ?"

"ଆଉ, ମାନ; ଆଉ କହୁ କହ ନା । ତାର କଣ ମୁଣ୍ଡ ବଗିଡ଼ିଚ । ବରଷା ପାଗରେ ସେମିତ ହୁଏ । ଯା, ସେଇ ଗୀତଟି ଗା; କେଡ଼େ ସୁନ୍ଦର ଶୁଭୁଥିଲା ।"

ଆଜ ସନ୍ଧ । ସ୍ୱରରେ ଅସ୍ୱାଭାବକ କଅଁଳପଣ । ହସି ହସି ମାନମୟୀ ଗୁଲିଆସିଲା । କହିଲା—"ଆଜ କେମିତ ତମକୁ ମୋ ଗୀତ ଭଲ ଲାଗୁଚ ଶୁଣେ ! ବରଷା ପାଗ ବୋଲି ବୋଧେ, ନୁହେଁ ? ବାଃ, ତମେ ମଜା କର ବସିରହି ଗୁ ଖାଇବ, ମୁଁ ବେଠିଆ ହେଇଚ ଗୀତ ଗାଉଥିବ !"

ଅଘୋରବାବୁ ଶୁଖିଲା ହସଟିଏ ହସିଦେଲେ । ଝିଅର ଢଙ୍ଗ ଦେଖି ମାନମୟୀ ଆଶ୍ଚର୍ଯ୍ୟ ହୋଇ ପଚାରିଲା—"ସେମିତ କାହିଁ ବସିଚ ଝିଅ, ଦେହ କଣ ଭଲ ନାହିଁ ? ଯାଏଁ, ବୋଉକୁ ଡାକିଆଣେ—"

"ଶୁଣ୍, ଶୁଣ୍; କୁଆଡ଼େ ଯିବୁ ? ମିଛରେ ଦେହ ଭଲ ନାହିଁ କହିଲେ, ବାପା ଶୁଣିଲେ କହିବେ, ଏ ଓଳି କରୁଛୁ ଖା ନା । ମୁସ୍କିଲ୍ କରିବୁ—!"

"ତମେ ବଡ଼ ପେଟୁ—"

"ଠିକ୍ କହିଚୁ ।"

"ତା ହେଲେ ଏମିତ କାହିଁକ ବସିଚ ? କାହିଁକ ଶୁଖିଲା ଦିଶୁଚ ?"

"ବରଷା ପାଗରେ ସେମିତ ସଣ୍ଠସଣିଆ ଦିଶନ୍ତି ସମସ୍ତେ । ଆର୍ସିରେ ନିଜ ମୁହଁଟି ଦେଖିଲୁ !"

"ମୁଁ !" ମାନମୟୀ ବଡ଼ ବ୍ୟସ୍ତ ହୋଇପଡ଼ିଲା । ତରତର ହୋଇ ଚାଲି-ଗଲା ପ୍ରସାଧନ ସଜାଇବାକୁ । ଅନ୍ତତଃ ଘଣ୍ଟାକ ପାଇଁ ନିସ୍ତପଦ—ଅଘୋରବାବୁ ଭାବିଲେ । ଅଣ୍ଡା ଗୁ ପାଣି ପରି ପିଇଦେଇ ସିଗାରେଟ୍ ଲଗାଇଲେ । ଆପଣାକୁ ଗୋଟେଇ ପୋଟେଇ ଠିଆ କରେଇ ପଦାକୁ ଆସିଲେ ।

ହେଇ, ମେହେନ୍ତର ସାହି ।

ଆଙ୍ଗୁଠିରେ ସିଗାରେଟ୍‌ଟା ଥରୁଛି ।

ବେଙ୍ଗଫୁଲ ପରି କଲବଲ ହୋଇ ଅସନା ସାହିଟାଏ, ବରଷାରେ ଫଉଲଛି । ଜକାଜକ ହେଲା ପରି ସାନକୁଡ଼ିଆ । କେଉଁ ଗୋଟାକ କେଉଁ ଆଡ଼କୁ । ଠିଆ ବସା ଚଳାଚଳ ଅବସ୍ଥା । ଖଣ୍ଡିଆ, ଯାଦୁଗ୍ର, ତାଳପକା ବସ୍ତା ଓହଳା ତାଟିବନ୍ଧା ରୂପ । ମଝିରେ ମଝିରେ ଭଙ୍ଗା ଡହର ଦାରୁ ଠେଙ୍ଗ । ସେଠି ଭୁଇଁଗୁକୁଣ୍ଡାର ଥୁଣ୍ଟା ବରଷାରେ ଗଜୁରି ଉଠୁଛି । ତାହାରି ମଝିରେ ଠାଏ—ସେ ସାହିର ଟୁବ ଗାଡ଼ିଆ । ତେଲିଆ ପାଣି, ସିଙ୍ଘାଣୀ ଭୁଟୁଭୁଟୁ । ଆତ୍ମପ୍ରସାଦରେ ଗୋଲଝୋଲ ଦୋହରି ଚବୁକ ଲଗା ବଡ଼ ସହରର ଚକ୍‌କଣ ଗାଲ ଉପରେ ପୂଜଟମୂକା ବିଷବ୍ରଣ ମେଞ୍ଚ ଏ, ତାର ଖାନ୍ଦାନ ଚରିତ୍ରର ବିଜ୍ଞାପନ ପରି; କିନ୍ତୁ ଏହି ଅଶ୍ଳୀଳ ଦରିଦ୍ରତାକୁ ଗୁହିଁ ରହିଥିବା ବେଳେ ଅଘୋରବାବୁଙ୍କ ଆଖି ଭୁଲୁଲ ଉଠୁଥିଲା । ଦେହରେ, ମନରେ ଅସନା ପ୍ରତି ସମଗ୍ର ଭାବ । ନିଭୃତରେ ଗୁହିଁ ରହିବାକୁ ଉତ୍କଟ ଆଗ୍ରହ । ମନେ ମନେ ସେ ଓହ୍ଲେଇ ପଡ଼ୁଥିଲେ । ତେଣିକ ସେ କାଦୁଅର ମଣିଷ । ଯେପରି କ ସେହି ପଙ୍କର ଗନ୍ଧ ତାର ଦେହ ଭିତରେ, ସେ ଭାଇପଣ ଖୋଜୁଛି ।

ଧୀରେ ଧୀରେ ଦୁର୍ବଳଭା କଟି ଯାଉଥିଲା । ନୂଆ ପରସ୍ଥିତିରେ ସହଜ ହୋଇ, ଟାଣ ହୋଇ ସେ ଠିଆ ହୋଇ ରହୁଥିଲେ ପୁରୁଣା ଦଳର ଦର୍ଶକ ପକ୍ଷ ।

"ବୋଉ ଡାକୁଛୁ—" ମାନମୟୀ କହିଗଲା ।

ଅଘୋରବାବୁ ଗଲେ । ବସ୍ମିତ ହୋଇ ପଚାରିଲେ, "ଡାକୁଥିଲୁ ବୋଉ !"

"ଆଜ୍ଞା କେତେ କାମ ରେ, ବାପା ତ କେଉଁଣେ ବ୍ୟସ୍ତ; କରିବ କିଏ ?"

"ଏମିତି କଣ କାମ, ମୁଁ ପାରିବି ନାହିଁ ?"

"ବୋଉ ମ !" ମାନମୟୀ କହିଲା, ଆଜ ଭାଇ ସବୁ ପାରିବେ । ଆଜ କେମିତି ସେ ସହିବାର ଅବତାର, ପଗ୍ରୁଚୁ—"

ଅଘୋରବାବୁଙ୍କ ମୁହଁ କଳା ପଡ଼ିଗଲା । ଶାନ୍ତ ହୋଇ କହିଲେ— "ସକାଳଠାରୁ କାହିଁକି ଖୁଣ୍ଟ ଲଗୋଉଚୁ ?"

"ଦେଖୁଚୁ ବୋଉ !" ମାନମୟୀ ଦୁଆ ଦେଲା । "ଚଢ଼େଇଲେ ବି ଚଢ଼ିବେ ନାହିଁ । ଭାଇ ଭଲ ।"

"ବୋଉ, କାହିଁକି ଡାକୁଥିଲୁ ?"

"ଆରେ ବାବୁ, ମାନସିକ ଥିଲା, ହାଡ଼ସାହି କଣା ହେଲେ ଠାକୁରଙ୍କ ପାଖେ ପାଣିନ.ଗ ହବ—" ମାନମୟୀ ଲୁଦା ମାରିଲା, ହସି ହସି ପାଟି କଲା— "ଏଁ ! ଆଜ ? ଆଜ ?"

"ରହ ବା, ତୁ କଥା କୁହାଇ ଦଉନୋଉଁ । ହଁ, ବାପା ଯିବେ କେଉଁଣେ, କାମ କରି ଆସୁ ଆସୁ ଡେରି ହେବ । ତୁ ଯା ଅଘୋର, ମନ୍ଦିରରେ ଭୋଗ କରେଇ ଆଣିବୁ । ଠାକୁରଙ୍କୁ ଭକ୍ତ କଲେ ଉପକାର ହେବ ବାବୁ, ତାଙ୍କର ବିପ୍ଲବନାଶନ ବାନା—"

"ବିପ୍ଲବନାଶନ ବାନା କଣ ବୋଉ ?" ମାନମୟୀ କହିଲା—"କୋଉ ପୁରାଣରେ ପଢ଼ିଥିଲୁ ? ପତିତପାବନ ବାନା ସିନା—"

"ଆଃ—ରହ ଲୋ ଚରଳି, ଯୋଉ ବାନା ହଉ, ସବୁ ତ ଠାକୁର । ମାଟି ଗିଲାସରେ ପିଇଲେ ଯୋଉ ପାଣି, କାଚ ଗିଲାସରେ ପିଇଲେ ସେଇ ପାଣି ।"

ମାନମୟୀ ହସ ଚୋକ କହିଲା—"ଠିକ୍ କଥା ।"

ଅଘୋରବାବୁ କପାଳରୁ କେଉଁ କେଉଁ ଝାଳ ପୋଛି ପକେଇ କହିଲେ—"ସକାଳୁ ଧର୍ମଚର୍ଚ୍ଚା ହେଉଥିବ ନା ଆଉ କିଛି କାମ ଅଛି ?"

"ସେମିତି ଗୁରୁଗୁରିଆ ହଉଚୁ କାହିଁକି, କହୁଚି ଶୁଣ୍ । ମନ୍ଦିରକୁ ତ ଯିବୁ, ସେଠୁ ଯିବୁ ମଠକୁ । ନିମନ୍ତ୍ରଣ ଦେଇ ଆସିବୁ । ଗୁରୁଦେବଙ୍କୁ ଟିକିଏ ଆସି ସଙ୍କୀର୍ତ୍ତନ କରିଦେଇ ଯିବେ । ଯା' ନା, ଆହୁରି ଅଛି—" ଅଘୋରବାବୁ ଅଟକି-ଗଲେ । ବୋଉ କହିଲେ, "ନିରୁପମାକୁ କନ୍ୟା-ଡାକରା କରିବା କଥା ଥିଲା । ଦିନ ତ ନାହିଁ, ବାପା ଚାଲିଯିବେ । ସେଥିପାଇଁ ଆଜି ସଞ୍ଜବୁଡ଼େ । ଏକେ ଭଲ ଦିନ, ଭଲ ବାର, ଆଜି ସବୁ ହେବ । ଆୟୋଜନ ଭାରି ତମକୁ ଲାଗି ନାହିଁ । ତୁ ଖାଲି ଯିବୁ, ସମସ୍ତଙ୍କି ନିମନ୍ତ୍ରଣ କରିଦେଇ ଆସିବୁ ।"

ମାନମୟୀ ଆନନ୍ଦରେ ଅଧୀର ହେଲା, ତାଲି ମାରି ଡେଇଁଲା । କହିଲା—"ବୋଉ, ବୋଉ—" ଗେଲ କରି କୁଣ୍ଢେଇ ହସି କହିଲା—"ଏମିତିକା ତୁ, ଆଗରୁ କିଛି କହିନୋଉଁ—ହଉ, ହଉ— ଭାଇ ସାଙ୍ଗରେ ମୁଁ ଯିବି ବୋଉ ।"

"ତୁ କୁଆଡ଼େ ଯିବୁ ?"

"ଆରେ ବାଃ, ଭାଇ ଯାଉ ତାଙ୍କ ବନ୍ଧୁମାନଙ୍କୁ ଡାକି ଆଣିବେ । ଭାଇ ଭାରି ହଂସିକା । ମୋ ବନ୍ଧୁମାନଙ୍କୁ କିଏ ଡାକିବ ? ଶ୍ୟାମଳୀ, ଶେଫାଳୀ, ବିଷ୍ଣୁ, ସୂର୍ଯ୍ୟ, ବିନୋଦିନୀ, ଲିଲୁ, ଉମା, ଖେଁଦା ।"

"ଓଃ, ବାହାରିଲା କ୍ୟାଟଲଗ୍ ।" ଅଘୋରବାବୁ କହିଲେ ।

"ଏଁ, ଭାରି ସିଆଣା—"

ବୋଉ ନିଷ୍ପତ୍ତି ଦେଲେ—"ଯାହା ହେବାର, ତା ତାଲିକା ହେଉ ସାରିଛି ମାନୁ । ତୁ ସେମିତି ଲଗା ନା । ଖାଲି ଡାକି ଆଣିଲେ ତ ହବ ନାହିଁ; ବୁଲେଇବା ଦରକାର । ତୋର ସବୁ ବନ୍ଧୁ ଅଛନ୍ତି, ତୁ କାହିଁକି ବେସ୍ତ ହଉଚୁ ? ଯଦି ବା ଜଣେ ଅଧେ ବାଦ୍ ପଡ଼ିଗଲେ, ଏଇ ଥରକେ ତ ସରୁ ନାହିଁ—"

"ଠିକ୍ କଥା । ଏଇ ଥରକରେ ତ ସରୁ ନାହିଁ—" ଦାନ୍ତ ଦେଖାଇ ଅଘୋରବାବୁ କହିଲେ ।

"ଠିକ୍ କଥା । ଭାଇ ବାହାଘର ଆସୁଚି—"

"ଭାକ୍ ।"

"ପାଗଳ, କାହିଁକି ଲାଗ ? ବୋଉ ଆମେ ନାଚ ଦେବୁ । ଗୀତ ତ ହେବ, ଖାଲି ସାମାନ୍ୟ ଟିକିଏ ସାଜସଜା ଦରକାର । ତୁ ଟଙ୍କା ଦେ—'

"କଏ ମନା କରୁଚି ! କଣ ବନ୍ଦୋବସ୍ତ କରିବୁ କରୁନୁ ।"

ପୁଅ, ଝିଅ ଗଲେ । ଅନ୍ଧାର ଧୀରେ ଧୀରେ ମୁହଁକୁ ତଳକୁ ପୋଢ଼, ମାନମୟୀ ଧାଇଁ ଧାଇଁକା, ହଠାତ୍ ସେ ବଡ଼ ବ୍ୟସ୍ତ ହୋଇପଡ଼ିଛି । ବୋଉ ସ୍ଥିର ହୋଇ ଠିଆ ହୋଇ ପିଲମାନଙ୍କୁ ସ୍ନେହରେ ଅନେଇଁ ରହିଲେ । ଆଜିକା ଦିନର ବ୍ୟବସାୟୀ ସାଫଲ୍ୟ ସ୍ମରଣ କରି ଠାକୁରଙ୍କ ପ୍ରତି କୃତଜ୍ଞତା ଆସିଲା । ଦଣ୍ଡବତ ହେଲେ ।

ଆଜିକା ସକାଳ ତାଙ୍କ ପାଇଁ ଆଣିଛି ଭକ୍ତିର ପୁଲକ ।



## ଚଉସଲଣ

ପୁନର କିଛୁ ଘଟି ନାହିଁ ।

କଣ ବା ଘଟିଛି ? ମନକୁ ଦମ୍ଭ ଦେଇ ସରଳ ଅବହେଳାରେ ସବୁ ହସି ଉଡ଼େଇ ଦେଇ ପୁନ ବାଟ ଚାଲେ । ଭାବେ, ଏ ଯେପରି ମସିଆ ଦୁନିଆର ସପନ ଖାଉ, ନଳାରେ କିଲବିଲ ଲଙ୍ଗୁଡ଼ା ପୋକଠୁଁ ଝଳୁକ ଆଲୁଅ ଦାନ୍ତ ନାଉ ବଡ଼ କୋଠାର ବଡ଼ ମଣିଷମାନେ; ଅସଲ କିଛୁ ନୁହେଁ । ଦାର୍ଶନିକ ଚିନ୍ତା ସାନ୍ତ୍ୱନା ଦିଏ, ପୁନ ସବୁ ଶିଖେ । ତାର ନରମ ଚମଡ଼ା ସ୍ପର୍ଶକ୍ଷମ, ଅବସ୍ଥିବ ସବୁ ଯୌବନଧନ କାର୍ଯ୍ୟର ରଙ୍ଗ ଓ ଗୁଣ ଯେନ ତେନ ନର୍ଦ୍ଦମାତଳ ଇଟା ପରି ସ୍ପର୍ଶଶୂନ୍ୟ ଓ ଦୃଢ଼ ହୋଇଯାଏ ।

ଶୁଣି ଶିଖିଥିବା କେଉଁ ଅସଲା ଗୀତର ଧାଡ଼ିଟିଏ ଗୁଣ ଗୁଣୁ ହୋଇ ସେ ଦିନ ସେ ଘରକୁ ଫେରିଆସିଲା । ତାର ଅନୁଶୋଚନାର ଦୁର୍ବଳତା ନାହିଁ, ଆଦର୍ଶବାଦୀ ପ୍ରେମର ସ୍ଥୂଳସମ୍ବଳ ମୋହ ନାହିଁ । ଫମ୍ପା ଟୋକେଇ ପିଠିରେ ପକେଇ ଗଡ଼ ଜଡ଼ଲା ପରି ଗ୍ଲାଡ଼ ଫୁଲ୍ଟକେଇ, ଗୋଡ଼ କଚାଡ଼ି କଚାଡ଼ି ସେ ଘରକୁ ଫେରିଲା । ଜେମା ଦେଖିଲା, ପୁନ ନିଂସ୍ୱ ଅଛି ।

ଦ୍ୱିପ୍ରହରେ ଜେମା ଢୁଲେଇ ପଡ଼ିଥାଏ । ପୁନ ମାଣ୍ଡ ଭିତରକୁ ଗଲା । ନଖ ପଚେଇବ, ହାତ ପଚେଇବ । ହଜିଗ ପଣ ବାଣ୍ଟି ଆଙ୍ଗୁଠିରେ ଲଦି ରଖିବାକୁ ହେବ, ପାଦୁଲିରେ ଟୋପି ଟୋପିକା । ପୁନ ସୁନ୍ଦର ହେବ ।

ଘରୁ ବାହାର ଅଜାଣତରେ ଦୁର୍ଗନ୍ଧ ଘୋଟିଛି । ଆଞ୍ଜୁଡ଼ି ଆଞ୍ଜୁଡ଼ି, ସାଉଁଳି ସାଉଁଳି ମୁଣ୍ଡ ଦାନ୍ଥଛି । ସନିଆ ଦେଇଥିବା ଛିଟ ଶାଢ଼ୀ ପିନ୍ଧି, ବେଶ ହୋଇ ପଦାକୁ ଆସି, ଘୁରେଇ ବୁଲେଇ ହେଉଛି ଭଙ୍ଗା ଝିଅ କାନ୍ଧ କାନ୍ଧ, ବଡ଼ କୋଠା ଆଖ ପାଖ । ଅବିନାଶବାବୁଙ୍କ କୋଠା ଆଡ଼କୁ ବାରମ୍ବାର ଚାହିଁ ଦେଉଛି । ଛାତ ଉପରେ କେହି ନାହିଁ ।

ବେଳ ଗଲା, ପୁନ ବେଙ୍ଗଳା ପଢ଼ୁଛି । ଏଇ ଭଙ୍ଗା ଝିଅ ଖଣ୍ଡି ତାର ଦୁର୍ଗ । ଭଙ୍ଗା କାନ୍ଥ ଜେମାର ଦୃଷ୍ଟିକୁ ପିଠି ଆଡ଼େଇ ରଖେ । ମୁହଁପଟ ଖୋଲା । ପୁନ ଦୃଶ୍ୟ ଦେଖେ ଆଉ ଭାବେ । ଆଜି ସକାଳର ଖିଅ ଲମ୍ବେଇ ଦେଉଛି କୋଠା ଉପରକୁ । ଧରିବାକୁ କେହି ନାହାନ୍ତି ।

ଉପରଓଳି ବରଷା ଛାଡ଼ିଛି । ହଠାତ୍ ସଡ଼କ ଉପରେ ବଢ଼ି ମାଡ଼ିଗଲା ପରି ବହୁତ ଲୋକ ସ୍କୁଲବନ୍ତ ମେଘର ସନ୍ଧବେଳାରେ । କାଚଝମ୍ପାଣି ପରି ଆକାଶ । ତଳ ଉପର ଓଲଟିଛି । କେଉଁ ମଲାହକଳ ଲୋକର ଭଙ୍ଗା ଡିହ ଉପରେ ଠିଆ ହୋଇ ରକ୍ତନାଲ୍ ଛିଟ ଶାଢ଼ୀ ପିନ୍ଧ, ଔତ୍ସୁକ୍ୟ ଝଲଝଲ ମୁହଁ କରି ପୁନି ମୁହଁ ଟେକୁଛି । ଆପଣା ମନର ଅରୁଣିମାରେ ସେ ଆପଣା ପାଇଁ ସକାଳ କରୁଛି ମେଘୁଆ ଆକାଶ ତଳେ । ହେଉ ପଛେ କୋଠାଘର ଫାଙ୍କା ।

ବଡ଼ କୋଠାର ଝରକାରୁ ମାନମୟୀର ମୁହଁ ଦିଶିଲା ।

କାହାର ଦୃଷ୍ଟି କାହାଠି ବନ୍ଧା ନାହିଁ, ଦୁହେଁ ଚାହିଁଛନ୍ତି ।

କିଏ ଜଣେ ସାଇକେଲ୍ ଚଢ଼ି ଗଲେ । ଚଷ୍ମା ଛବିଟିଏ, ବାରମ୍ବାର ଏହି ବାଟେ ଯାଏ । ହଠାତ୍ କାହିଁକି ସାଇକେଲ ଅଟକିଲା । ମାନମୟୀ ଦୃଷ୍ଟି ନୁଆଇଁଦେଲା । ତଳେ ରୁମାଲ ହଲୁଛି, ଉପରେ ଶାଢ଼ୀ । କିମ୍ବା ପ୍ରତିକିମ୍ବାକୁ ସ୍ୱୀକାର କଲା । ଅଟକି ରହି ସାଇକେଲ ପୁଣି ଗଡ଼ିଗଲା ସହରର ଉଦ୍ଦେଶ୍ୟମୟ ବାଟରେ ।

ହିଂସାରେ ପୁନି ଜଳି ମରୁଥିଲା । କୋଠା ଆଡ଼କୁ ଚାହିଁ ରହିଥିଲା ଭିନ୍ନ ଦୃଷ୍ଟିରେ । ମାନମୟୀର ପୁଛିସାଉଁଳା ଗୋଲ ମୁହଁ, ତାର ଅଖିଲା ହସ । ସେଠି ଅଭାବ ନାହିଁ, ଦୁର୍ଦ୍ଦଶା ନାହିଁ ପରା ! ପ୍ରତିଦାନ ଅମୂଲ କରେ ସେ ପାଉଣା ପରି ।

ଆଉ ସେ ନିଜେ – ପୁନି ?

ତାର ଅସ୍ତିତ୍ୱକୁ ମାଡ଼ି ଦେଇ, ବୁଡ଼େଇ ଦେଇ କୋଠା ଉପରୁ ଶୁଭିଲା ଯନ୍ତ୍ରସଙ୍ଗୀତ ସହିତ ମାନମୟୀ କଣ୍ଠରେ ଛଳଛଳ ଗୀତ-ଲହରୀ । ବଡ଼ ସହରର ଦାମୀ ଚଢ଼େଇ । ରାସ୍ତାର ଗହଳର ଗତିରେ, ବେଗରେ ତାର ଗୀତର ପ୍ରଭାବ ପଡ଼େ ।

ପୁନିର ମନ ଫିକା ପଡ଼ିଯାଇଥିଲା । ପୁଣି ସେହି ପୁରୁଣା ରୋଗ—ଆପଣା ସଂସାର ଗଢ଼ୋଉଛି । ଘର ଖାଲି ଗୋଡ଼ୋଉଛି । ବାରମ୍ବାର ଖେଞ୍ଚି ଲାଗୁଛି ଗୁଡ଼ାଏ ମନଗଢ଼ା ଆଶା, ଯାହା ତାର ଶକ୍ତିର ବାହାରେ ।

ପୁନି ଠିକଣା କଲା, କେତେଗୁଡ଼ାଏ ଜିନିଷ ତାର କିଣିବା ହଠାତ୍ ଦରକାର । ବାସ୍ନାତେଲ, ଅତର, ସାବୁନ, କାଚ । ସନଆର ପୁଞ୍ଜି ସେଥିପାଇଁ ଆଶ୍ରୟ ।

ମାନମସ୍ଜୀର ଉଛୁଳା ସଙ୍ଗୀତ ଝରୁଛରେ ଅଭିଯାନ କରୁ କରୁ, ପୂନର ପାଦ ତାକୁ ଘେନଗଲା ସନଆର ଝୁଙ୍ଗାକୁ । ସେଠି ଅରମା ବଢ଼ିଛୁ, ଅସନା କୁଢ଼ ହୋଇଛୁ । ଗୁଳର କଣା ବାଟେ ପାଣି ଗଳ ଗଳ ଗୃହଆଡ଼ ଓଦା ସନ୍ସନ୍ଆ ।

"ଆରେ !" ସନଆ ଚମକପଡ଼ ଭ଼ଆଁଟାଏ ମାରଲା । "ଆଜ ଏ କ ଅପୂରୁବ, ତୋ ଗୁଁକୁ ରୁ ଆସିଚୂ ପୂନ !"

"କାଇଁକ ବା, ତୋ ଘର ମତେ ମନା କରଚୂ କ ?"

"ଆଉ କହ ନା, କହ ନା; ଭିତରକୁ ଗୁଲ୍ ।" ଦୁଇ ହାତ ଧର ସନଆ ପ୍ରାସ୍ଟ ଘିଞ୍ଚାଡ଼ଆ କର ଓଟାର ଘେନ ଯାଉଥାଏ ।

"ଘର ମନା ନ କଲେ ଘର କଲଥବୁ ଅବା ! ଇସି, କ ଅସନା ! କୁକୁରକୁ ବାଡ଼େଇଲେ ହଗିବାକୁ ଆସିବ ନାହିଁ ଏଠିକ । ରୁ କଣ କରୁଚୂ ରେ ସନଆ, ଘରେ ରହୁନୁ ପର !" ମନହରଆ ମା ପାଞ୍ଚି ଶୁଭୁଛୁ । ସନଆ ଗୋଲ କରୁଚ, "ଧେତ୍, ଏଠିଟାରେ କଣ ମ ! ଗୁଲୂନୋଭି, ଭିତରକୁ ଗୁଲ୍ ।"

"ଯୋଉ ଭିତର ! ଅରମା ଭିତରେ ନ ନୁଆଣି ହାଲର ହାଲର । ମା ଲୋ, ମତେ ଡର ମାଡ଼ୁଚ । ହାତ ଗୁଡ଼ ଦେ, କାଟୁଚ । ଏମିତ ଗମ ଗମ ହୋଇ ଝାଳ ଫିଟିଯାଉଚ ତୋ ଧିଅରୁ ! ଗରମ ହେଲଣି, ମେଘ ବରଷିବ । ନାଇଁ, ମୁଁ ଯାଏଁ ।"

"ହେ ପୂନ, ଏମିତ ହ'ନ୍ତୁ ନା ! ରଇଥା, ବଜାରକୁ ଯିବା, ବୁଲିବା—"

"ଖାଲି ବୁଲିବା—ମୋର ଗରଜ ପଡ଼ଚ—"

"ଖାଲି ନୁହେଁ, ଯାହା ରୁ କହବୁ । ଯାହା ମୋ ଦେଇ ହବ, ସବୁ ତତେ ଦେବ—"

ପୂନ ଘର ଭିତରେ ପଶିଲଣି । କଅଁ ଲେଇ ଝିଙ୍ଗାସୁଛୁ, "ଏଗୁଡ଼ା କଣ କରଚୂ ? ଆପଣା ଫଟା କାନ୍ଥରେ ମାଟି ମେଞ୍ଚାଏ ଲଦବାକୁ ତୋ ଦେଇ ହଉ ନାହିଁ ? ବାସ୍ତବଟା—"

ହବୁଦନ ପର ସେହ ତାର ଗେହ୍ଲାଳିଆ ଉତ୍ତର—"ଆଲୋ, ଏଗୁଡ଼ା ଅଣ୍ଡିରପୁଅଙ୍କ କାମ ନୁହେଁ, ମାଈକନଆ ଝିଅଙ୍କ କାମ । ତୋ କାମ ରୁ କରନୁ । ଓଲଆ-ପୋଲିଆ, ଲିପାପୋଛା । ଗୁଞ୍ଚୁଣୀ କୋଉଠି ଖୋସା ହବ, ଟୋକେଇ କୋଉଠି ଥୁଆ ହବ । ଦେଖନୁ, ମୋ କାମ ମୁଁ କରନ୍ତି କ ନାହିଁ । ଦେଖିବୁ

ପଡ଼େ; ଘରକୁ ଘରଣୀ ଆଣିବ, ଦାଣ୍ଡ ଅଗଣାରେ ବାଡ଼ ବସେଇବ; ତମ୍ବୁ ଗଛ ଆସିବ—''

''କୋଉଠି ଲଗିଲଣି କ ରେ ?''

''ମନକୁ ପଚ୍ଚର ।''

ପୁଣି ସନଆ କହୁଥାଏ—''କେତେ ସୁନ୍ଦର ହବ ପୁନ, ଦୁଆଁ ଦୁଇ ପର । ଦେଖିଲୁ, ତୁ କରୁଥିବୁ ମୁଁ ଖାଉଥିବ; ମୁଁ କରୁଥିବ, ତୁ ଖାଉଥିବୁ – ''

''ହଉ, ହଉ; ଆଜ ଏତକ ଥାଉ । ବଜାରକୁ ଯିବୁ ପରା ! ମତେ ବାସ୍ନା ତେଲ କଣିଦବୁ, ଅତର କଣିଦବୁ, ସାବୁନ୍, ମୁଣ୍ଡକଣ୍ଟା, କେତେ କଥା । ଆଉ ହେଇତ—ମୁହଁରେ କଣ ବୋଲ କେମିତ ସବୁ ଗୋରା ହୁଅନ୍ତି, ସେଥିରୁ କଣିଦବୁ ଗୋଟାଏ । ତତେ ଲଗିଲା—''

''ଲେ ରେ ଲମ୍ପନା, ଲେ ଲେ ।'' ହେଣ୍ଡିମାର ସନଆ ଉଠିଲା । ''ସବୁ ଦେବ । ମୁଁ କଏ, ତୁ କଏ ।''

ସନଆର ଗେଲ ଆଦର ଭଲ ଲାଗୁଥିଲା ।

ସବୁ ଏକା ପରା ।

ଆଖି ବୁଜିଦେଲେ ଫରକ୍ ଲାଗେ ନାହିଁ । ସନଆ କ ଅଘୋର କ ଆଉ କେହି ।

ବଜାର ସାର ସନଆ ଘରକୁ ଫେରିଲାବେଳକୁ ସନଆର ସମ୍ପତ୍ତିରୁ କେତେ ଭାଗ ସରଯାଇଛ, ପୁନର ସମ୍ପତ୍ତି ବଢ଼ିଛ । ମାଳ, କାଚ, ମୁଣ୍ଡରେ ଖୋସିବାକୁ ନାନା ଜାତର ନକଲ ଫୁଲ ଓ ପ୍ରଜାପତ । ପୁନର ମନଲାଖି ବାଇଗଣୀ ଶାଢ଼ୀ, ଶସ୍ତା ବାସ୍ନା ସାବୁନ୍, ମୁଣ୍ଡତେଲ, ଅତର, ବହୁତ ଜନଷ । ଦୋକାନକୁ ଦୋକାନ ପୁନ ଫର୍ମାସୀ କର କଣିଛ । ସନଆ ପଇସା ଦେଇଛ । ଦେଇ ଦେଇ ସନଆର ଗ୍ରନ୍ଥ କୁଣ୍ଡେ ମୋଟ । ପାଇ ପାଇ ପୁନର ।

ତାପରେ ସନଆ ପ୍ରସ୍ତାବ କଲା, ସମସ୍ତ ଅଛ, ବାଇସ୍କୋପ୍ ଦେଖି ଯିବାକୁ ହେବ ।

''ଆଜ ଏ ବର୍ଷାପାଗରେ ?''

''କାହିଁ ଆଉ ବର୍ଷା ?''

"ଘରୁ ଟିକଏ ଆସେଁ—"

"ଘରକୁ ଗଲେ ବୋଉ ଛାଡ଼ିବ ନାହିଁ ।"

"ହଉ, ତୁ ଦେଖିବୁ ।"

ଅଶାନ୍ତ ମନରେ ପଛେ ପଛେ ସନଆ ଗଲା । ସୁଆଗରେ ଗଣ୍ଠି ପଡ଼ି ଯାଉଛି । ଆଶଙ୍କା ହେଉଛି, କାଳେ କିଏ ପୁନକୁ ଛଡ଼େଇ ନେଇଯିବ ।

ସନଆ କୁକୁର ପରି ନାଲି ଛାଲି ହୋଇ ପଛେ ପଛେ ଗୋଡ଼ଉଛି । ପୁନ କହିଲା—"ଫେର ଯା; ମୁଁ ଆସୁଚି ଯେ ଧଅସି—"

"ଦେଖ୍, ସତେ ତୁ ଆସିବୁଟି—ଫେର୍—"

"ଆସିବି—"

"ମୋ ରାଣ ପକା—"

"ତୋ ରାଣ୍—"

ଡେଇଁ ଡେଇଁକା ସନଆ ଘରକୁ ଆସିଲା । ମୁହଁସଞ୍ଜ ପାଖ ହେଲାଣି । ମଣା ଚରି ଯାଉଛନ୍ତି ଦେହସାକ । ବନ୍ଧୁ ସ୍ୱଜନ ନାହାନ୍ତି, ଘର ବୋଲି ଖଣ୍ଡେ ଫଟା କୁଡ଼ିଆ । କଣ ଥାଏ ସେଥିରେ ?

ବାହାରର ପରିସ୍ଥିତିରୁ ମନ ଓଟାରି ନେଇ ସନଆ ଖିଆଲ୍‌ରେ ବସିଛି । ସେଇ ତାର ଅସଲ ଯୌବନର ସ୍ୱପ୍ନ । ଆଉ ସେ କିଛି ଖୋଜେ ନାହିଁ ।

ସାମାନ୍ୟ କାରଣ ସତ୍ତ୍ୱ । ପୁନ ହଁ କରିଛି । ଯେ କେହି ହଁ କରିଥାନ୍ତା ବୋଧହୁଏ; କିନ୍ତୁ ସନଆ ହସାବ କସି କସି ଜୀବନ କାଟେ ନାହିଁ ।

ମଣିଷ ଦେହର ଖୋଳପା ଭିତରେ ରସ ଅନୁଭୂତ ଉଚ୍ଛୁଳି ଉଠୁଛି । ମଣା ବଣରେ ପିଣ୍ଡା ଉପରେ ନଡ଼ାଟିଆରେ ବସିରହି ନାଗଅଇଣ ବଣର ଅଧା ଭଳିଆ ଆବର୍ଜନା ଆଡ଼କୁ ମୁହଁଟା ବୁଲେଇ ସନଆ ଭାବୁଛି । ସ୍ୱା ପରେ ରାତି । ଅନ୍ଧାର ରାତି ।

କଣା ଜନପର ବିଗ୍ରମତ ପରୀକ୍ଷା କରିବାକୁ ଫାଲେ ମୁଣ୍ଡରେ ବାସ୍ନା ତେଲ ଟିକଏ, ଫାଲେ ଗାଲରେ ସ୍ନୋ, ଦେହରେ ଠାଏ ଠାଏ ଅତର ବୋଲି ହୋଇ ଧନସାକର ଆଶାର ସଫଳତା ଦୋକାନର ଜନପ ଅଣ୍ଟି ତଳେ ଲୁଚେଇ, ପୁନ ଘରେ ପହଂଚିଲାବେଳକୁ ମୁହଁକୁ ଘୁମ୍ କରି ଜେମା ଦୁଆର ମୁହଁରେ ବସିଛି । ହାତପାଖେ ବଢ଼ିଣା ମୁଠାଟା ।

"ଆ, ତତେ ଦଉଚି ଉଇ ଆ; ତୋ ବଡ଼େଇ ଛଡ଼ୋଉଚି ।" ଜେମା କହିଲା । ପୁନି ହସିଲା । ପୁନି ଦେହକୁ ମୋଡ଼ି ଦୋହଲେଇ, ଗେହ୍ଲେଇ ହୋଇ ଗୁଞ୍ଜିଲା । ଜେମା ତରଳିଲା ନାହିଁ ।

"ହଇ ଲୋ ଚୁଲିପଶି, କୁଆଡ଼େ ଯାଇଥିଲୁ ? ଉଁ-ହୁ—କଣ ଖରା ମହ ମହ ଗନ୍ଧୋଉଚୁ ଲୋ ଛତରଖାଇ ! କ ଲୋ, କୁଆଡ଼େ ଯାଇଥିଲୁ ?"

"ମଲା, ତୋର କଣ ହେଇଚି କ ଲୋ ବୋଉ ! ଘୁଅ ସଫା କରି କରି ଧିଅରୁ ନେଙ୍ଗୁଟି ହୁଣ୍ଡୁଚି, ଘରକୁ ଆସିଲେ ତୋର ତୋଡ଼ ?"

ଜେମାର ମରମରେ ବାଜିଲା । ସମ୍ଭାଳି ନେଇ ସେ କହିଲା—"କିଏ ତତେ ଘୁଅ ସଫା କରିବାକୁ କହିଲା ? ଘରର ଖତ ତତେ ରୁଚିଲା ନାହିଁ, ରୁ ଗଲୁ ତୋ ମନକୁ । ମତେ କଣ ଦୋଷ ଦଉଚୁ ଲୋ ।"

"ହଉ, ହଉ; ମୋ ମନକୁ ମୁଁ ଗଲି । ମୋର ଦୋଷ ପଛେ—" କଥା ବୁଲିଗଲା । ମା ଝିଅ ଦୁହେଁ ବକର ବକର ହେଲେ । ପୁନି ବସି ଚଞ୍ଚଳ ଚଞ୍ଚଳ ମୁଣ୍ଡ ବାନ୍ଧିଲା ।

"ବୋଉ, ମୁଁ ଯିବି ବୁଲି—"

"କୁଆଡ଼େ ବୁଲି ଯିବୁ ?"

"ମୋ ସୁନାଟି ପରା, ଗାଳି ଦବୁ ନାହିଁ, ନାହିଁ କରିବୁ ନାହିଁ । ତତେ ମୋ ରାଣ । କୋଉଠିକି ଯାଇ ନାହିଁ; ଟିକିଏ ବୁଲି ଯିବି—"

"ହଁ, ସେଇ ବଗଡ଼ ସହଆଟା ସାଙ୍ଗରେ ଟି ! ବୁଝିଲି ଲୋ ତୋ ଫିକର ! ଆଲୋ, ତୋର ପେଇଁ ମୁଁ ବ ଦିନେ ଟୋକି ଥିଲି ଲୋ । ମୋର ପେଟରୁ ପଡ଼ି ମୋ ଆଖିରେ ଧୂଳି ଦବୁ ! ତୋର ଏଡ଼େ ବହପ—"

ପୁନି ହସିଲା । କହିଲା—"ମୋ ରାଣଟି ବୋଉ, ଆଜି ଥରକ । ଦେଖିଲୁଣି, ସହଆ କଣ ଦେଇଚି ? ଭିତରେ ରଖିଚି, ଦେଖିବୁ ତ ଯା—" ରଙ୍ଗ ଯିବ, ଟମ୍ପ ଯିବ, ସାହିରୁ ଆଉ କେତେ ମାଇକିନିଆ ଯିବେ । ତୋ ଗୋଡ଼ତଳେ ପଡ଼ୁଚି, ମତେ ଛାଡ଼ି ଦେ—"

"ଚୁଲିକି ଯାଉଚୁ ପୁନି ! ମୁଁ କଣ ଦେଖୁ ନାହିଁ କି ଜାଣୁ ନାହିଁ—ସେ ସହଆ କଥା ମତେ କେମିତି କେମିତି ଲାଗୁଚି । ରୁ ମାନୁନୋହିଁ—"

ପୂନି ଭୂନିଭାନି ବେଶ ହେଲା । କାମ ସାର କହିଲା—"ବୋଉ, ଗୁରଣା ପଇସା ଉପୁର ମିଳିଚ, ଭୁ ନେଇ ଥା—" ପୁନିର ହାତକୁ ମୁଠା କରି ଧରି ପଇସା ଛଡ଼ୋଉ ଛଡ଼ୋଉ, ଛୁଟି ପାଇ ପୁନି ଉଡ଼ି ଗୁଲିଗଲା ।

ପଡ଼ଣା ଘର ଓଳିତଳେ ମିଟି ମିଟି ଦ'ଟା ଆଖି ଜଳୁଚ । ପୁନି ଗଲା ପରେ ଅନ୍ଧାରରୁ ପ୍ରଶ୍ନ ହେଲା—"ପୁନି କୁଆଡ଼େ ଗଲା କି ପୁନିବୋଉ—"

"ମଲା, ହାତ ଗୋଡ଼ ଥିଲା ପିଲାଟା; କୁଆଡ଼େ ଗୁଲିବ ନାହିଁ, ବୁଲିବ ନାହିଁ ଯେ, ଗୋଡ଼େ ଗୋଡ଼େ ପଶୁରୁଚନ୍ତି—କୁଆଡ଼େ ଗଲା !"

ଖେଁ ଖେଁ ହସ ଶୁଭିଲା ସେ ଘରୁ । "ହଁ ମୋ, କଏ କଣ ତମ ପାଇଲା ସ୍ବଗରୁ ଛଡ଼େଇ ନେଇ ଯାଉଚ ? ଏତେ ଚଳୁଚ କାହିଁକି ମ ! ମୋ ଝିଅଟାକୁ ସିନା ଦଇବ ଘୋସାରି ନେଇ ନଇବାଲିରେ ପକେଇଦେଲା; ଥିଲେ ଅଇଗ୍ଲୁ ପୁନି ସାଙ୍ଗର ହଅନ୍ତାଣି । ଏମିତି ବଅସ ଧନ, ଏମିତି ରୋଜଗାର । ହଁ, ଦେଇଚ ଯାହାକୁ ସେ କାହିଁକି କୋଠା ନ ପିଟିବ ! ମୋ ଘର ନଣମାଙ୍ଗୀ କଏ ଅଛୁ ସଂସାରରେ ? କହନ୍ତି କଣ ନା, ଜଗନ୍ନାଥଙ୍କର ବଢ଼େଇ, କାହାକୁ ଦଅନ୍ତି ଖିରି ଖେରେଣ୍ଡ଼, କାହାକୁ ମାରନ୍ତି ଗଢ଼େଇ—"

"ହଇ ଲୋ—ହଇ ଲୋ—କଣ କହିଲୁ—କଣ କହିଲୁ—ମୋ ପୁନିକୁ କଣ କରି ପାଇଲୁ କି ଲୋ—" ଜେମା କଜିଆକୁ ଓହ୍ଲେଇ ପଡ଼ିଲା ।

କେତେ ବେଳଯାକେ ଦୁଇ ପକ୍ଷରୁ ବର୍ଷି ଲାଗିଲା ବାଣ । କଏ କେଉଁ ବନ୍ଧୁବାନ୍ଧବଙ୍କୁ ଖାଇଛୁ, କାହାର ଦେହ ପା'ର ଅବସ୍ଥା କପରି; ଇତ୍ୟାଦ ।

ମନର ଓରମାଣ ମେଣ୍ଟେଇବାକୁ ଜେମା ବାଟ ପାଇଥିଲା ।

ପୋଷା ଚଢ଼େଇ ଉଡ଼ି ଗୁଲିଯାଇଛୁ ।

□ □

# ପଇଁଚାଳିଶ

ସଞ୍ଜ ।

ବଡ଼ କୋଠା ଅପେକ୍ଷା କରିଛି, ସେମାନେ ଆସିବେ—ମାନମନ୍ଦିରର ବନ୍ଧୁ, ଅଘୋରବାବୁଙ୍କ ବନ୍ଧୁ । ସେମାନେ ବି ଆନନ୍ଦର ଉପାସକ; କିନ୍ତୁ ସେ ଆନନ୍ଦର ରୂପ ଭିନେ, ସଜ୍ଜା ନିଆରା ।

ଦାମୀ ପୋଷାକ ପିନ୍ଧି, ସଜା ହୋଇ, ତନ୍ଦ୍ରୀ ହୋଇ ଆନନ୍ଦ ବସି ଅପେକ୍ଷା କରୁଥିବ । ନିର୍ଘଣ୍ଟ ଓଲଟେଇ, ଘଣ୍ଟାର କଣ୍ଟା ଦେଖି ସେମାନେ ଆସି ପହଞ୍ଚିବେ । କିମ୍ପତ୍ ପଚାରି, ହାତ ବଢ଼େଇ ଯେନ ନେଇ ପଳେଇବେ । ସେହି ତାଙ୍କର ମୂଲ୍ୟବାନ୍ ପ୍ରାଣକୁ ଉଚିତ ଆନନ୍ଦ । ଯାହାର ଆବରଣ ଗଢ଼ିବାକୁ ଜଟିଳ ଯନ୍ତ୍ର ଉପରେ ନାନା ଜାତି କଳକାରଖାନା ଭିତରେ ଜୀବନ କ୍ଷୟ କରି ଅଜସ୍ର ମଜୁରିଆ ମୂଲ୍ ନେଇ ଆୟୁଷ ଦେଇ ପରିଶ୍ରମ କରିଥିଲେ । ପ୍ରକୃତି ସୃଷ୍ଟି କରିଛି ପାଣି; କିନ୍ତୁ ତାଙ୍କ ନାଖି ହେବାକୁ ହେଲେ, କେଉଁ ଦୂର ଦେଶର କଳ କାରଖାନାରେ ତିଆରି କମକୁଟେମସ୍ତ ତଳେଇ କାଚର ଟୋଲ ଥାଳିଆ ଉପରେ ନକଲି ସ୍ଫଟିକ ପଥରର ଛାଞ୍ଚ ପରି କଟା ହୋଇଥିବା ଆଁଶଆଁଶିଆ ଗିଲାସ ଭିତରେ ସେ ଟଲମଲ ହେଉଥିବ । ଚାରିଆଡ଼ୁ ଛୁରିକି ଆସୁଥିବ ଆଲୁଅର ସୁଅ । ଝକାଝକ୍ ଉର୍ଦ୍ଦି ପିନ୍ଧି, ନିଶ୍ୱାସ ବନ୍ଦ କରି, ପିରୁଲା ପରି ସ୍ଥିର ହାତ ବଢ଼ାଇ ପାଣି ଧରି ଦାମୀ ଚାକର ଅପେକ୍ଷା କରୁଥିବ । ଆଖି ବୁଜି, ମୁହଁ ଆମ୍ବିଳା କରି, ଅବହେଳାରେ ସେହି ଗିଲାସର ପାଣି ରୁଣ୍ଡିକୁ ନେବା ହିଁ ସେମାନଙ୍କର ଆନନ୍ଦ । ସେଥିପାଇଁ ମଧ୍ୟ କାଇଦା ଦରକାର । ଗିଲାସ ଟେକି ନେବାର ବିଧି, ଗିଲାସ ଥୋଇ ଦେବାର ବିଧି । ଓଠର କେତେ ଭଗ୍ନାଂଶ ଭିତରକୁ ଯିବ ସେଥିପାଇଁ ବିଧି । ବିଧିର କର୍ମକାଣ୍ଡ ପ୍ରାଚୀନ ଯୁଗଠୁଁ ଅଦ୍ଭୁତ ଜଟିଳ, କେବଳ ଭାଷା ସଂସ୍କୃତ ନୁହେଁ । ଦାମ୍ ଦେଲେ ଦ୍ୱିତୀୟ ପ୍ରଶ୍ନ ନାହିଁ । ଯାହା ଭାଉ ଦେବେ ଚଳନ୍ତି ମୂଲ୍ୟ-ସୂତ୍ର ଅନୁସାରେ ତାହା ହିଁ ଉଚିତ ମୂଲ୍ୟ ବୋଲି ଧରିନେବାକୁ ହେବ । ଗଡ଼ାଳି ମଜୁରିଆର ରକ୍ତ ଆଉ ଝାଳର, ମନ ଆଉ ହୃଦୟର ସେହି ମୂଲ୍ୟ ଭିତରେ ସ୍ଥାନ ନାହିଁ । ଧନ୍ୟବାଦ ଦେଲେ ବିସ୍ମୃତିର ପ୍ରତିଶ୍ରୁତି; ଦେଣ୍‌ନେଣ୍ ଭୁଟାଭୁଟି ପଦେ ପଦେକେ । ସେଥିରେ ଆଗର ସମ୍ବନ୍ଧର ଇତିବୃତ୍ତି ନାହିଁ, ଭବିଷ୍ୟତ ପାଇଁ ଜାତକ ନାହିଁ । ସବୁ ଜାଗ୍ରତ ବର୍ତ୍ତମାନ; ଅର୍ଥାତ୍ ଏହି ମୁହୂର୍ତ୍ତ । ଏହି ଧାରଣା ହିଁ ସେମାନଙ୍କର ମୁହୂର୍ତ୍ତର ଦର୍ଶନ ।

ତେଣୁ ବଡ କୋଠା ତାର ବଧୂ ଉପସ୍ଥିର ସେନ ପ୍ରସ୍ତୁତ ହୋଇ ଅପେକ୍ଷା କରିଛି । ଅବିନାଶବାବୁ ଘଣ୍ଟା ଦେଖୁଛନ୍ତି, ପଦାକୁ ଦେଖୁଛନ୍ତି ।

ଟେବୁଲରେ ନୂଆ କନା । ଝରକାରେ, କବାଟରେ ନୂଆ ପର୍ଦ୍ଦା । ସାଜସଜାରେ ନୂଆ କଲେଇ । ସବୁ ମା ଝିଅ ଦୁହିଁଙ୍କର ତତ୍ତ୍ୱାବଧାନରେ । ଉନଯାକର ପ୍ରସାଧନ, ହିଗ୍ଲେଲା କୋଠରିରେ ବଡ ଦର୍ପଣ ସଙ୍ଗେ ବାରମ୍ବାର ମତାମତ ବଦଳାବଦଳି । ମାନମୟୀ ପଞ୍ଚିଶ ପର ସଜା ହୋଇଛି । ଓଠ ରଙ୍ଗ କରିଛି, ଗାଲରେ ବୋଳିଥିବା ପୁଟର ତାରତମ୍ୟରେ ସୁର୍ମରେ ଅଙ୍କା ହୋଇଥିବା ଆଖିର ଦୃଷ୍ଟିକୁ ଆହୁରି ଭାବପ୍ରବଣ କରିଛି । ତାର ଦେହଯାକ ବାସ୍ନା, ନୈବେଦ୍ୟର ଭୋଗ ପରି ।

"କାହିଁକି ଡେରି ହେଉଛି ଅଘୋର ?" ଡାଣ୍ଡଘର ଦୁଆରବନ୍ଧରୁ ମୁହଁ ବଢ଼େଇ ଅବିନାଶବାବୁ ପଚାରନ୍ତି । ରନ୍ଧାଘର ଦୁଆରମୁହଁରୁ ମା ପଚାରନ୍ତି । ମାନମୟୀର ବଖରାର ପର୍ଦ୍ଦା ମଧ୍ୟ ଦୋହଲି ଉଠେ ।

ବିରକ୍ତ ହୋଇ ଅଘୋରବାବୁ ପଦାକୁ ଅନାନ୍ତି । ବେଳୁବେଳ ମାହା ଲାଗୁଛି । ଜଗତଯାକର ଧରମବେଠିଆ ସତେ କି ସେ ନିଜେ ! ଶିଙ୍ଘ ଆପିବାକୁ ବୁଧାଡା ଆନ୍ଥ ସ୍ଥାନ ପାଇଲା ନାହିଁ ।

• ନିରୁପମାର କନ୍ୟା-ଡାକଘ ପାଇଁ ଅଭ୍ୟର୍ଥନା ସମିତିର ସଭାପତି ହେବାକୁ ଥିଲା ।

ବେଶି ଡେରି ନାହିଁ । ଦୂରରୁ ମୋଡ଼ ଭାଙ୍ଗି ରାସ୍ତାରେ ମଟରଗାଡ଼ି ଆସୁଛି । ନିରୁପମାକୁ ଆସ୍ତେ ହଲେଇ ଦେଇ, ଗାଲ ଉପରେ ଗାଲ ଥୋଇ ବସ୍ତୁ କହିଲା—"ଦେଖ୍ ନିରୁ, ମେଘୁଆ କଳା ଆକାଶ ଘୋଗୁଁ ଅନ୍ଧାର ଘରରେ କୋଠାର ଆଲୁଅ କେମିତି ଦିଶୁଛି ! ଆଚ୍ଛା, ଏ ଧନ୍ଦାର ଉତ୍ତର ଦେଲୁ—କୋଠାର ଏ ଆଲୁଅ ପାଇଁ ମେଘୁଆ ରାତି ନା ମେଘୁଆ ରାତି ପାଇଁ ଏ ଆଲୁଅ ?"

ଉଦ୍ଦାମନରେ ନିରୁପମା ଜବାବ୍ ଦେଲା—"କେହି କାହା ପାଇଁ ନୁହେଁ ।"

"ଭୁଲ୍ କହିଲୁ । ତୋ କଥା ମାନିନେଲେ ଦର୍ଶନଶାସ୍ତ୍ରର ଅଧେ ପୃଷ୍ଠା ଚିରି ପକାଇବାକୁ ହେବ । ଜଣେ ଜଣକୁ ଅପେକ୍ଷା କରେ—ସମ୍ବନ୍ଧଶୀଳ ସୃଷ୍ଟିର ନିୟମ ହିଁ ହେଉଛି ଏହି ।"

"ଖୁବ୍ ଦର୍ଶନଶାସ୍ତ୍ର ମନେପଡ଼ୁଛି ନୁହେଁ ବସ୍ତୁ ? ପରୀକ୍ଷା ପରେ କି କଣ ମଣିଷ ବହି ଘୋଷେ ?" "ରୁ ଥଟ୍ଟା କରୁଛୁ ! ହେଇ ଦେଖ୍ କି ସୁନ୍ଦର, କି ସୁନ୍ଦର ! ମୁଁ ତ କହିବି ଭଗବାନ୍ ଆଜିର ଏ ମେଘୁଆ ରାତି କରିଛି କେବଳ ମାନ ଘରେ ତୋର ନିମନ୍ତ୍ରଣ ପାଇଁ । କହିଲୁ, ରୁ ନାଚବୁ ନାହିଁ ?"

"ବିଷ୍ଟୁ ଅପା, ତମୁକୁ ଖାଉ ନାକ ମାଡ଼ୁଚ ପଦ୍ମ—!" ଶୋଭା ଯୋଗ ଦେଲା ।

ସମସ୍ତେ ହସିଲେ । ବିଷ୍ଟୁ ତାର ଚଷମାଟି ପୋଛୁ କହିଲା—"ଧାରଣା ଗ୍ରହଣ କରିବା ଶକ୍ତି ଯାହାର ନାହିଁ, ତା ସଙ୍ଗେ ମୁଁ କଥା କହିବେ ନାହିଁ ।"

"ସତେ ବିଷ୍ଟୁ, ଅଘୋରବାବୁଙ୍କ ଘର ଯହୁଁ ଯହୁଁ ପାଖ ହେଉଛୁ, ତହୁଁ ତହୁଁ ଧାରଣାଗୁଡ଼ାକ ବେଶି ବେଶି ଆସୁଛି; ନୁହେଁ ?"—ନିରୁପମା କହିଲା ।

"ଦେଖ୍ ନିରୁ, ମୁଁ ତୋ ପାଇଁ ପ୍ରକ୍ସି"—କହିଦେଇ ବିଷ୍ଟୁ ଜିଭ କାମୁଡ଼ ପକେଇ ଚୁପ ହେଲା ।

ମଟର ଭିତରେ ଗୁମ୍‌ସୁମ୍ ପଡ଼ିଲା । ସାପ ପରି ହିଁ ହିଁ ହୋଇ ନିରୁପମା ତାର କାନପାଖେ କହିଲା—"କଣ କହୁଥିଲୁ, ଚୁପ ହେଲୁ ଯେ—"

"କହୁଥିଲି, ସଦାନନ୍ଦବାବୁ ଆମ ସାଙ୍ଗେ ଆସିଥିଲେ ଖୁବ ଭଲ ହୋଇଥାନ୍ତା—" ନିରୁପମା ଦୀର୍ଘଶ୍ୱାସ ପକେଇଲା ।

ମଟର ଅଟକେଇ ଓହ୍ଲେଇ ପଡ଼ିଲାବେଳକୁ ମହା କଳରବ । ଅବିନାଶ-ବାବୁଙ୍କ ବଂଶଯାକ ସମସ୍ତେ ଜମା ହୋଇଛନ୍ତି । ଶୈଳେନ୍ଦ୍ରବାବୁ ଅବିନାଶବାବୁଙ୍କ ସଙ୍ଗେ ଗ୍ଲାଲଗଲେ । ପିଣ୍ଡା ଉପରେ ଗୋଷ୍ଠୁ ହୋଇ ବାକି ସମସ୍ତେ । ଲାଉଡ୍-ସ୍ପିକର୍‌ରେ ରେଡ଼ିଓର ସମ୍ବାଦ ଚହଲ ପକେଇଛି । ଗ୍ଲୁଛି ବଜାର ଦର । ସରଳ ବେଶ ପିନ୍ଧି ମଳିନ ମୁହଁରେ ଅଘୋରବାବୁ କରଛଡ଼ା ଦେଇ ଠିଆ ହୋଇଥାନ୍ତି । ମାନମୟୀ କଟାଳ କଲା—"ଯେ କଣ ତାମସା ଭାଇ, ଘରେ ନ ପହଞ୍ଚୁଣୁ ଦୋକାନ-ସାମ୍ନା ପରି ବଜାର ଦର ! ପୃଥିବୀମଯ୍ୟ କଣ ଖାଲି ଏଇଆ ଗ୍ଲୁଛି ରେଡ଼ିଓରେ ?"

ହସିଦେଇ ଅଘୋରବାବୁ କହିଲେ—"ସମ୍ଭବତଃ ।"

ନିରୁପମା ଗ୍ରହିଁଦେଲା । ମନ ଭିତର ଧକ୍ କଲା । ଲାଗିଲା ଅଘୋରବାବୁଙ୍କ ମନରେ ତୋଫାନ ଉଠି ଶାନ୍ତ ପଡ଼ିଯାଇଛି । ବିଜିତ ଅଘୋର ପ୍ରତି ମନ ଟାଣି ହୋଇଗଲା । କହି ହୋଇଗଲା—"ଆପଣ ଆଜି ବଡ଼ ଦୂରରେ !"

ମୁହଁକୁ ତଳକୁ ପୋତି ଅଘୋର ଅପେକ୍ଷା କଲେ । ନିରୁପମା ଧୀର ଗଳାରେ କହିଲା—"କଥା କହିବେ ନାହିଁ ? ପ୍ରତିଜ୍ଞା କରିଛନ୍ତି ? ଓଃ, କି ମେଘୁଆ ରାତି ! ଦେଖନ୍ତୁ ବିଜୁଳି ମାରି ଦେଉଛି । ସେ ଦିନ ବି ଅବିକଳ ଏମିତି । କିଛି ମନେପଡ଼ୁଛି ?"

ଓପାର ବାରଣ୍ଡାର ଗୋଟାଏ ଅଂଶ ବୁଲପଡ଼ି କୁଣ୍ଡ-ବଗିଗ୍ଲ ଉଡ଼ାଳରେ ଦ'ପଦ କଥାଭାଷା ।

ଅଘୋରବାବୁ ନିରୁପମା ମୁହଁକୁ ଲକ୍ଷ୍ୟ କରି ପାରିଲେ ନାହିଁ । କହିଲେ– "ସବୁ ସମ୍ଭବଶୀଳ ।"

ନିରୁପମା କହିଲା—"ଆପଣ ବି–?" ଡାକିଲା—"ଆଲୋ ବନ୍ତି, ଦର୍ଶନଶାସ୍ତ୍ର ଆଲୋଚନା କରିବାର ଅଛି । ତୁ କର, ମୁଁ ପାରୁ ନାହିଁ ।"

ଅଘୋରବାବୁ କହିଲେ—"ବଡ଼ ବ୍ୟସ୍ତ ଅଛି । ବର୍ଷାଯୋଗରୁ ବୋଧହୁଏ ସମସ୍ତିଙ୍କର ଆସିବା ଡେରି; ତେଣୁ ଅପେକ୍ଷା କରିଛି ।" ତାଙ୍କର ଆପତ୍ତି ଏଡ଼ାଦେଇ ବନ୍ତି ଓ ଶୋଭା ଉଭୟେ ଆସି ପହଞ୍ଚିଗଲେ । ବନ୍ତି କହିଲା –"ଦର୍ଶନଶାସ୍ତ୍ର ଆଲୋଚନା କରିବେ ? ମୁଁ ଭୁଲିଗଲିଣି । ତେବେ ବର୍ଷା ଗୀତକୁ ସେହି ଭଲ । ସେମାନଙ୍କର କଥା ଅଛି, ସେମାନେ ନାଚିବେ । ହଉ ପଛେ, ଆପଣଙ୍କ ପାଇଁ ମୁଁ କିଛି ସମସ୍ତ ଦେଇପାରେ । ଆମେ ଖାଲି ଗପିବା । କୋଉଠି ବସିବା ?"

ମାନମୟୀ ହୁରୁଡ଼େଇ ଆସିଲା । "ଚାଲ, ଚାଲ ।" ସଙ୍ଗେ ସଙ୍ଗେ ଆଉ ଗୋଟିଏ ମଟର ଆସି ପହଞ୍ଚିଗଲା; ତାର ଆହୁରି ପଛାଏ ବନ୍ଧୁ । ପଛକୁ ପଛ ଆହୁରି ଗୋଟିଏ, ଆହୁରି ଗୋଟିଏ । ଅତିଥି ଆସିଗଲେ ।

ଘରଯାକ ହସ, ଗପ, ପାର୍ଟି । ମାନମୟୀ ଗୀତ ବୋଲୁଛି । ନାଚ ଆରମ୍ଭ ହେଲେ ଡାକିବେ କହିଛନ୍ତି । ଇତ୍ୟବସରରେ ରେଡ଼ିଓରେ ଗିଁ ଗିଁ ଗୀତ, ବକ୍ତୃତା । ତାସ୍ ଲାଗିଛି ଆର ଘରେ । ଶୈଳେନ୍ଦ୍ରବାବୁଙ୍କ ମେଳରେ ଅବିନାଶବାବୁଙ୍କ ସଙ୍ଗରେ ଅନ୍ୟାନ୍ୟ ମାନ୍ୟଗଣ୍ୟ ମୁରବୀମାନେ ।

ସିଗାରେଟ୍ ଧୂଆଁ ଭର୍ତ୍ତି ଆଡ୍‌ଡା କୋଠି ଭିତରୁ ଅଘୋରବାବୁ ପୁଣି ପଦାକୁ ଆସିଲେ । ସମସ୍ତ ବହିଯାଉଛି । ଶୁଭରାତ୍ରିରେ ହସଖେଳ ଜମିଛି ଭଲ ।

ସମସ୍ତେ ଅପେକ୍ଷା କଲା ପରି ବେଳ କାଟୁଛନ୍ତି । ପାଣିଚଆ ପବନରେ ଘଡ଼ଘଡ଼ି ପୂର୍ବର ଆମ୍ବିଳିଆ ବାହ୍ନା । ପବନ ଅମ୍ବିଛି । ଅନ୍ଧାରରେ ପ୍ରତୀକ୍ଷା ।

ଯେପରି ଏହାର ପରିଣତି ଅଛି କେଉଁଠି । ସତେ କି କୌଣସି ଘଟଣା ଘଟିବ, ଯାହା ବନ୍ଧା ଗତର ମଲା ଗୁଳାର ବାହାରେ ।

ଅଘୋରବାବୁ ପଦାକୁ ଅନେଇଲେ ।

ଏହିପରି ଏ, ନିତିଦିନିଆଁ ।

ଏ ଶୁଭରାତ୍ରିରେ ଘଟଣା ଘଟେ ନାହିଁ । ଗୀତ, ନାଟ, ଭୋଜିଭାତ ପରେ ମୁଖାପିନ୍ଧା ଦାମୀ ପିଲୁଳା ପୁଣି ଆପଣା ବାଟ ଧରେ ।



# ଛୟାଳିଶ

ପାଦ ଚିଲ୍ହ ହୋଇ ଯାଉଛି । ଶୁଖିଲା ମଞ୍ଜିର ଦୋ'ଟି ଖୋଲପା ପରି ମା'ର ଆକଟ—ରହିଲାଣି ସେ କେତେ ତଳେ । ସେଦିନ ପୁନି ବାଇସ୍କୋପର ନାଁ ଧରି, ପଢାଆସି ଦେଖାଇ ପଦାକୁ ଲମ୍ବିଥିଲା । କ୍ରମେ ପଢାଆସି କରିବାର ପ୍ରୟୋଜନ ବି ମନକୁ ଛୁଉଁ ନାହିଁ । ପାଦ ଟେକିଲେ ଆପଣା ଛାଆଁକୁ ତାକୁ ଲାଗୁଛି—କାହିଁ, ବେଢ଼ି ନାହିଁ ତ !

ପନିଆର ପୁଞ୍ଜି ସରି ଆସୁଥାଏ ।

ସେ ଦିନ ବର୍ଷା ଛାଡ଼ିଥାଏ । ପନିଆ ଜଗର କଲା, ପୁନି ବାଇସ୍କୋପ୍ ଦେଖି ଚାଲ ।

ମନ୍ଦିର ନୁହେଁ, ବାଇସ୍କୋପ୍ ।

ସହରର ଚଳଚଞ୍ଚଳିଆ ମଣିଷଙ୍କ ଜୀବନରେ ଗୋଟିଏ ଅନୁଷ୍ଠାନ ।

ପନିଆ କହିଲା, ଟୋପିଏ ପିଇଦେଇ ଯିବା । ପୁନି ମଙ୍ଗିଲା ନାହିଁ ।

ପନିଆ ତାର ବାବ୍ରି ବାଳକୁ ସାଉଁଳି ନେଇଛି । ବେକରେ, କଚଟିରେ ମଲ୍ଲୀଫୁଲ କେସ୍ତ କେସ୍ତ । ପୁନି ତାର ଛିଟଶାଢ଼ୀ ପିନ୍ଧିଛି, ଗଜ୍ରା ସଜାଡ଼ିଛି, ପାନ ଖାଇଛି । ପନିଆ କଠକ କଠ ଦେହ ଘଷିହୋଇ ଚାଲିଛି ଯେପରି ତୀର୍ଥଦର୍ଶନ କରି । ଗାଡ଼ି ଜାଠଜାଠକା, ଗହଳି, ପେଲାପେଲି ମଣିଷ । ଆଲୁଅ ଝଟକୁଛି । ବାଜା ବୋବାଳି ଛାଡ଼ୁଛି । ଦିନସାକର ଜଞ୍ଜାଳକୁ ପାସୋରିବା ପାଇଁ ମନ କରି ନିଜକୁ ନିଜଠୁଁ ଛଡ଼େଇ ନେଇ ମଣିଷ ସମୁଦ୍ରରେ ବୁଡ଼େଇ ଦେବାକୁ ଲୋକ ଆସିଛନ୍ତି କେତେ ଦୂରରୁ । ପୁନି ଖୁସି ହେଲା । ପନିଆର ହାତକୁ ମୁଠେଇ ଧରିଲା । ପନିଆ ସାହସ ଦେଲା—"ଭାରି ଭଲ ଲାଗୁଚି; ନୁହେଁ ?"

ପାଖରେ ସ୍ତ୍ରୀଲୋକ ଥିବାରୁ ପନିଆର ବୀରତ୍ୱ ଅଙ୍କୁରିଛି । ପୁନିକୁ ଓଟାରି ନେଇ ଠେଲାଠେଲି; ଧକାଧକି କରି ଟିକଟ କିଣିଯିବାକୁ ତାର ମନ । ଦେଖେଇ ହେବାକୁ ଚାହେଁ—ଚିହ୍ନା ଗାଡ଼ିବାଲା ଆସିଛନ୍ତି, କେତେ ଚିହ୍ନା ମଜୁରିଆ ।

ପ୍ରକାଶ ପାଇବାକୁ ପୁନିର ମନ ନାହିଁ । ଜନତା ଗହଳରେ ନୂଆ ଉତ୍ସାହ ଯୋଗିଛି । ସମତାର ଆନନ୍ଦ ପାଇ ସେ ଶହେ ଖଣ୍ଡ; କିନ୍ତୁ ଦୂରେଇ ହୋଇ ରହି, କଡ଼େଇ କଡ଼େଇ ସେ ଉପଭୋଗ କରିବାକୁ ଚାହେଁ, ଧରା ଦେବ ନାହିଁ ।

ଦୃଷ୍ଟି ବୁଲେଇ ବୁଲେଇ ପୁଣି ଜଗା କଲା, ଭିଡ଼ ପାଖ ହୋଇ ଦୁ'ଜଣ ଚାଲିଛନ୍ତି । କୋଠାଡଙ୍କୁ ରୁମାଲ ହଲାନ୍ତି ଯେ—ନା ଜାଣେ ନାହିଁ । ସୁରବାବୁ ଏବଂ ତାଙ୍କ ସାଥୀରେ ଆଉ ଜଣେ । ସେ ଅଘୋରବାବୁ । ସନିଆ କୁଆଡ଼େ ଅନେଇଛି । ସେ ଦୁହିଁଙ୍କର ବାଟ ଓଗାଳି ହୋଇଗଲାଣି । ଏଣିକି ତେଣିକି ଚାହିଁ ଅଘୋରବାବୁ କହିଲେ—"ବଡ଼ ଡେରି ହେଲା ଗଲାଣିରେ ସୁର—"

"ଡେରି ନୁହେଁ ।" ସୁରବାବୁ କହିଲେ—"ଆଜି କଣ ହେଇଚି କେଜାଣି ! ଆଜି ବୋଧହୁଏ ମଫସଲିଆଙ୍କ ପାଳି ।"

ଏକା ସାଙ୍ଗରେ ଦୁଇ ବାବୁଙ୍କ ଦୃଷ୍ଟି ପୁଣି ଉପରକୁ । ସନିଆର ହାତ ଝାଙ୍କି ଦେଇ ପୁଣି ଧୀରେ ଧୀରେ କହିଲା—"ବାଟ ଦେ, ବାବୁମାନେ ଅଟକିଲେ ।"

"ଏଠି କୋଉ ବାବୁରେ—" ଆଖି ଗାରଡ଼େଇ ସନିଆ ମୁହଁ ବୁଲେଇ ଦେଲା । ଦୁ ପାହୁଣ୍ଡ ଆଗକୁ ମାଡ଼ିଯାଇ ପାଟିକଲା—"ହେ, ହେ, ହେ—"

"ତତେ କଣ ନାଗିଚି କି ରେ ? କଣ ହଜଉ କରିବୁ କି ରେ ? କାହିଁକି ଶଗଡ଼ ଅଟେଇଉଚୁ, ହଇ ରେ ସନିଆ—"

"ଜାଣିପାରିଲୁ ନୋହୁ ? ଯାଃ—ଚାଲିଗଲା, ଧରିପାରିଲି ନାହିଁ । ତୁ ବା କାହୁଁ ଜାଣିବୁ ! ସେଇଥି ଭିତରୁ ଜଣେ । ସେ ଦିନ ଗାଡ଼ିରେ କେମିତି ବୋଲୁଅ ଫୋପାଡ଼ିଲା—"

"କାହାକୁ ?"

"ଧରି ତ ପାରିଲି ନାହିଁ, ଆଉ କହି କଣ ହବ ! ଯାଃ, ସେ ହାତରୁ ଖସିଗଲା । କୋଉଠୁ ଫେର୍ ଖୋଜି ପାଇବି ତାକୁ ? ପାଇଲେ—"

ସନିଆ ଦାନ୍ତ ରଗଡ଼ୁଛି, ବେକକୁ ଝାଳୁଚି ।

"ମନା କରୁଥିଲି ତୁ ଯାଇ ପିଇ ଦେଇ ଆସିଚୁ । ବାବୁମାନଙ୍କ ମଝିରେ ଏମିତି ବେହେଲ ହେବୁ, ହାଟ ବସେଇବୁ ? ମନା କରୁଥିଲି, କାହିଁକି ଆଇଲୁ ଯେ—"

"ହଉ, ପାଟି କର ନା; ଚାଲ୍, ଚାଲ୍ ।

ବାଇସ୍କୋପ୍ । ସାଂଜନମାନ ସମାନ ପତ୍ତନରେ ଆସନ । ଗପସପ ଜମିଛି, ଟିପ୍‌ପଣୀ ଚାଲିଛି । ପାନପିକ, ଛେପ ଓ ପୋଡ଼ା ବଡ଼ିରେ ଭୂଇଁ ଏକାକାର । ସେମାନେ ମୁଣ୍ଡ ହଲାନ୍ତି, ହାତ ଛୁଆଁଡ଼ନ୍ତି, ପାଟି କରନ୍ତି । ପଛଆଡ଼ୁ ପ୍ରତିବାଦ

ଶୁଭେ, ଗାଳି ଶୁଭେ । କି ଶୁଣିଲି ପରି ସାମ୍ନାରୁ ଲାଗିରହେ କୋଳାହଳ, ପ୍ରଶଂସା ବା ନିନ୍ଦା ଅଭିବ୍ୟକ୍ତି ପାଇଁ ଆଦିମ ଧ୍ୱନି । ସନିଆ ସେହି ଦଳର ଛବି ଦେଖାରେ ମଜ୍ଜିଥାଏ । ତାର ସତ୍ତା ନାହିଁ, କିନ୍ତୁ ପୂନିର ଆଖିରେ ସେହି ଅନ୍ଧାର ଘରେ ଜକଜକ ପର୍ଦ୍ଦା ଉପରେ ଲୁଣି ଚରିଲି ପରି ବାରମ୍ବାର ଫୁଟି ଉଠୁଥାଏ ଗୋଟାଏ ମୁହଁ । ଥରେ ଦେଖା ଦେଇ ଏଇ ଲୋକ ଗହଳିରେ ସେ କେଉଁଠି ହଜିଯାଇଛି ସତ; କିନ୍ତୁ ପ୍ରତିଧ୍ୱନିରେ ତେଉ ଉଠୁଛି ପୂନିର ମନରେ । ମନେ ମନେ ମୂଲଚଉଲ ଲାଗିରହିଛି ଆପଣା ଅବସ୍ଥାର ।

ଏହି ସୁନ୍ଦର ବାଇସ୍କୋପ୍ ଘର । ସବୁ ଜାତିର, ସବୁ ପ୍ରକାର ଲୋକ । ଗୋଟିଏ ସଂସାର । ଏଠି ସୃଷ୍ଟି ଅଛି, ହସ-କୌତୁକ ଅଛି । ମଣିଷକୁ ଆଶ୍ଚର୍ଯ୍ୟ କରି ଦେଇ ଶୂନ୍ୟରୁ ଓହ୍ଳାଇ ଆସି, ପର୍ଦ୍ଦା ଉପରେ ଛବି ଉପ୍ରରୁ ଛବି ଗୁଳିଯାଉଛି । ନୂଆ ଦୁନିଆଁ — ହାଡ଼ସାହିର ଦୈନ୍ୟଦୁର୍ଦ୍ଦଶା ନାହିଁ; କିନ୍ତୁ ଚିପକୁ ଆହୁରି ଉଞ୍ଚ, ଖାଲକୁ ଆହୁରି ଗଭୀର କରି ଦେଇ ଯେପରି କି ସେ ସ୍ମରଣ କରେଇ ଦେଉଛି—ଏ ତାର ନୁହେଁ, ଏ ତା ପାଇଁ ନୁହେଁ ।

ସମାଜ ବାହାରେ ସେ ଗୋଡ଼ଦଳା ଲୋକ । ଛପିବାକୁ ଜାଗା ନ ପାଇ, ମନକୁ ମନ ଲାଗୁଛି ସେ ଚୋର ।

ଧାରଣାର ପୃଷ୍ଠପଟ ପରି ପର୍ଦ୍ଦା କଣରେ ଅଦେଖା ଗୋଟିଏ ମୁହଁ । ସେ ନରମ, କଅଁଳ, ସଭ୍ୟ, ଶିକ୍ଷିତ । ସେଠି ମଜୁରିଆର ରୁଢ଼ ନାହିଁ, ଝାଳ ନାହିଁ, ଧୂଳି ନାହିଁ ।

ସୌମ୍ୟ, ଶାନ୍ତ ହୋଇ ବାଇସ୍କୋପ୍-କୋଠିର ଦାମୀ ସାଜସଜ୍ଜା ଭିତରେ ଦାମୀ ମୁହଁଟିଏ ସେ । ଓଠ କଣରେ ଗୋଟିଏ ଜଳନ୍ତା ସିଗାରେଟ୍ । ଆଲୁଅରେ ସେ କୋଠାର ଛାତ ଉପରେ ଠିଆ ହୁଏ, ଅନ୍ଧାର ହେଲେ ତଳକୁ ଓହ୍ଲେଇ ଆସେ । ଅନ୍ଧାରରେ ଆସେ, ଆଲୁଅରେ ଯାଏ । ଛାଡ଼ିଦେଇ ଯାଏ ସ୍ୱପ୍ନ ଓ ଆକାଙ୍କ୍ଷା ।

କଟମଟ କରି ଅନେଇଁଛି କିଏ, ପଛଆଡ଼ୁ କିଏ ଧକ୍କା ଆସିଲାଣି । କାହାର ହସ, କାହାର ଠାରି । ଆଲୁଅ ଲିଭିଲା ପରେ ପଡ଼ିଶାଙ୍କ ସ୍ପର୍ଶ, ବଜାଖିଙ୍କ ଠେଲାପେଲା ଝିଙ୍କା ଓଟରା । ଅପମାନରେ ଦେହ ଜଳିଯାଏ । ଗାଳିଦେବାକୁ ଭାବି, ଲୋକ-ଗହଣରେ ପ୍ରାଣ ଶଙ୍କିଯାଏ । ଅପ୍ରସ୍ତୁତ ହୋଇ, ନିଜକୁ ହେୟ ମନେ କରି, ଝାଲେଇଥାଏ ବସି ବସି । ବାଇସ୍କୋପରେ ତାର ମନ ନାହିଁ ।

ବହୁତ ଭାବି ଭାବି, ସନିଆକୁ କହିଲା—"ଘରକୁ ଯିବା, ଡେରି ହେଉଚି ।"

"ରହ, ସରୁ । ଏଡ଼େ ଚଞ୍ଚଳ ? ଘରେ କଣ କାମ ଅଛୁ ?"

କଇଁଥା ମୁହଁରେ ବାରମ୍ବାର ଅନୁରୋଧ—"ନାଇଁ, ଚାଲ୍ ଯିବା ।"

ଡର୍କୁ ଭୁଟେଇ ଦେଇ ଘରଆଡ଼୍ ହୋ ଉଠେଲ, ବାଇସ୍କୋପ୍ ଭଙ୍ଗିଗଲା ।

ପଡ଼ଶା ଜଣେ କରପଟିଆ ଠିଆ ହୋଇ ଗାରଡ଼ ପଶ ହସୁଛି । ପୁନ ପାଟିକଲା—"କ ରେ ଚନ୍ଲାପଣା—!" ସନଆ ବୁଲପଡ଼ିଲା । ପଡ଼ଶା ଅଉ ନାହିଁ ।

ପଦାରେ ପୁନ ମାଣ୍ଡେଇ ହେଉଥାଏ । ପସରା ପାଖେ ସନଆ ପାନ, ବଡ଼ି କଣିଲା, ଚନାବାଦାମ କଣିଲା । ପୁନ ଉଣ୍ଡି ହେଲ—ସେ ଦୁହେଁ ଆସିବେ, ସୁର ଓ ଅଘୋର । ସେହିପରି ଦୁଇ ଜଣ କଏ ଦୂରରେ ଗାଡ଼ି ଚଢ଼ିଗଲେ । ଅନ୍ଧାରରେ ଗାଡ଼ିର ପିଠି ଦୂରରେ ନଭିଯାଉଚ । ବଡ଼ ସହରରେ କେତେ ମଣିଷ, କେତେ ଗାଡ଼ି, କଏ କାହାର ? ପୁନ ଭାବନାରେ ବୁଡ଼ିଥାଏ । ସେହି ଅଘୋରବାବୁ ଏକୁଟିଆ ସକାଳଓଳି ଦେଖା ପଡ଼ିଗଲେ ଏତେ ମମତା, ଏତେ ଦୟା, ଲୋକଙ୍କ ଆଗରେ ପଦେ କଥା ତ ଅଉ ଦୂର, ଟିକଏ ମୁଣ୍ଡହଲା ବ ନାହିଁ !

ମନ ହେଉଥାଏ, ଆପଣା ଆଶା ଅନୁଯାୟୀ ନୂଆ ହୋଇ ତା ପାଇଁ ତାର ସଂସାର ତିଆର ହୁଅନ୍ତା, ସେଠି କଟକଣା ନ ଥାନ୍ତା, ଭେଦ ଲୁଚ ନ ଥାନ୍ତା; ମନ ଯାହା ଚାହିଁବ, ସବୁ ମନମାଫି ହାତ ପାଆନ୍ତରେ । ସେଠି ଅଘୋରବାବୁ ତାର ସମ୍ବନ୍ଧ ଅସ୍ୱୀକାର କରନ୍ତେ ନାହିଁ ।

"ଖାଲି ଠିଆ ଠିଆ ହୁଁ ନା, ସେ ଦୋକାନକୁ ଚାଲ୍ ।" ସନଆ ଚେତେଇ ଦେଲା ।

"କୁଆଡ଼େ ?"

"କଣ କୁଆଡ଼େ ! ଖାଇବା ନାଇଁ ? ହେଇ, ସେଠି ଗୁଡ଼ିଆ ଦୋକାନ ।"

ଦବିଯାଇ ପୁନ କହିଲା—"ଆମେ ସେଠିକି ଯିବା ?"

ପଛରୁ ପେଲଏ ଦେଇ ସନଆ କହିଲା—"ଚାଲୁନୁ—"

ଦୋକାନରେ ବସି ଲୋକେ ଖାଉଛନ୍ତି । ସନଆର ସଂକୋଚ ନାହିଁ । ପୁନ ଖାଲି ତା ମୁହଁକୁ ଅନେଇଁଚ, ଲାଜରେ ସଢ଼ିଯାଉଚ । ଖାଇ ହେଉ ନାହିଁ ।

ସନଆ ପଇସା ଛାଣ୍ଡେଇ ଦେଇ ଉଠିପଡ଼ିଲା ବେଳକୁ ପୁନ ତା ଭାଗକୁ କାନରେ ଗଁଠେଇ ସାରଚ । ବାଟରେ ସନଆ କହିଲା—"ଦେଖିଲୁ କେମିତ ସ୍ୱାଦ ପୁନ ! ଗଦାଏ ବାଟ, ଚାଲ୍ ଗୋଟାଏ ଗାଡ଼ି ଧରିବା ."

''ଗାଡ଼ି ପଛଆଡ଼େ ଠିଆ ହେବା ! ବାଇସ୍କୋପ୍ ଭିତ୍ତିରୁ ସର୍କସ୍ କରିବା ?''

''ଧାତ୍, ଗାଡ଼ି ଖଣ୍ଡେ ଭଡ଼ା କରି ସୁଖରେ ବସି ଘରକୁ ଫେରିବା ନା; ଗ୍ଲଲ୍, ଗ୍ଲଲ୍ ।''

ପୁନି କାବା ହୋଇ ଅନେଇଲା । ସନିଆ ପ୍ରସ୍ତାବ କରୁଚି ଗାଡ଼ିରେ ଚଢ଼ିବା !

''ସେମିତି ଅନେଇଚୁ କଣ ? ଗାଡ଼ି କାହା ପେଇଁ ହୋଇଚି, ମଣିଷଙ୍କ ପେଇଁ ତ ! ଯାହାଠିଁ ପଇସା ଅଛି ସେ ଗାଡ଼ିରେ ଚଢ଼ିବ । ଆଜିକି ପଇସା ଅଛି, ଆଜିକି ମଜା ଉଡ଼େଇବା । ରାସ୍ତାପାଖ ଦୋକାନଯାକେ ଯାଇ, ପେଟେ ପେଟେ ପିଇ, ଘରକୁ ଯାଇ ଥିରି ହୋଇ ଶୋଇବା । କାହାର ଆମେ ଖାଉଁ ନା ଧାରୁଁ ? ଧନିକିଆ କଥା ତ, ସବୁଦିନେ କଣ ଏକାଯୋଗ ପଡ଼ିଥିବ ?''

''ଏମିତି ଆଙ୍ଗୁଳା ଆଙ୍ଗୁଳା କରି ବାଣ୍ଟଯାକ ପଇସା ବିଞ୍ଚି ବିଞ୍ଚି ଯାଉଥିବୁ ସନିଆ ? ତୋର କଣ ହୋଇଚି ? ତୋର କଣ କୁବେର ଭଣ୍ଡାର ? ମତେ ତ ତୋ କଥା କାବା ଲାଗୁଚି ରେ ବାବୁ—!'' ସନିଆ ହସିଲା । କହିଲା—''ଆଜି ମୋର କୁବେର ଭଣ୍ଡାର ସରିଯାଉ, କାଲିକା ଚିନ୍ତା ମୋର । ଆଜି ସାଙ୍ଗରେ ଅଛୁ ତୁ । ତୋ ପାଇଁ ପଇସା କି ଗ୍ଲର୍, ଜାନ୍ଟା ଯଦି ଉଜାଡ଼ି ଦେଇ ପାରନ୍ତି, କେଡ଼େ ସୁଖ ଲାଗନ୍ତା । କଥା କହ ନା, ତୁ ଗ୍ଲଲ୍ ଗାଡ଼ିରେ ବସିବା ।''

ସନିଆ ପାଗଳା ପରି ବକିହେଉଛି । କଣ ତାର ବିଗିଡ଼ିଛି ! ପୁନି ପ୍ରମାଦ ଗଣିଲା । ଖିଆଲ, ଏଇ ବାଇସ୍କୋପ୍ ଘର—ଆଖି ଝଲଝଲ କରି ଉଡ଼ି ପଳୋଉଥିବା ଛବିଗୁଡ଼ାକ—ମୁଣ୍ଡ ବୁଲୋଉଛି, କାନ ଭଁ ଭଁ ହେଉଛି—ସନିଆର ମୁଣ୍ଡ ଝାଙ୍କୁଛି ।

କେତେ ଲୋକେ ବାଇଲାଗିବାକୁ ଏହି ଘରେ ଆସି ଠୁଳ ହୁଅନ୍ତି ।

ବାବୁ-ଜଗତର ବାଇ ଲାଗିଚି ସବୁ ସନିଆକୁ !

ସତକୁ ସତ ଗାଡ଼ିରେ ବସିଲେ । ଟଳି ପଡ଼ିଲାବେଳକୁ ସନିଆ ଦମ୍ଭ ଦେଲା । ପୁନିର ପୃଥିବୀ ଦୋହଲୁଥାଏ ।



## ସତଗୃହଲକ୍ଷ

ପାହାଡ଼ାରୁ ଜଣା ନଦ ସ୍ୱର୍ଜିଗଲା, ଯେପରି କି ନୂଆ ହୋଇ ଆଜି ପୁନର ମନେହେଲା, ତାର ଚହ୍ଲା ସଂସାର ତାକୁ ଭଲ ଲାଗୁଛି । ଏହି ଘର, ଯେତେ ଅଭାବ, ଯେତେ ଅସନା ଆଉ ପଙ୍କ ଏଠି, ସ୍ନେହର ଜାଲରେ ତାକୁ ବାନ୍ଧି ରଖିଛି । ଏହି ମେହେନ୍ତର ସାହି, ସୁଖଦୁଃଖର ଚହ୍ଲା ମଣିଷମାନେ ଏଠି, ଏହି ତାର ସୁଖ । ଯେପରି କି ଯୁଗ ଯୁଗର ମାତୃକୁଳର ପ୍ରାଚୀନ ଆତ୍ମା ସବୁ ସଂସ୍କାରର ଆବରଣ ପିନ୍ଧି ପୁନକୁ ସଙ୍ଗୋଳି ନେଲା । ଏଇଠି ତାର ଘରକରଣା, ସବୁ ଶାନ୍ତି, ସବୁ ଆନନ୍ଦ ଏଇଠି ।

ସରଳ ଗଙ୍ଗରେ ଗ୍ରୀବ ଦମ୍ଭ କରି, ମାଳ ମାଳ କୋଠା ଆଡ଼କୁ ପୁନ ଅନେଇ ରହିଲା । ବାଡ଼ ପଡ଼ିଛି ଥିଲା ନ ଥିଲାଙ୍କର ଦୁଇ ସମାଜ ମଝିରେ । ଥିଲା ଲୋକଙ୍କର ଦଉଲତ ତାର ଲୋଡ଼ା ନାହିଁ । ସେ ସ୍ୱାଧୀନ, କାହାରି ସେ ହାତଟେକିଆ ନୁହେଁ ।

ଅଘୋର ବାବୁଙ୍କରେ ତାର ଓରମାଣ କୁହୁଳି କୁହୁଳି ଜଳିଉଠିଲା । ସେ ବଡ଼ଲୋକ, ସେ ସୁବିଧାବାଦୀ । ନିର୍ଜନ, ନିଗ୍ରହିଆ ଦେଖି ଆପଣାର ସୁଖ ଟିକକ ପାଇଁ ଯାହା ପାରି ତାହା ପାଖରେ ସେ ହାତ ପାତିବ । ଲୋକଗହଣରେ ପୋଷାକ ପିନ୍ଧି, ଗ୍ରୀବ ଫୁଲେଇ, ସେ ଆପଣାର ସମାଜର ଧ୍ୱଜା ଉଡ଼େଇବ । ଆଉ ପଛକୁ ଅନେଇବ ନାହିଁ, ଚହ୍ନିବ ନାହିଁ । କାଲି ରାତିର ବାଇସ୍କୋପ୍ ପାଖ ଘଟଣା ତାର ସାକ୍ଷୀ ।

ଅଦୂରରେ ବଡ଼ ଘର ଦିଶୁଛି । ପଥୁରିଆ କାରାଗାର, ତାର ପହଡ଼ ପଡ଼ିଛି । ଝିପିଝିପି ପାଣି ଝରୁଛି । ଶୀତ, ବରଷାରେ ଥରି ଥରି, ଧନ୍ଦି ଧନ୍ଦି ମଜୁରିଆର ଜୀବନଯାତ୍ରା । ଅଘୋର ତାହା ବୁଝିବ ନାହିଁ । ସେ ଓହ୍ଲେଇ ଆସିବ, ପୁଣି ଘରେ ପଶି କବାଟ କିଳିବ । କି ଥାଏ ତାହା ସଙ୍ଗେ ସାଲିସ୍ କରି ! ହାତବାରିଣୀ ସନିଆର ସୁନ୍ଦର ସେମିତି ସତେ କି ପଛରୁ ଟିପି ଦେଇ ସଳଖେଇଛି ! ବାରମ୍ବାର ପୁନ ସଂକଳ୍ପ କଲା, ସେ ଆଉ ଅଘୋରବାବୁ ଘରକୁ ଯିବ ନାହିଁ ।

ସାମାନ୍ୟ ଗୋଟାଏ ପ୍ରତିଜ୍ଞା । କେବଳ ମନର ଖେଳ; କିନ୍ତୁ ଭାବିଲା ମାତ୍ରେ କେଡ଼େ ଆନନ୍ଦ ଲାଗିଲା । ଆଲୁଅ ଫିଟିଯାଉଛି, ଦିଶୁଛି ଚହ୍ଲାପରିଚ ହାଡ଼ସାହିର ଚେହେରା । ପାଣି, କାଦୁଅ ଜମିଛି । କୁଢ଼ କୁଢ଼ ସଢ଼ାପଚା ଅସନା । ଘୁଷୁରି

ବୁଲିଲେଣି, କୁକୁଡ଼ା ଝିମିଲେଣି । ଏଇ ଭଲ, ଏଇ ଭଲ । ପୁନ ଭାବି ଲାଗିଲା । ସବୁଠିଁ ଗଲା ମିଳେଇ କୁଣ୍ଢେଇ ପକେଇ ଯେପରି ସେ କହିପକେଇବ – "ତୁ ଆମର ।"

ଆଗ ଦାଲ କାମକୁ ଗ୍ଭଲିଲେ । ନିଘା କଲା, ବୋଧହୁଏ ଉଠିବାବେଳ ହେଲଣି । କାଲି କେତେ ରାତିରେ ସେ ଘରକୁ ଫେରିଛି ମନେପଡ଼ିଲା । ଆଜି ସକାଳୁ ବୋଉ ତାର ସୁଧ ଅସୁଲ କରିବ । ଅପ୍ରୀତିକର ଘଟଣାର ଆଶଙ୍କାରେ ଅଳସ ଆନନ୍ଦ ଫସରଫାଟି ଗଲା । ତରତର ହୋଇ ପୁନ କାମକୁ ଗ୍ଭଲିଲା । ସକାଳର ମୁଢ଼ି ଗ୍ଭ' ତାର ଦରକାର ନାହିଁ ।

ଟାଣ କରି ଧୂଆଁପତ୍ର ଟିକିଏ କାନରେ ଗଣ୍ଠି ପକେଇ ନିଷ୍ପତ୍ତି କରିଥିଲା, ସବୁ ଘରକୁ ଯିବ ପଛେ, ଅବିନାଶବାବୁଙ୍କ ଘରକୁ ଯିବ ନାହିଁ । ଖଣ୍ଡେ ଦୂର ନ ଯାଉଣୁ ପ୍ରତିଜ୍ଞା ହୁଗୁଲା ହୋଇଗଲା । ମନକୁ ବାଗେଇ ନେଇ ବିଗ୍ଭରିଲା, କେବଳ ଆଜିକ । ଗୁହାଶୁହା ହେବା, ବାକି ରହିଯିବ ନ ହେଲେ । ମନେ ମନେ ଅଭିନୟ କରି ଗ୍ଭଲିଲା, ଠିକ୍ କେମିତିକା ହାବଭାବ ଦେଖାଇଲେ ଅଘୋରବାବୁ ଗ୍ଭବୁକ ଖାଇବ । ବଳେ ବୁଝିବ, ସବୁଠି ବଡ଼ଲୋକର ବଳ ଖଟେ ନାହିଁ । ନିଜର ବଡ଼ପଣ ନିଜ ଘରେ ।

ଧୀରେ ଧୀରେ କୋଠା ପାଖ ହେବାରୁ ସହଜ ପ୍ରକ୍ରିୟାରେ ମନ ଭିତରେ କେତେ କାଳର ଭାବନା ଗୁରେଇ ତୁରେଇ ହେଲା । ଛାତି ଦୂଲୁକେଇ, ଦେହ ଫୁଲୁକେଇ, ସେହି ପୁରୁଣା ରୋଗ । କୋଠାର ଛୁଇ ତଳେ ପୁନ ଯେଉଁ ମେହେନ୍ତାଣୀକୁ ସେହି ମେହେନ୍ତାଣୀ । ଉପରକୁ ଗ୍ଭହିଁଲା, ଝରକା ଖୋଲା ଅଛି । ଝରକା ପାଖେ ବାଟକୁ ଅନେଇଁ ତପସ୍ୟା କରୁଛି ବଡ଼ଲୋକ ଘର ପୁଅ ଅଘୋର-ବାବୁ । ଚକିତରେ ହସ ଖେଳିଗଲା । ସାଙ୍ଗେ ସାଙ୍ଗେ ଠିଆହୋଇ ପଡ଼ି, ତଡ଼ବଡ଼େଇ ଧାଇଁଲା ସେ ତଳକୁ । ପୁନ ତାର ପ୍ରତିଜ୍ଞା ପାସୋରି ଥିଲା, କବାଟ ପାଖେ ଲେପ୍‌ଟି ରହି ଖୋଜୁଥିଲା କେଉଁଠି ଜଳା ଅଛି ।

କେତେ ପ୍ରଶ୍ନ ଫାନ୍ଦିଥିଲା, ଅପମାନ ଦେବାକୁ କେତେ ପ୍ରକାର ଉପାୟ । କୁଆଡ଼େ ଗଲା ସେ ! କେବଳ ଅଭ୍ୟାସର ଭଉଁରି, ଯନ୍ତ୍ରକର ଜୀବନ । ତାର ଆଗ ନାହିଁ, ପଛ ନାହିଁ ।

ଘର ଘର ବୁଲି, କାମ ସାରି ଘରକୁ ଫେରିଲାବେଳକୁ ସାହିରେ ହାଉ ହାଉ ଲାଗିଛି । ବରଗଛମୂଳେ ସାହିଯାକ ମଣିଷ ଥାଟପଟାଳି । ଗୋଟି ଗୋଟି ହୋଇ ମେହେନ୍ତାଣୀ ଆସୁଛନ୍ତି, ଟୋକେଇ ଥୋଇ ଦେଇ ଅଣ୍ଟାରେ ହାତ

ଦେଇ ଆଁ କରି ଅନେଇଁ ଦେଖୁଛନ୍ତି । ପିଢ଼ି ଉପରେ ହାତକଡ଼ା ପଡ଼ି, ଧସ୍ତହୋଇ ରହିଛି ସନିଆ, ପୁଲିସ୍ ବେଢ଼ିଛନ୍ତି । କଳରବ ଭିତରେ ଗର୍ଜନ ଶୁଭୁଛି, ଇନ୍‌ହାଲସି ଲାଗିଛି ।

ଏ କଣ ହେଲା ! ମୁଣ୍ଡ ବୁଲେଇ ଦେଉଛି, ଗୋଡ଼ ଟଳୁଛି । ଥର ଥର ହୋଇ ଗଡ଼ିଲା ଭିତରେ ଦ ପାଖର ଦ ଜଣ ସ୍ତ୍ରୀଲୋକଙ୍କ କାନ୍ଧରେ ହାତଭରା ଦେଇ, ଶୁଖିଲା ମୁହଁରେ କୁତୁକୁତୁ କରି ପୁନି ଅନେଇଁ ରହିଲା । ପାଟି ଫିଟୁ ନାହିଁ, ପ୍ରାଣ ଶୁଖିଯାଉଛି ।

ସନିଆ ଧସ୍ତପଡ଼ୁଛି ।

ତା ପରେ ?

ଅଜଣା ଭୟ । ଆପଣାର ପ୍ରାର୍ଥଟିକକ କିଏ ସେପରି ତଣ୍ଟିରୁ ଧରି ଚିପି-ଦେଉଛି । ପୁଣି କଳାକାଠ । ସନିଆକୁ ଗାଳି ଦିଆହେଉଛି, ବାଡ଼ରେ କେଞ୍ଚା ହେଉଛି, ରହିରହିକା ବିଧା ଗୁଣ୍ଡା ଠୋ-ଠୋ ବସୁଛି । ମଝିରେ ମଝିରେ ସେହି ଗର୍ଜନ—"କହ, କହ; ଆଉ କୋଉଠି ଲୁଚେଇଛୁ । କହ, କହ—।" ପୁନିକୁ ଲାଗୁଥାଏ, ସନିଆ ଉପରେ ନୁହେଁ, ତାହାରି ନିଜ ଉପରେ ବର୍ଷୁଛି ସବୁ ମାଡ଼, ଗାଳି; କିନ୍ତୁ ସନିଆ ନିଆ କିଛି କହୁ ନାହିଁ । ବେକ ସିଙ୍କି ଚାଳକୁ ଅନେଇଛି, ବେଳେ ବେଳେ ସୁରିଆଡ଼କୁ ଦୃଷ୍ଟି ବୁଲେଇ ଆଣୁଛି । ଅଳ୍ପ ଦୂରରେ ଶାନ୍ତ ହୋଇ ଠିଆହୋଇଛି ଧନୀବୁଢ଼ା । ନାଭିଲା ପିଙ୍କା ଖଣ୍ଡେ ଗେଁଟେବାଉଛି । ଦାଢ଼ିରେ ହାତ ମାରି ବୁଢ଼ାଲୋକର ଥିରୁଥିରୁ ଭଙ୍ଗୀରେ ମୁଣ୍ଡ ହଲେଇ ହଲେଇ ସନିଆ ଆଡ଼କୁ ଅନେଇ କହୁଛି—"କହ—କହ— ।" ବେଳେ ବେଳେ ସନିଆ ରାଗରେ ଫୁଲିଯାଉଛି । ଆଖି ଗାରଡ଼େଇ, ଦେହ କମ୍ପେଇ, ସମସ୍ତଙ୍କୁ ସମ୍ବୋଧନ କରି କହୁଛି—"ଦେଖୁଥା ତୁମେମାନେ, ଯାହା ଜାଣିଥିଲି ସବୁ କହିଲି, ଯାହା ଥିଲା ସବୁ ନେଲେ; ତଥାପି ମନ ଶାନ୍ତ ହୋଇ ନାହିଁ, ମତେ ମାରପିଟ୍ କରୁଛନ୍ତି ।"

"ଫେର୍, ଫେର୍ ପାଟି କରୁଚୁ ? କୋଉଠି ରଖିଚୁ କହିବୁ ନା ଅଉଗୁ ଦେଖିବୁ—"

ସନିଆର ପାଟିରୁ ରକ୍ତ ବୋହିଲାଣି ।

ଆଖିରେ ଲୁହ ପୂରିଯାଇଛି ।

ସେମିତି ଏ କରକୁ ସେ କରକୁ ମୁଣ୍ଡ ହଲେଇ ହଲେଇ ଧନୀବୁଢ଼ା ଉପଦେଶ ଦେଉଛି—"କହ ଦେ ଟୋକା, କହ ଦେ—"

ସନିଆର ମିନତି କରୁଣ ହେଲାଣି—"ମାରିପକା, ଯେତେ ମନ ହଉଚି ମାରିପକା । ଆମେ ତ ଅଛୁଆଁ ମେହେନ୍ତର, ଗରିବର ସାହା କିଏ ହେବ ! ତମର ତ ରାଜ୍ୟ, ମାରିପକା— ।"

କଣ ହେଉଛି ? କଣ ହେଉଛି ଏ ! ମାଡ଼ ବହୁତ ବଳେଇଲାଣି, ଚାରିଆଡ଼ୁ ଖାଲି ହା-ହାକାର । କେଉଁ କେଉଁ ହୋଇ ଲୁହ ବୋହିଯାଉଛି ପୁନି ଆଖିରୁ । ଜାଲଜାଲୁଆ ଦିଶୁଛି । ମନ ହେଉଛି, ଧାଇଁ ଯାଇ ସେହି ପୁଲିସ୍ ଗୋଡ଼ର ଜୋତା ଉପରେ ମୁଣ୍ଡକୋଡ଼ି ଗୁହାରି କରନ୍ତା—"ଥାଉ ବାବୁ, ଥାଉ ଥାଉ— ।"

ମନ ହେଉଛି ।

ପାଦରେ ଗୁରେଇ ହେଇଯାଉଛି ଯେତେ ଅଜଣା ଭୟ ।

ତଣ୍ଟିତଳକୁ ତାଳୁକ ଶୁଖିଯାଉଛି ।

ମାଡ଼ ସରିଲା । ସନିଆକୁ ଘୋଷାରି ନେଇ ସେମାନେ ଚାଲିଗଲେ । ଗହଳି ହୋଇ ଲୋକ ଚାଲିଛନ୍ତି । ପଛେ ପଛେ ଏଁ ଏଁ ହୋଇ କାନ୍ଦି ପୁନି ଗୋଡ଼େଇଛି । କିଏ ଜଣେ କହିଲା—"ହେଇଟି ରେ, ହେଇଟି ଯାଉଚି ପୁନି ।"

ପୁଣି ଭୟରେ ପୁନିର ସାନ ବାହୁନା ଅଟକି ରହିଗଲା । ପଛକୁ ଫେରିଆସି ଆଖି ପୋଛି ପୋଛି ପୁନି ଅନେଇ ରହିଲା ଦୂରକୁ, ସେହି ଲୋକଗହଳିକୁ ।

ଧରି ନେଇଗଲେ ।

ତାର ସନିଆକୁ ସେମାନେ ଧରି ନେଇଗଲେ ।

ଗହଳି ଶୂନ୍ୟ ପଡ଼ିଗଲାଣି । ବାଟର ଲୋକେ ଘରମୁହାଁ ବାହୁଡ଼ିଲେଣି । କେହି ନାହିଁ ଚାହିଁବାକୁ, ଆଖିର ଧାର ନିରେଖି ଦେଖିବାକୁ । କହିବାକୁ—"କିଏ ସେ କାନ୍ଦୁଛି !"

ସନିଆ ଯିବା ବାଟକୁ ଅନେଇ, ମୁହଁରେ ଲୁଗା ଗୁଞ୍ଜିଦେଇ, ପୁନି ଭେଁ ଭେଁ ହୋଇ ବୋବେଇଲା । କଣ ହୋଇଛି, କିଏ କଣ କହୁଛି, କାହାକୁ ଖିଆଲ୍ ନାହିଁ ।

କେବଳ ମନ ରା' ଧରିଛି, ତାର ସନିଆକୁ ଚୋର କରି ବାନ୍ଧି ଧରି ନେଇଗଲେ ସେମାନେ । କେବଳ ସନିଆକୁ ନୁହେଁ, ପୁନିର ପ୍ରାଣ ଭିତରୁ ଚପୁଡ଼ି ଚପୁଡ଼ି ଗୋଟାଏ ଜୀବନର ସବୁ ଅନୁଭୂତିଗୁଡ଼ାକୁ । ଲାଜ ସରମ ନାହିଁ, ଡର ଭୟ ନାହିଁ । ମରମର ସହଜ ଛନ୍ଦ କେବଳ ତାର ଛାତିଫଟା କାନ୍ଦଣାର ରୋଳ ।

"ମଲା ମର ଚଣ୍ଡାଳପଣି, ଲାଜ ନାହିଁ ବସି କାନ୍ଦୁଚନ୍ତି ! ଦେଖ ଖୁଦାଏ ସେ— ! ଆଲୋ ହେ ପୁନ—"

କ୍ରୂର-କଠୋର ମୁହଁ କରି, ମୁହିଁ ପାଖକୁ ମୁହଁ ଆଣି ପାଟି କରୁଚି ଜେମା । କଥାଗୁଡ଼ାକ କେମିତି ଦାନ୍ତ ଚିପି ଚିପି ଫୁଁ ଫୁଁ ହୋଇ କହୁଚି । ଭାଷାରୁ ଧମକ ଝାଙ୍କୁଚି—"ଚାଲେ ଚାଲୁନୁ, ଘରକୁ ଯିବୁ; ଖାଇବୁ !"

ସ୍ୱପ୍ନ ଭାଙ୍ଗିଗଲା । ଶୁଖିଲା ବାଲିବନ୍ତ ଉପରେ ଝାଞ୍ଜି ପବନ ପରି ଘାଏଁସ୍ ସ ଉଡ଼ିଲା । ଆଖି ରଗଡ଼ି ରଗଡ଼ିକା ଲୁହ ଶିଙ୍ଘାଣି ପୋଛି, ପୁନ କହିଲା--"ଏଁ !" ଖଟେଇ ହୋଇ ଜେମା ହାଙ୍କିଲା—"କେଁ— । ମଲା ମର, ପାଟି କରି କରି ମୋର ହଂପା ଲାଗିଲାଣି, ଯୁଗେ ପଡ଼ିକେ ଏ କହୁଚନ୍ତି 'ଏଁ !' କ-ଲୋ, ତୋ କୁ ହାକି କରି ପୁଲିସିଙ୍କ ଘରେ ପୂରେଇବୁ, ଏଠିଟାରେ ବସି ଯୁଆଙ୍କ କରୁଚୁ ?"

"ପୁଲିସି ?" ଧଡ଼ପଡ଼ ହୋଇ ପୁନ ଉଠିଲା । ଭୟଗ୍ରସ୍ତ ଦୃଷ୍ଟିରେ ଚାରିଆଡ଼କୁ ଚାହିଁ ଦେଇ, ମା ମୁହଁକୁ ଅନେଇଲା ।

"ପୁଲିସି ନୁହେଁ ଆଉ କଣ କାଳସାପ ? କୁଆଡ଼ର ଓଲମି ଟୋକା, ଉଠ୍ ଉଠ୍ । ପୁନ ଘରକୁ ଚାଲିଲା । ଜେମା ଫୁସୁରୁ ଫୁସୁରୁ ହେଲା । କହିଲା—"ଓହୋ, ଠାକୁରେ ରକ୍ଷା କଲେ । ଟୋକାଟାକୁ ମୁଁ ଚିଡ଼ୁଥିଲି ସିନା, ହେଲେ କଣ ହବ ଗୁଣ ଦେଖେଇ ଦେଇଚି ଆଜି । ଏତେ କେହିଲେ ଏତେ ମାଡ଼ ମାରିଲେ, ପଦେ ପାଟି ଫିଟେଇଲା ନାହିଁ । ଦୁ'ଥର ମୋ ପେଟ ଓଲଟି ପଡ଼ିଲାଣି; କହିଲି, ମା'ହୁପୁରୁ ମୋ ପୁନ ନ ଆସୁ । କାଲେ ଯଦି କହିଦେଇଥାନ୍ତା ପୁନିକ ମୁଁ ଦେଲି, ତା ଦେଲି; ଗାଈଁ ଜନା ଆସି ମାଡ଼ିବସିଥାନ୍ତେ ଆମ ଘରେ । ଜନ୍ମା ପଦେ କଥା ! ଯେତେ କହିଲେ ହେଲା ନାହିଁ । ସିଠିରେ ଗୁମ୍‌ଗାମ୍ ବସିଲେ ପାଟି ଅଧୁ କରିବେ, କେଇଟା ଲୋକ ଅଛନ୍ତି ସଂସାରରେ କହିଲୁ ? ଧନ୍ୟ କହିବ ତା ବାପ ମା'ଙ୍କୁ, ଏମିତି ପୁଅ ଜନ୍ମ କରିଥିଲେ ଯାହା ! ଏଠି ତ ଏତେ ମାଡ଼ରେ କହିଲା ନାଇଁ, ଆଉ କଣ ପଚିଲେ ଥାନାରେ କହିବ ! ହଇଲୋ ପୁନ ?"

କହିବାକୁ ଭୁଣ୍ଡରେ ଭଷା ନାହିଁ । ଦାନ୍ତର ଜାବ ଫିଟେଇଲେ କୋହ କାନ୍ଦଣା ବାହାରିବ । ବରକୋଳି ପରି ଲୁହ ଝଡ଼ୁଚି । ମୁଣ୍ଡ ହଲେଇ ହଲେଇ ପୁନ ବୁଝେଇଦେଲା—"ନାଇଁ ।"

"କହିବ ନାହିଁ ବୋଲି ତ ମୁଁ କହୁଚି । ତୁ କାଇଁ କାନ୍ଦୁଚୁ ? ଲୋକେ କହିବେ, ସ୍ୱାଙ୍କର ତାଙ୍କର ଖବର ନେଇ, ବ୍ଲେକମାଲ୍ ରଖିଚନ୍ତି । କଏ ଭେଦୁଆ

ଚନ୍ଦ୍ରଦେବ: ଏବା ପଦବୋଉ କିଭଳି ତ ସହଜେ ଘଣ୍ଟା ଧରି ହବ ନାହିଁ । ଫେର, ପୁଲିସ୍ ଆସିଲେ, ନବରଙ୍ଗ ଲାଗିବ । ଉପରେ ଉପରେ ଯାଉଚ, ଯାଉ; ଆମେ କ ଯାଏ ? ସେ ତ ବାମରୁ ଫେରି ବାଟେ ବାଟେ ଚୋରି କରି ଧରାପଡ଼ିଲା, ଆମେ କୋଉ ଦେଖିବୁ ନା ଜାଣିବୁ !''

ସତେ ତ ! କଣ ହେଲା କଥା ? ମୁଣ୍ଡ ଗୋଳମାଳରେ ପୁଣି କେମିତି ପାସୋରି ଯାଇଥିଲା । ଭାବିଥିଲା, ଆଗରୁ କେବେ ଚୋରି କରିଥିଲା ବୋଲି ସନିଆ ଆଜି ଧରାପଡ଼ିଲା । ଜେମାକୁ ପଚାରିଲି । ବାଟରୁ ଫେରି ସନିଆ କୁଆଡ଼େ କେଉଁ ରୂପା ଅଳଙ୍କାର ଦୋକାନ ପାଖେ ଛକିଥିଲା । ଦୋକାନୀ ଟିକିଏ ଘର ଭିତରକୁ ଯିବାରୁ, ଟଙ୍ଗା ହୋଇଥିବା ତାରକସି ଜିନିଷରୁ ପୁଳାଏ ଧରି କାନିରେ ବାନ୍ଧିଦେଇ ଥିରି ହୋଇ ବାହାରି ଆସୁଥିଲା । ଦୋକାନୀ ବୁଝିପାରିଲା । ସନିଆ 'ଚଲି ପରି ଚୁ' ହାତକୁ ଆସି ପୁଲିସ୍ ଧରିଲେ । ଗୋଳମାଳ ଲାଗିଲା ।

ରୂପା ଅଳଙ୍କାର !

କାହା ପାଇଁ ଆଣୁଥିଲା ?

ପୁଣି ପ୍ରାଣ ଭିତରୁ କାହିଁକି ତୋଫାନ ମାଡ଼ିଆସୁଛି । ଡର ହେଲାଣି । ମୋ ମନର ମନକଥାର ଜବାବ୍ ଦେଲା ପରି ଜେମା କହିଲା—''ଅଣ୍ଡିରପୁଅ କଣ ରୂପା ଅଳଙ୍କାର ନାଇବାକୁ ଆଣୁଥିଲା ? ବଜାରରେ କଣ ଆଉ ଜିଆସ୍ ଦରବ ନାହିଁ ଯେ, ଚୋରି କରି ବସିବ ତା ପାଇଁ ? ଖାଲି ସେଇ କଥା ଭାବି ଭାବି ତ ମୋ ପେଟ ଓଲଟି ପଡ଼ୁଥିଲା. ଆଉ କାହିଁକି ? ଅବ୍ବା ହେଉ ଏଇ ଦୁଆରବନ୍ଧରେ ବସିଥାଏଁ ଆଉ ଭାବୁଥାଏ, କେତେବେଳେ ମତେ ଡକରା ପଡ଼ିବ କି ଆମ ଘରକୁ ଯିବେଇ ଦେଇଡ଼ିବେ । କେତେ ଭାବନା ଆସୁଥାଏ ମୁଁ କଣ ଆଖି ବୁଜିଚି ? ଫେର୍ ହେଲା ସେ ଦିନ ସେ ବାବୁଘରେ କିଏ ଚୋରି ପଶିଥିଲେ ଯେ, ଟଙ୍କା ପଇସା ବୋହି ନେଇଗଲେ । ବସିଥାଏଁ, ସେ ରଡ଼ନିଆଁ ପଦବୋଉଟା କଅଁ ଲେଇ କହିଲା କି, ଯିବ ନାହିଁ କି ? ତମ ସନିଆ ପରା ଧରାପଡ଼ିଚି, ସମସ୍ତେ ଯାଉଚନ୍ତି । କଣ ମାଲ କୋଉଠି ନୁଚେଇଚି ଖୋଜା ଲୋଡ଼ା ଲାଗିଚି ! ମୋ ବ୍ରହ୍ମତାଳୁରେ ନିଆଁ ନାଗିଲା । ମୋ ତୁଣ୍ଡ ତ ସମ୍ଭାଳି ନେଲି, କିଏ କାଳେ କଣ ଭାବିବ ? ପଦବୋଉ କହିଦେଲା ସିନା, ଏମିତି କହିଲାବାଲା କିଭେରେ ହାଡ଼ ଅଛୁ ଯେ, ମୋ ପାଖରେ ଠିଆ ହବ ? ମେ· ଆଗରୁ ଚାଲିଗଲା, ନହିଲେ କଣ ଯେ ହୋଇଥାନ୍ତା ! ଦେଖିଲି, ଗହଳି ବଢ଼ିଚି, ମୁଁ କାହା ପରି କାହିଁକି ଘରେ ବସନ୍ତି ? ଗଲି ସେଇଠୁ ଯାହା ହଉ, କେ.ଟି କଲ୍ୟାଣ ତା ଧୈର୍ଯ୍ୟକୁ । କାହାର ନାଁ ସେ ଧରି ନାହିଁ ବଗୁର୍—''

ପୁଣି ପୂନର ମନକଥାର ଜବାବ୍ ଦେଲା ପରି ଜେମା କହୁଲାଗିଲା, ହୁଁ ମ, କଣ ଫାସୀ ହବ ତାର ? ଯେବେ ହେଲେ ତ ଫେରବ । ଅଣ୍ଡିର ପୁଅ, କଣ ମାଇକିନା ଝିଅ ହେଇଚି ମାରି ହେଇଯିବ ! ସେଇ ସତ୍ୟାନାଶିଆ ଧର୍ମବୁଢ଼ା ପାଇଁ ନା—ନଇଲେ କଣ ସେ ଏମିତି ହେଇଥାନ୍ତା—"

କେମିତି ଜେମାର ମନ ଆଜି ତରଳି ତରଳି ବୋହିଯାଉଛି ସନିଆ ପ୍ରତି; କିନ୍ତୁ ଜେମାର ମନସ୍ତତ୍ତ୍ୱ ବୁଝିବା ପାଇଁ ପୂନର ଅବସ୍ଥା ନ ଥିଲା ।

ଘର ଭିତରେ ଫୁସୁ ଫୁସୁ କରି ଜେମା କହିଲା ପୂନକୁ—"ବୁଝିଲୁ ଝିଅ, ପଦ୍ମରଦନ ମତେ ସେ କହୁଥିଲା, ମାଉସୀ, ପୂନର ଅଲଙ୍କାର ନାହିଁ, ରଇ ଥା ମୁଁ ଆଣିଦେବି । ସେଇଥିପାଇଁ ତ ମୁଁ ଅଧେ ଗ୍ରୁନଆଁ ଲୋ ।"

ପୂନ କଣ ଘରକୁ ଗଲା । ଆଉ ତାର ଦମ୍ଭ ନାହିଁ ।

ଜେମା କହିଲା—"ଥିର ଥିର ଲୋ, ବଡ଼ ପାଟିରେ କାନ୍ଦ ନା, ପଦବୋଉ ଶୁଣିବ କାଳେ—"



୫

## ଅଠରକଣ

ଝିପି ଝିପି ବରଷା, ହାଉ ହାଉ ପବନ । ଶୀତ ମିଠି ମିଠି ।

ବରଷା ଋତୁ ।

ଯେତେବେଳେ ଶରତ ମଜୁରିଆ ଆସେ ଯେ, ମଶିଷକୁ ଧରେ ଧରେ ବନ୍ଦରକୁ ନେବାକୁ ସବୁ ଉପାୟ କର୍ତ୍ତି ହାର ବି ସନ୍ତୁଷ୍ଟ ନ ହୋଇ ଆପଣା କରଣିକୁ ମାଠିବାକୁ ବୈଦ୍ୟ ଋଚନ୍ତୁ ନୂଆ ବିଧାନ, ଶରତଙ୍କୁ ଧରେଇ ନୂଆ ମହଜ ଦେଖିବ ବୋଲି ।

ଧର୍ମ, ଦାଲିମୂଳ, ଜର, ଜାଣ ।

ଭଙ୍ଗା ପଲ୍ଲ ପିଣ୍ଡାରେ ଭୁଙ୍କିର କାଙ୍କିଣ ।

କାନ୍ଥ ପଡ଼ୁଛି, ଛାତ ଗଳୁଛି, ଚୁଲିରେ ପାଣି । ହରଣ । ଦଳଟିଏ ଗଲେ ପୁରଟିଏ ।

ଯେତେବେଳେ, ସହରର ବଡ଼ ବଡ଼ ଘରେ ବିଜୁଳିବତୀ ଜଳେ, ଚଳଚାଳା ରୀତ ବୋଲେ, ଗଦାର ଆପତ୍ତିଶୂନ୍ୟ ନରମ ଦେହ ଉପରେ ଆଉଜି ପଡ଼ିଥିବା ଅଳସ ଦେହରେ ସୁଖର ଚିନ୍ତା ଚହଟେ । ରୁ'ର ବାମ୍ପ, ଖାଦ୍ୟର ବାସ୍ନା, ସିଗାରେଟର ନେଳ ଧୂଆଁ ସବୁ ଆହୁତି ହୋଇଯାଏ, ମନେପଡ଼େ ଅଦେଖା ବନ୍ଧୁର ବାଣୀ, ଅଜଣା ଅସମାପିକା ହୃଦର ରାଗିଣୀ, ମୂକ ଦେହରେ ନୀରବ ଅନୁଭୂତ ଫେଙ୍କିଦିଏ । ଆରାମ୍ ।

ଭୋଠା ଉପରେ ଆଇ ଶୁଖିଲା-ପାଟଳରେ ଡ଼େଙ୍ଗେଇ, ପଦାରେ ବରଷାର ଦୃଶ୍ୟ ଦେଖି ଦେଖି, ଅଠାଙ୍ଗିଆ ଝେଞ୍ଜିଙ୍କ ପରି କଳ୍ପନା ବଢ଼ି ବଢ଼ି ଯାଏ ଉପରକୁ ଉଠେ—ପକୋଡ଼ିକୁ ଖେଦେଇ, ଝର୍ଣ୍ଣସ୍ଥଳରୁ ସ୍ୱର୍ଣ୍ଣରେଖା, ତାସ ପଙ୍ଗତରୁ ବନ୍ଧୁର ଭୂଙ୍ଗମୁଦଣ ।

ବଜାରୀ ଜନ ଲେଖେ—ବରଷାର ବନ୍ଦନା ।

କେତେ ଅସରନ୍ତି ଦରିଆର ଅଯାଚିତ ଢେଉ ପରି ଆଜିର ଦିନଟି ଆସିଥିଲା । ଅରଣ୍ୟ କଦଳୀପତ୍ର ପରି ମୋଡ଼ି ମୋଡ଼ି ହୋଇ ସେ ଫାଙ୍ଗପାଡ଼ି ହୋଇ ଯାଉଛି ସଞ୍ଜର କଳା ଅନ୍ଧାରକୁଡ଼ରେ । ଘଟନା ତ ଆଣିଥିଲା କେତେ—ଭକ୍ତାବାଲାକୁ ଜବିମୋଳଆ ହୋଇଛି, କୃଷ୍ଣବେଣୀର ଛଦ୍ମ ଓଲି ଉପାସ ପୂର୍ଣ୍ଣ ହୋଇଛି, କଲର

ହଳିଆକୁ ମାରିଛି ଚମ୍ପା ସାପ । ଅନ୍ୟ ଦିନକର ବଢ଼ିଲା ଘଟଣା ସେ, ସହର ଖବରକାଗଜ ନାହିଁ ନୁହେଁ ।

ଖବରକାଗଜ ପାଇଁକି ମଧ୍ୟ ଘଟଣା ମିଳୁଛି—ବଡ଼ ସହରରେ ସ୍କୁଲଠିଁ ବକ୍ତୃତା ଆଜିର ଗୋଟାଏ ଦିନରେ । ସ୍ଥାନେ ଜଣେ ଶୈଳେନ୍ଦ୍ର ବାବୁ ସହରର ଛାତ୍ର-ସମସ୍ୟା ଆଲୋଚନା କରି ଭାଷଣ ଦେଉଛନ୍ତି—ସେମାନଙ୍କ ଶିକ୍ଷା, ଉନ୍ନତି ଓ ସ୍ୱାସ୍ଥ୍ୟ ପାଇଁ କେଉଁ ଜାଗାରେ ବନ୍ଧି ବସେଇ କିପରି ଯୋଜନାର ଶୁଭ ଦିଆଯାଇପାରେ, ସେ ବିଷୟ ସେ ବଡ଼ ମର୍ମସ୍ପର୍ଶୀ ଭାଷାରେ ବୁଝାଇ ଯାଉଛନ୍ତି—ଖବରକାଗଜର ସାମ୍ନା ପୃଷ୍ଠାର ଅଧେ ପାଇଁ । ବଡ଼ ସହରର ବଡ଼ ଅଧିକାରୀଙ୍କ ଯହିଁର ଆଜି ଦ୍ୱିପ୍ରହର ଭୋଜିରେ କେତେ ଜଣ ପ୍ରସିଦ୍ଧ, କେତେ ଜଣ ଖ୍ୟାତନାମା ଓ କେତେଜଣ ବିଶିଷ୍ଟ ଲୋକଙ୍କର ଏକାଠି ଠା’ ଚିତ୍ର ପଡ଼ିଥିଲା । ସେହି ବିଖ୍ୟାତ ଖବର ଘଟିଛି ଓ ବାହାରିଛି । ଅତଏବ ଏ ମାଟିର ଦୁନିଆରେ ଅନେକ ଘଟଣାହିଁ ଘଟିଛି ।

କିନ୍ତୁ ବଡ଼ ଘରେ ସେପରି କୌଣସି ଆଉ ଘଟଣା ନାହିଁ । ଅଜି ଯେପରି କାଲି ସେପରି, ଏକା ସ୍ଥିରପଣ । ସେଠି ଅଚଳ ପ୍ରଶାନ୍ତ ସମୁଦ୍ର ।

ଦାଣ୍ଡର ବୈଠକଘରେ ଦୁଇ ଜଣ, ମାନମୟୀ ଓ ଅଘୋର । ମାନମୟୀ ଭିତର ପାଇଁ ପ୍ରସ୍ତୁତ । ପ୍ରସାଧନ ଓ ବେଶର ପରିପାଟୀରେ କେଉଁଠି ଟିକିଏ ଖୁଣ ନାହିଁ । ଅଘୋରବାବୁ ବାହାରର ପରି । ବର୍ଷାତି ବୁଟ୍‌ ଜୋତା, ବର୍ଷାତି କୋଟ୍‌, ଟର୍ଚ୍ଚ ଲାଇଟ୍‌ । ରେଡ଼ିଓରେ ସନ୍ଧ୍ୟାର ଗୀତ, ଦୂର ବିଜୁଳିର ଝଣଝାଣ୍‌ । ଅଘୋରବାବୁ ଠିଆ ହୋଇପଡ଼ିଲେ । କହିଲେ, "ବୃଥା ସମୟ ଯାଉଛି ।"

"ରଇ ଥା ଭାଇ, ଏମିତ କୁକୁରମାଛି ଲାଗିଲା ପରି କାହିଁକି ହେଉଛ ? କୁଆଡ଼େ ଯିବ ?"

"ଘରେ ବସି କଣ କରିବ ? ତୁ ବା ମତେ ଅଟକେଇବୁ କାହିଁକି ? ଏକୁଟିଆ ଲାଗୁଛି ତ ଯା ବୋଉ ପାଖେ ବସି କଥା ଶୁଣୁଥିବୁ । ଏଠି ଚୁପ୍‌ଚାପ୍‌ ବସି କଣ ତତେ ଭଲ ଲାଗୁଛି ?"

"ନାହିଁ, ତମେ କହ; ବର୍ଷାରେ ପଦାକୁ ନ ଗଲେ କଣ କ୍ଷତି ହେବ—"

ଅଘୋରବାବୁ ଦୁଇ ପାହୁଣ୍ଡ ବାହାରି ହସି ପକେଇଲେ । କହିଲେ, "ତତେ ଯେପରି ଘର ଭିତରର ଜଗତ ଏତେ ଭଲ ଲାଗେ, ମତେ ଭଲ ଲାଗେ ବାହାରର । ମୋର ବାଟରେ ତୁ କାହିଁକି ବାଧା ଦେଉଛୁ ? ହେଇ, ପଦାକୁ

ଦେଖ୍, ସନ୍ତ ଡାକୁଛ, ସଡ ଡାକୁଛ । ସବୁ କଥା ପଛରେ ଫୋପାଡ଼ି ଦେଇ, ନିର୍ଜନରେ ନଈକୂଳେ ଠିଆ ହୋଇ ସେପାରିର ସେ ଆଲୁଅକୁ ଅନେଇ ଠିଆ ହେବା ସୁଖ—କଣ ବୁଝିବୁ ତୁ ଡହିରୁ ?

ସହରର ଆଲୁଅ ଝିଲ୍ ଝିଲ୍ ଦିଶୁଥିବ, ପିଠିଆଡ଼େ ସହରର କୋଳାହଳ, ସ'ନ ମଣିଷର ସ୍ୱପ୍ନ ଅଗଣିତ ମାଟି ଦୀପାଳି ପରି । ସାମ୍ନାରେ ଥିବ ନିର୍ଜନ ସ୍ଥିରର ଅଜଣା ମୋହ, ଗୋଟାପୁଞ୍ଜା ବିସ୍ମୟ— ।"

ଅଘୋରବାବୁ ଆବୃତ୍ତି କଲା ପରି ଗାଇ ଯାଉଥିଲେ । ବାଧା ଦେଇ ମାନମୟୀ କହିଲା – "ଉହୁଁ—ହେଲା ନାହିଁ ।"

"କଣ ହେଲା ନାହିଁ ?"

"ତାଳ ରହିଲା ନାହିଁ । ତୁମ ତୁଣ୍ଡରେ ନିତାନ୍ତ ବିଚ୍ଛନ୍ଦ ଶୁଭୁଛି ।"

"ଛିକ୍—" ! ଅଘୋରବାବୁ ପଦାକୁ ମୋହିଁଲେ । ପଛଆଡ଼ୁ ମାନମୟୀ କହିଦେଇ ଗଲା—"ତମର ପ୍ରକୃତିକୁ ଦେଖିବାକୁ ହେଲେ, ଦେହସାକ ବାହ୍ନା ଅଜାଡ଼ି ଦେଇ ପଦାକୁ ବାହାରିବା ଦରକାର ହୁଏ ସବୁବେଳେ ? ଏତେ ଶସ୍ତା ସେ !"

ଅଘୋରବାବୁ ଅନ୍ଧାରରେ ମିଶିଗଲେ । ଉପର ମାହାଲାକୁ ଚଢ଼ିଯାଇ ମାନମୟୀ ଝରକା ପାଖେ ତାଙ୍କ ଟର୍ଚ୍ଚଲାଇଟ୍ ଆଲୁଅର ବାଟ ନିଘା କଲା । ତା ପରେ ଦୀର୍ଘଶ୍ୱାସ ପକେଇ ବସିପଡ଼ିଲା । ପୁଣି ତଳକୁ ଓହ୍ଲେଇ ଯାଇ ହାର୍ମୋନିଅମ୍ ଖୋଲିଲା ।

ବୋଉ ଆସିଲେ । ପଚାରିଲେ—"ସେଇ କାହିଁ ?"

"କାହିଁ, ମୋର କାନରେ ଗଣ୍ଠି ପକେଇ ନାହିଁ ତ—"

"ମାନେ—"

"ମତେ କାହିଁକି ପଚାରି ପଚାରି ବିରକ୍ତ କରୁ ତୁ କହିଲୁ ? ସେ ତାଙ୍କର ବରଷାରେ ବନ୍ଧୁ ସଙ୍ଗୋଳା ଗଲେ, ମୋ ମନାରେ କଣ ରହନ୍ତେ ?"

"ତ ଏଥିପାଇଁ ତୁ ବା ଏତେ ଛଳ କରୁଚୁ କାହିଁକି ? କେବେ— ବୁଲିଯିବାକୁ ଏ ପାଗ ଠିକ୍ ନୁହେଁ । ବର୍ଷା ଦିନ । ଗାଡ଼ି ନେଇଛି ତ ?"

"ନା, ପୂଲକଣ—"

ବୋଉ ହସିଲେ । କହିଲେ—"ତାଙ୍କ ବଇଁଶଙ୍କ ଲକ୍ଷଣ । ସବୁବେଳେ ଚଞ୍ଚଳ । ବାନ୍ଧଲେ ବି ରହିବେ ନାହିଁ । ତା ବାପା କଣ କଲେ ଶୁଣ୍ । ରୁ ସେତେବେଳେ ପେଟରେ ଥାଉ । ବରଷା ହେଉ, ପ୍ରଚଣ୍ଡ ଶୀତ ହେଉ, ଦଣ୍ଡେ ବୁଲି ନ ଗଲେ ଭାତ ହଜମ ହେବ ନାହିଁ । କଣ କଲେ ନା—"

ବୋଉ ଅଗଡର କାହାଣୀ ବାଢ଼ିବସିଲେ । ବର୍ଷା ରାତ୍ର ସୁକୃତକୁ ମନ୍ଥି ପକେଇ ଲହୁଣୀ ଉଠାଏ । କଥା ମଝିରେ ଖିଅ ଭୁଲିଯାଇ କହିଲେ—"ଏ କଟ, ଧଡ଼୍ ଧାଡ଼୍ ପକୋଉଛୁ; ତୋଫାନ ଉଠେଇଲଣି ନା କଣ ! ଅଘୋର କୁଆଡ଼େ ଗଲା ? ଘର ଅମାନଆଟ—"

"ତୁ ଘରର ବାହାଘର କଣ ଦେ ବୋଉ । ଘରେ ଗପିବାକୁ, ଗପ ଶୁଣିବାକୁ ଲୋକ ଥିଲେ, ମଣିଷ ପଦାକୁ ଯାଏ ? ନବୁପମା ଗଲା, ମନ ଦେଲା ନାହିଁ । ପୁଣି ଖୋଜ ଖୋଜ ବାଛୁବାକୁ ବଢ଼େ ବେଳ ଯିବ । ମୋର ଭାଉଜେ ଉ ଦରକାର । ନ ହେଲେ ମତେ ଘର ଏକୁଟିଆ ଲାଗୁଛି—"

ଉତ୍ସୁକ ହୋଇ ସେ ବୋଉ ମୁହଁକୁ ଅନେଇ ରହିଲା । ବୋଉ କେବଳ ହସିଲେ । ବାହାରେ ପୁଣି ଧଡ଼୍ ଧାଡ଼୍ ହେଉଛି, ଦୁମ୍ ଦୁମ୍ କୋଡା ଝଡ଼ । ବୋଉ କହିଲେ—"ଅଘୋର ଆସିଲା କି ?"

"ସେ ତ ବର୍ଷାରେ କୋଡା ମାଡ଼ ଯାଇଛନ୍ତି—।"

ପଦାକୁ ପାଟି ଶୁଭିଲା—"ଅଘୋର, ଅଘୋର—"

"ସୁରବାବୁ ଆସିଲେ ପରା—"

"ଭିତରକୁ ଆସିପାରେଁ କି ?—" କବାଟ ଠେଲି ଭିତରକୁ ପଶି ସୁରବାବୁ କହିଲେ—"ନମସ୍କାର ।"

ମାନମୟୀ କହିଲା—"ଓ, ତମେ ! ଘର ତ ନାହିଁ । ଅଚ୍ଛା, ତୁମେ ପଚାରିଲ, ଭିତରକୁ ଆସିପାରେଁ କି; ଉତ୍ତର କିଏ ଦେଲା ?" ସୁରବାବୁ ଠିଆ ଠିଆ । ତାଙ୍କର ଅପ୍ରସ୍ତୁତ ଭାବ ଦେଖି ବୋଉ କହିଲେ—"ଏଗୁଡ଼ା କଟ ଲୋ—କୋଉ ରାଜ୍ୟରେ ଅଛୁ ? ସୁର କଣ ଭିତରକୁ ଆସିବାକୁ ଅନୁମତି ମାଗିବେ ? ବସ ସୁର ।"

ମାନମୟୀ ରୁମାଲ ଉଡ଼ୁଆଳରୁ ହସୁଥାଏ । କହିଲା—"ଅଚ୍ଛା, ତମ ମତରେ—"

ବାଧା ଦେଇ ବୋଉ କହିଲେ—"ଏମିତି ତମେ ତମେ କଣ ହଉଚ ? କଣ ମନେ ମନେ ଭାବୁଛ ଭାରି ଭଲ ଶୁଭୁଛି, ନା ବଡଙ୍କୁ ବଡ ପିଲାଟିଏ ହୋଇ ଯାଉଛ ! କହନ୍ତୁ ଆପଣ ?"

ମାନମୟୀ ଜିଭ କାମୁଡ଼ିଥିଲା । ତା ପରେ ଝଟ୍‌କିନା ଉଠି, ମୁହଁ ବୁଲେଇ ନେଇ କହିଲା—"ବେଶ୍, ଆପଣ । ଆପଣ ବର୍ତ୍ତମାନ ବସନ୍ତୁ । ଆପଣ ମା'ଙ୍କ ସାଙ୍ଗରେ ଗପ କରନ୍ତୁ, ମୁଁ ଟିକେ ଆସେଁ ।"

ସେ ଉଠି ଗୁଲିଗଲା—ବୋଉ କହିଲେ—"ଦେଖିଲ, ଏତିକ ଛଳ ତା ଦେହରେ ! ଆଜିକାଲିକା ପିଲାମାନଙ୍କୁ ଆକଟିବାକୁ ବସିଲେ ତାଙ୍କର ରାଗ ହୁଏ; ନା କଣ କହୁଚ ସୁର ?"

"ଆଃ, କଣ ହେଲା ! ଆପଣ କଣ, ତୁମେ କଣ—?"

"ନା, ନା; କଥାଟା ହସି ଉଡ଼େଇଦେବା ମୋଟେ ଉଚିତ ନୁହେଁ । ଶାସ୍ତ୍ରରେ ଯେଉଁ ଆଚ୍ଛର ଲେଖାଅଛି, ତା କଣ ମିଛ ? ତୁମେ ଦେଖ—"

ସୁରବାବୁ ଦେଖୁଥାନ୍ତି, ତୁମେ ଆପଣ ନେଇ ଦ୍ୱନ୍ଦ୍ୱ, ତା ପରେ ଶାସ୍ତ୍ର, ତା ପରେ ଆଚ୍ଛର—କାଉଲା ବର୍ଷାପାତ ପାଇଁ ମୋଟେ ସୁସ୍ୱାଦୁ ନୁହେଁ; କିନ୍ତୁ ଏ ସବୁ ବିଷୟରେ ତାଙ୍କ ଧୈର୍ଯ୍ୟ ଅମାପ ।

ରମା ତୁମେ ଆପଣ ବିଷୟରେ ନିଷ୍ପତ୍ତି ଦେଉଥାନ୍ତି ।

ଚନ୍ତା ନାହିଁ, ଦକ ନାହିଁ, ଅଭାବ ନାହିଁ, ସମୟର ମୂଲ୍ୟ ନାହିଁ ।

ତେଣୁ ତାଙ୍କର ସୁସଜ୍ଜିତ ବୈଠକଖାନାରେ ତର୍କର ବିଷୟବସ୍ତୁ ତୁମେ ନା ଆପଣ ।

"ଦେଖ, ଗୋଟାଏ କଥା ଲୋକେ ବାରମ୍ବାର ଭୁଲିଯାନ୍ତି । ତୁଣ୍ଡରୁ ଯାହା ଥରେ ବାହାରିଯାଏ, ଆଉ ତାକୁ ଫେରେଇ ଆଣି ହୁଏ ନାହିଁ—।"

ମାନମୟୀ ଆସୁଥିବ କାଳେ । ସୁରବାବୁ କହିଲେ—"କଣ ହେଲା, ଖାଲି ଗୋଟାଏ ସମ୍ଭାର ତ—"

"ସବୁ ସମ୍ଭାର ଶାସ୍ତ୍ରରେ ଅଛି । ସମ୍ଭାର ଭାଙ୍ଗିଲେ ଅପବିତ୍ରତା—"

ସୁରବାବୁ ଚମକି ପଡ଼ିଲେ । ପୋଷାକ ତଳେ ତଳେ ଝାଳ ଫୁଟିଯାଉଛି । ଆଶଙ୍କାରେ ମୁହଁ ଶୁଖେଇ, ଅପେକ୍ଷା କରି ବସି ରହିଛନ୍ତି । ମନ ଭିତରେ ବିଜୁଳି ବେଗରେ ଚନ୍ତା ।

ଅନନ୍ତର ମାନମୟୀ ଆସିଲା । ହାତରେ ଚା' । କହିଲା—"ଆପଣ, ଆପଣ ଚା' ?"

"ଖାଲି ଚା' କଣ ଆଣିଲୁ ଲୋ—"

"ସମ୍ବଳ, ଆବଶ୍ୟକ ହୋଇପାରେ ।" ପୁଣି ସୁରବାବୁଙ୍କ ଆଡ଼କୁ ଚା' ପାତ୍ର ବଢ଼େଇ ଧରି ମାନମୟୀ କହିଲା—"ଆପଣ ଚା' ?"

ପାପୁଲିରେ ପାପୁଲି ଧରି ଦେଇଛି । ଉଷୁମ୍ ନରମ ପାପୁଲି । କଥା କହୁଛି, ତୁମେ ଆପଣ ନାହିଁ । "ଧାତ୍, ଆପଣ କଣ ?" ସୁରବାବୁ ଧୀର ହୋଇ କହିଲେ ।

ଜିତିଲା ଚାହାଣିରେ ବୋଉ ଆଡ଼କୁ ଅନେଇ ମାନମୟୀ କହିଲା—"ଶୁଣୁଚ, ବୋଉ, ଆପଣ ତାଙ୍କୁ ଭଲ ଲାଗୁ ନାହିଁ । 'ତୁମେ' ନ କହିଲେ ଚା ନେବେ ନାହିଁ, ଅଡ଼ି ବସିଛନ୍ତି ।"

ବୋଉ ହସିଦେଲେ । ସୁବିଧା ଦେଖି ମାନମୟୀ କହିଲା—ବୋଉ ତୁମକୁ ଅପେକ୍ଷା କରିଥିଲା, ଝିଅ ପାଇଁ ପାତ୍ର ଖୋଜିବାକୁ କହିବ ବୋଲି ।

"ସତେ ନା !"

"ସତେରେ ସୁର । ଜାଣୁଥିଲ ଯଦି ଭଲ ପାତ୍ରଟିଏ ମିଳନ୍ତା—"

"ତେବେ ଆସନ୍ତା ବୈଶାଖ ଜ୍ୟେଷ୍ଠରେ—" ମାନମୟୀ କହିଲା ।

"ବାହାଘର କଥା ଏମିତି ହାଲୁକା ନୁହେଁ ଯେ, ହସରେ ଉଡ଼େଇ ଦେଉଛୁ । ହଉ ସୁର, ମୁଁ ଯାଏଁ; ଆଉ କେତେବେଳେ ଆସନ୍ତ ଯଦି ଟିକିଏ, କଥାବାର୍ତ୍ତା ହୁଅନ୍ତେ ।" ବୋଉ ଉଠିପଡ଼ିଲେ । ସୁରବାବୁ ଉତ୍କଣ୍ଠିତ ହୋଇ କହିଲେ—"ଅଘୋର କେତେବେଳୁ ଗଲାଣି ?"

ବୋଉଙ୍କୁ ଶୁଣେଇ ମାନମୟୀ କହିଲା—"ଆସୁଥିବ ଅବଶ୍ୟ—" ସୁରବାବୁଙ୍କୁ ସିଧା ଚାହିଁ ଥରି ଥରି କହିଲା—"ବସ, ଯେମିତି କାହିଁ ହେଉଛ—"

ବୋଉ ଚାଲିଗଲେ ।

ସୁରବାବୁ ପାଖକୁ ଘୁଞ୍ଚି ଆସିଲେ । ମାନମୟୀ କହିଲା—"ଛୁଇଁଆର ସସ୍କାର ଲାଗିଲେ—"

□ □

# ଅଣଙ୍ଗାଣ

ପୂଜ ବସିଥିଲା ।

ସମସ୍ତେ ହେଲକୁ ମନେପଡ଼ିଲା ଗ୍ରାମୀଙ୍କୁ—ସତେ ତ, କହୁଥିଲେ ସେ ଆସିବେ । ସନିଆ ଧର ହୋଇଗଲା, କେତେ କାନ୍ଦଥିଲା ସେ । ବୁଦ୍ଧି ହଜିଗଲା । ତା ପରେ ତାର କରୁଣ ବ୍ୟକ୍ତିତ୍ୱଟାକୁ ଓଲଟେଇ ପୋଲଟେଇ, ଗଡ଼େଇ ତଡ଼େଇ କେତେ ଯେ ବିପ୍ଳବ ! ହା-ହାକାର ନିରାଶା । ମା'ର ସାନ୍ତ୍ୱନା, ମୁଣ୍ଡ ଆଉଁସା, ଅଜସ୍ର ପ୍ରତିଜ୍ଞା ତାକୁ ବଳ ଦେଇପାରି ନାହିଁ । ବାରମ୍ବାର ସେହି ଦୃଶ୍ୟଟା ଆଖି ଆଗରେ ନାଚୁଛି—ସନିଆକୁ ଧରି ନେଇଗଲେ ।

ପୂଜାର ଶୋକରେ କେମିତି କଡ଼ବି ଧରିଛି ।

ଅସରାକୁ ଅସରା ଲାଗିରହିଛି । ଅନ୍ଧାର ଘରେ ଦୀପ ଜଳୁଛି ।

କାଲୁ ବେଳ ଆସି ପହଞ୍ଚିଗଲା । ଯେଉଁ ସୂକ୍ଷ୍ମ ଦେହଯନ୍ତ୍ର ମୁହୂର୍ତ୍ତିକୁ କସି ବେଳାରୁ ଉପୁଜାଇପାରେ ସୁବିଧାବାଦୀ ଅଭିଳାଷ—ଥରି ଉଠିଲା ସେ । ଘଡ଼ିକେ ସବୁ ଆନ ହେଲା । ରକ୍ତବିନ୍ଦୁର ସ୍ପନ୍ଦନରେ ତାର ପ୍ରତୀକ୍ଷାର ଆକୁଞ୍ଚନ ପ୍ରସାରଣ । ଲୁହରେ ଧୋଇ ସଜ ଘାସ ପରି ମନ ପ୍ରସ୍ତୁତ ହୋଇଛି । ଦୀପ ଜାଳିଲା, ପୂଜ ସଜାଡ଼ି ହେଲା । ତରତରରେ ରନ୍ଧା ବସେଇ ଦେଇ ମା'କୁ ଉଠେଇ ଦେଲା । ପଦାକୁ ଆସିଲା ।

ସେମିତି ଝଞ୍ଜାଣି ମାଡ଼ ଶୁଭୁଛି । ସେମିତି ସବୁଦିନ ପରି ସାହିରୁ ହସ କାନ୍ଦ କଳିଆ । କଳା ପାଣି ପରି ଧାର ଧାର ହୋଇ ଅନ୍ଧାର ଗଳି ବୋହି ଯାଇଛି । ବୁଢ଼ା ବୁଢ଼ୀ ମଣିଷ ଗୁଲୁଛନ୍ତି ।

ଏହି ମୁହୂର୍ତ୍ତରେ ସନିଆ ମନେ ନାହିଁ । ସବୁ ଯାଇ ରହିଯାଇଛି ଖାଲି ତାର ଭେକ ସ୍ମୃତିପଥରେ । ପୁରୁଷ ପିଲା ସେ—କେବଳ ସେତିକ ।

ମୁହୂର୍ତ୍ତିକେ ସେ ରୂପ ବଦଳେଇଛି । ସନିଆ ବୋଲି ଥିଲା, ଅଘୋର ହୋଇ ଅଛି । ଉଦ୍ଦାମ ପ୍ରତୀକ୍ଷାରେ ପରିଚୟର ଦରକାର ନାହିଁ ।

କିଏ ସବୁ କେବେ କହୁଥିଲା ସେମାନେ ଗରିବଙ୍କ ଶତ୍ରୁ, ସାହି ଭାଙ୍ଗି ଦେବାକୁ ପାଞ୍ଚ ଯୋଡ଼ୁଛନ୍ତି । ପୁଲିସରେ କହି ସମସ୍ତଙ୍କି ଘେର କରୁଛନ୍ତି । କିଏ କହୁଥିଲା ପ୍ରକୃତରେ ଅଳୁଆଁ ହରିଜନ ସେମାନେ—ଦୌଲତଖାନାର କଂସେଇ ।

ନଢ଼ ବନର ଚନ୍ଦ୍ରା ଆଜ ମନେ ନାହିଁ, ଏ ବେଳରେ ମନେ ନାହିଁ ।

କେମା ଉଠି ଝୁପୁରୁ ଝୁପୁରୁ ହେଉଛି, ଦମ୍ଭ ଦେଉଛି—ଏତେ ଦୁଃଖ କାହିଁକି ଲୋ ଝିଅ, ସଜନୀଆଲୁ କେଉଁଦିନ ରଖିବେ ? ଫେର୍ ଆସିବ ନାହିଁ କ ? ଏ ଅର ଆଇଲେ— ।

ମା ମନ । ଝିଅ ଝୁର ଝୁର ହାରେସିବ କାଳେ—ଆହା !

ପୁନର ଭଣ୍ଡାରଜଳାରେ ଯାଉଛି ।

ମୁହୂର୍ତ୍ତି ଦୁଲୁକ ଦୁଲୁକି ପାଖକୁ ଆସୁଛି । ଗ୍ରନ୍ଥ ଭିତରେ ତାର ପରିଚୟ । କାହାର ଆଲୁଅ ଏ ବାଟେ ! ଝେଣ୍ଟିକାଣ ମାରିଲା । ଛନକ ପାଇଁ ଆପଣା ଉପରେ ଆଲୁଅ ଢାଳି ପୁଣି ଅନ୍ଧାର କରିଦେଲା ।

ଅସ୍ପଷ୍ଟ ହୋଇ ଦିଶୁଛି ତାର ଆକୃତି—ପିଣ୍ଡାତଳେ ହେଙ୍କ ସେଠି ଠିଆ ହୋଇଛି ।

"ପୋଖରୀପାଣି ଆସେଁ, ବୋଉ—" ପୁନ କହିଦେଇ ଚଲି ।

ମୁହୂର୍ତ୍ତି ଓଟାର ନେଲା । କହିଥିଲି, ସେ ଆସିଛି ।

□ □

# ପଚୃଶ

ଚତୁର୍ମାସ୍ୟା ସରଥାଏ । ଶୁଖିଲା-ପାଚିଲା ପାଗ ।

ବରଷାରେ ଗାଧୋଇ ସାରି ବଡ଼ ସହରର ଅଣିରେ ଶିଶିରଆ ସକାଳ ଝରରେ ମୁକୁଳାବାଲ ଶୁଖୋଉଛି । ସୁନ୍ଦର, ସଜ, ପ୍ରଫୁଲ୍ଲ । ଖରାର ଧାସେ ଧାସେ ତେଜଉଠୁଛି ସେ । ମାଉଁସିଆ ହୋଇ ଗୋଲ ହୋଇ ତାର ମୁହଁ । ସେଠି ଥିଲାବାଲାର ଦାମ୍ଭିକତା ।

ପରିଷ୍କାର, ପରିଚ୍ଛନ୍ନ । ଦମ୍ଭ କୋଠାର ଚକ୍‌କଣ ଗ୍ରୀଳ । ବଡ଼ ସଡ଼କର ଛେଚୁପିଟା ପିଠି । ଗାଡ଼ି, ଘୋଡ଼ା ଚହଲମଚ୍ଛ ହୋଇ ମହାନଗରୀ ।

ନଈକୂଳେ ବୁଲୁଥାଏ ଜଣେ ବଙ୍କା ବୁଢ଼ାଲୋକ । ଘଡ଼ିଏ ଘଡ଼ିଏ ଟହଲ ମାରୁଥାଏ । ତା ପିଠିଆଡ଼େ ସରୁ ସରୁ ହାତ ଦୋ'ଟି ଛକ ପଡ଼ିଯାଇଛି । ହାତ ପାପୁଲି ଥରୁଛି । ମୁଣ୍ଡ ହଲାଏ, ଦାଢ଼ି ହଲାଏ । ସହରର ନଉଛଣା ମେହେନ୍ତ୍ରର ସାହୁ ଆଡ଼କୁ ଥରେ ଥରେ ଅନେଇଁ ଅନେଇଁ ଠିଆ ହୁଏ । ଅଣ୍ଟା ବାଙ୍କ ହୋଇଯାଏ । ଦାଢ଼ିର ଦାଢ଼ ଉଠୁର୍କି ଯାଇ, ନିଷ୍ଫଳ ହୋଇ ଶୂନ୍ୟରେ ଆର୍କି ହୋଇ ରହେ । ଧମାବୁଢ଼ା ଭାବେ ।

କାହାର ଘୁଲଟା ଦ ପାଖରୁ ନଈପଡ଼ି ମଝିରୁ ଭଙ୍ଗି ଦାନ୍ତ ନିକୁଟିଛି, କାହାର କାନ୍ଥ ଭୁଷୁଡ଼ିଛି, ଭିତରର ଗୁମର ଦଶୁଛି—ଦୁଆରେ ହେଁସ, କତରା; ଘୁଲରୁ ଫଡ଼ା ଫଡ଼ା କନା । ଛୁଣ୍ଡା ପିନ୍ଧା ହାଡ଼-ଚମଡ଼ାର ସ୍ତ୍ରୀଲୋକ ଗର୍ଜନ ଗ୍ରୁଡ଼ି ଧାଇଁଯାଉଛି ଲଙ୍ଗଳା ଅରଣା ପିଲା ଗୋଡ଼େ ଗୋଡ଼େ ।

ଛୁଟ ଲୁଗା । ଖୋଲା ଦେହ । ଥଳଆ ଗଦା ଗଦା ।

ଧକେଇ ଧକେଇ କାମୁଡ଼ା କାମୁଡ଼ି ହୋଇ ଧପାଲିଛନ୍ତି କୁକୁର ପଲ । ଯେଉଡ଼ ପଡ଼ୁଛି ।

ଘୃଷ୍ଟୁସ୍ଥ ସଣର ସଣର ।

ସେଠି ବ ମଣିଷ ରହନ୍ତି, ଅବିକଳ ମଣିଷ ତ ।

କନ୍ତୁ ସେମାନେ ସେଠି ଖାପନ୍ତି ନାହିଁ ।

କାହୁଁ ଅଇଲେ ଖେଞ୍ଚଡ଼ ଗ୍ରହଣୀ ପର ।

ଘୂଅ କଢ଼ା ମଇଲା କଢ଼ା ଲୋକେ ।

ତଥାପି ତ ମଣିଷ ! ଧନୀବୁଢ଼ା ଦେଖେ—ଯାହାଙ୍କୁ ସେ ଆପଣାର କରି ଆକୋଳ ନେଇଥିଲା, ଏକାଠି ଦିନ କଟେଇଥିଲା, ସୁଖରେ ଦୁଃଖରେ ଭାଗୀ ହୋଇଥିଲା । ଆଜି ବଡ଼ଲୋକର ହୁକୁମ୍, ତେଲିଆ ମୁଣ୍ଡର ନକ୍ସଭିି ଯେ, ବସା ଭାଙ୍ଗିବାକୁ ପଡ଼ିବ । ଅବିନାଶବାବୁ ଜମିର ମାଟି କିଣି ନେଇଛନ୍ତି, ଡେଙ୍ଗୁରି ପିଟା ହୋଇଛି । ମେହେନ୍ତରର ସାହି ଉଠିବ, ନାକଧରାପୁର ନୂଆ ହେବ ।

ତ ସଙ୍ଗେ ସଙ୍ଗେ ଉଠିଯିବ ତାର ସାନ ଟୁଙ୍ଗୀଟି । ପୁଣି ଆଉ କେଉଁଠି ଘୂରି ଚଳେ ଗ୍ରୁଉଣି ପକେଇବ—କେଉଁ ଅଚହ୍ନା ଅପନ୍ତରା ସେ ସ୍ଥଳୀ । ଅଜଣା, ଅଶୁଣା ।

ସେଠି ହୁଏ ତ ମଇଳାକୁଡ଼ର ଉଷୁମିଲିଆ ବୋତକା ଗନ୍ଧ ନ ଥିବ, ଶୁଭୁ ନ ଥିବ ମଶାଣିମୁହାଁ ଅହରହ ପଟ୍ଟାଶଙ୍କର ହରିବୋଲ, ହରିବୋଲ । ସେଠି ଏ ଅଦ୍ଧ'ାଉଳିଆ ନ ଥିବ ହୁଏ ତ । ଏ ଦାରିଦ୍ର୍ୟ, ମଣିଷର, ତାର ବସତର ।

କିନ୍ତୁ ବୁଢ଼ାକାଳେ ଆଉ ଯୌବନ ଆସିବ ନାହିଁ । ଅସୁନ୍ଦର ପୁରୁଣା ଛବି ଆପଣାର ହୋଇଥିଲା । ଆମୁସରୁ ଫାଳେ ଏହି ମାଟିରେ ମିଶି ରହିଲା । ଅଜଣା ନୂଆ ଗ୍ରୁଉଣୀରେ ପୁରୁଣା ଜୀବନଟା ଖାଲି କଲବଲ ହେବ । ବୁଢା ହାଡ଼ରେ ନୂଆ ମାଟି ନେସିଦେଲେ ଝଡ଼ି ପଡୁଥିବ ବାରମ୍ବାର ।

ଗାଡ଼ି ପେଲି ପେଲି ମେହେନ୍ତରେ ଚାଲିଛନ୍ତି, ଗ୍ରୁଷ୍ଟୁଣୀ, ଟୋକେଇ ବୋହି ମେହେନ୍ତାଣୀ । ଧନୀବୁଢ଼ା ବାଟ ଓଗାଳେ । ବାରମ୍ବାର କହେ—"ଶୁଣିଲଣି ନା—!"

ବୁଝାଏ, ମନାଏ; କିନ୍ତୁ କାମିକା ଲୋକ ପାଟି କରି କରି ଚାଲିଯାନ୍ତି ।

ସବୁ କଥା ଭଣ୍ଡାରଜଲା ବାଟେ ଉଡ଼ିଯାଏ ।

ପଛରୁ ଚାହିଁ ଅକ୍‌କା ହୋଇ ଧନୀବୁଢ଼ା ଅଟକି ରହେ ।

କିଣ ସେ ଚାହିଁଥିଲା—ଏହି ଅଚ୍ଛୁଆଁ ମଜୁରିଆ ଏକାଠି ହୋଇଥାନ୍ତେ, ମେଣ୍ଟ ବାନ୍ଧି ଆଟ ଗଡ଼ିଥାନ୍ତେ ଆପଣା ଦାବୀ ପାଇଁ । ଛପର ଉଡ଼ି ଯାଉଛି, ଘର ଚାଲିଯାଉଛି, ସାବକ ମାଟି; କିନ୍ତୁ ଲୋକଙ୍କ ସୁଚ୍ଛିବାଘୀ ବିଶ୍ୱାସ ହେଲେ ନାହିଁ ବି ।

ଭାବେ, ସେମିତ ଏମାନେ । ନଡ଼ିଆଦନିଆ ମୁଣ୍ଡ, ପର ପାଇଁ ଯାହାଙ୍କ ଜନମ । ପର କୁହାରେ ପାଣି ବାଡ଼ୋଉ ବାଡ଼ୋଉ ଦିନ ବୋହିଯିବ । ନିଜ ପାଇଁ ଭାବିବାକୁ ଉର ନାହିଁ ।

ଅଶିଣ ପୂଜା ଆସୁଛି । ଗସ୍ତାରେ ନୂଆ ମଣିଷ । ମଣିଷର ନୂଆ ଆଶା, ନୂଆ ପୋଷାକ । ସହରରେ ହୁଲସ୍ଥୁଲ ପକେଇବାକୁ ଦେଖା ଆସିବେ । ବର୍ଷକର ଶ୍ରେଷ୍ଠ ପର୍ବ । ଲୋକେ ଭୋଗ କରିବେ । କଲ୍ପନାକୁ ଡେଙ୍ଗ ଧରି ପରର ଭୋଗ ଦେଖି ଖୁସି ହୋଇଥାନ୍ତି ନାକଧରିପୁରି । ଡେଙ୍ଗୁରି ପଡ଼ୁଛି, ଡହ ଛାଡ଼ିଯିବାକୁ ପଡ଼ିବ ।

ଧନୀବୁଢ଼ା ମନେ ମନେ ଅଭିମାନ କରେ—କଣ ହେବ ଭାବି ଭାବି ? ଏମାନେ ମାନିବେ ନାହିଁ କି ଶୁଣିବେ ନାହିଁ । ଆପଣା ସ୍ୱାର୍ଥ ବଞ୍ଚେଇବାକୁ ମଣିଷ ଯେଉଁ ବାଡ଼ ବୁଜିଛି, ଏମାନଙ୍କ ଆଖିରେ ସେ ଶାସ୍ତ୍ରର ନିୟମ । ହାତର ଶିକୁଳି, ଗୋଡ଼ର ବେଡ଼ି ଯେପରି କି ଜନ୍ମଗତ ଅବୟବ !

ତଥାପି ସେ ପାଟିକରେ—“ଶୁଣିଲଣି ନା, ତମକୁ ତଡ଼ିଦେବେ । ତଣ୍ଟିଆ ମାରି ତଡ଼ିଦେବେ । ଭୁଇଁ କୁଆଡ଼େ ତାଙ୍କର, ତୁମ ବସା କୁଆଡ଼େ ସେଠି ଅଲଆଗଦା । ଓଲେଇ ଦେବେ, ସଫା କରି ଦେବେ । କଣ କରୁଛ ତୁମେ ସେଥିପାଇଁ ?”

ପାଇଖାନା ପାଖେ, ମଇଳା ନାଳି ପାଖେ, ଲୋକଗହଳି ଭିତରେ, ପାନ ଦୋକାନ ଆଗରେ—ଜଳେଇ ଲାଗିଥାଏ ସେହି ଆନ୍ଦୋଳନ ଧନୀବୁଢ଼ା ।

ଧୀରେ ଧୀରେ । ଟୁପ୍ ଟୁପ୍, ଫୁସ୍ ଫୁସ୍ । ଅଳପ କହେ, ଲୋକଙ୍କୁ ଭାବିବାକୁ ଛାଡ଼ିଦିଏ । ବହିଷ୍କୃତ ହୀନ ସାଧାରଣ ଚେହେରା ଉହାଡ଼ରେ ଆତ୍ମଗୋପନ କରି ବୁଲି ଲାଗିଥାଏ ବିଦ୍ରୋହର ଆତ୍ମା ।

ଲହୁ ଲୁହ ଜୁଡ଼ୁବୁଡ଼ୁ ନିରୁଜା ଜୀବନର କାହାଣୀଟି ତାର ଲମ୍ବି ଆସିଛି ଯେପରି କି ଠିକ୍ ଏହିପରି ମୁଣ୍ଡିମାରିବା ପାଇଁ । ସଂଘର୍ଷ ଡାକ ଦେଇଛି । ଆପଣାକୁ କଲେ—ସେ ପ୍ରସ୍ତୁତ ତ ?

ଦେଖେ ତାର ଦରିଦ୍ର ଆୟୁଧମାନଙ୍କୁ—ଗରିବଙ୍କ ଦଳ, ଆଶାକଲ୍ପନା ଥମ୍ଭି ଯାଇଥିବା ମଣିଷଙ୍କ ଗୋଷ୍ଠୀ । ସେଠି ଯୋଜନା ପାଇଁ ମଗଜ ନାହିଁ । ପ୍ରତିରୋଧ ପାଇଁ ଦମ୍ଭ ନାହିଁ ।

ବଳ ନାହିଁ, ଉଦ୍ଦେଶ୍ୟ ନାହିଁ, ଏକତା ନାହିଁ, କିଛି ନାହିଁ, ତଥାପି ଯୁଦ୍ଧ କରିବାକୁ ହେବ ।

ଧର୍ମବୁଢ଼ା ଚେଣ୍ଡୁ ବୁଲବନ୍ଲିକା ମନ୍ତ୍ରି ବାଣୀଦଏ ।

ବେଳ ଗଲା । ଧୀରେ ଧୀରେ ଚହଳ କୁହୁଳିଲା । ସ୍ଥାନ ସ୍ଥାନ ଦଳ ହୋଇ ଆଲୋଚନା ପଡ଼େ । ଯୁକ୍ତି ନାହିଁ, ବ୍ୟାଖ୍ୟାନ ନାହିଁ, କେବଳ ହାଉ ହାଉ । ଆହୁରି ଥରେ ଅବିନାଶବାବୁଙ୍କ ଢେଙ୍ଗୁରି ପିଟା ହୋଇଗଲା । ଓଳଟଲେ ଲୋକ ପୁଞ୍ଜା ପୁଞ୍ଜା । କିଏ କଣ୍ଠାସର୍ମା କରୁଛି, କିଏ ଦଇବକୁ ସାକ୍ଷୀ ମାନୁଛି । କିଏ ଆସ୍ଫାଳନ କରି ବୀରତ୍ୱ ବଖାଣୁଛି — ଛେଚ ଦେବ, କୁଟି ଦେବ, କାଟି ଦେବ ।

□ □

## ଏକାବନ

ନଈ ବନ୍ଧେ ବନ୍ଧେ ଅନ୍ଧାର ରାସ୍ତା ଗ୍ଲଯାଇଛୁ ମଶାଣି ଅପନ୍ତ୍ରୀରଙ୍କୁ, ସେଇଟି ସେ ହଜିଛୁ । ଗଛ ଉଚ୍ଚ୍ ଆଳରେ ତାର ଅବସ୍ଥିତ । ଅବଯ୍ୟୁବ ଆରୋପି ହୁଏ ନାହିଁ, କେବଳ ବୁଝି ହୁଏ—ସେ ଅଛି । ଛୁନ୍ ଗ୍ଭନ୍ ପଢ଼ି ରହୁଥାଏ ସେମିତ । ଆଶା, ଆକାଙ୍କ୍ଷାରେ ତାର ଶୀତଳ ବାଲକଣା ଦୂରରୁ ଜରେଖୁଥାଏ ସହରର ଛଇଛଟା । ଅନ୍ଧାରର ପାଠ । ଜୀଅନ୍ତା ମଣିଷଙ୍କ ଇନ୍ଦ୍ରିୟ ଅନୁଭୂତରେ କେବଳ ଭୟର ଗ୍ଭଜ । ପ୍ରେତର ବସା, ହାଡ଼ ଖପୁରର ଖଣି । ଆଖିଦରଶା ମଙ୍ଗଳ ଯେଉଁଠି ସତ୍ତ୍ୱ ହକେଇଛୁ—ସହରତଳ ମଶାଣି ।

ସେହି ଆଡ଼େ ପୁନ ଗ୍ଲଥାଏ । ମଶାଣିର ଭୟଠୁ ବଳ ନଗ୍ରହିଆ ନଗ୍ରେଲା ସଙ୍କେତସ୍ଥଳର ମୋହ । ଓଟାଶ ହୋଇ ଗ୍ଲଛି । ବାଁ ଡାହାଣେ ଗଛ ଉପ୍ରୁ ଗଛ ପଛକୁ ରହିଯାଉଛି—ଥିଲ ଲୋକଙ୍କ ବହ୍ୱଳ ଦୃଷ୍ଟିରେ ଯେଉଁଠି କେବଳ ନ ଥିଲ ମଣିଷଙ୍କ ବିକୃତ ଗ୍ଭଇ । ଶିଥିଳ ମନର ଅଲଗ୍ ଖିଅରେ ଅଡ଼ୁଆ ହୋଇ ଲ୍ଗି ରହେ ଯେଉଁଠି ପଶ୍ଚିଛି ଡର ସୂଚନା । କେଉଁଠି କଣ ହଲ୍ଲ ପଶ ଦଶୁଛି । କଣ ଖସ ଖସ ହେଲ । ନ ଥିଲର ଅଦେଖା ହାତର କରାମତ—ସେ ଅସୁନ୍ଦର, ସେ ବିଭତ୍ସ, ସେ ଭୟ ।

ଲୋକେ ସେଠିକ ସଂସାର ଗୁଟେଇ ଆସନ୍ତି, ସେ ଗ୍ଲଛି ସଂସାର ପାତିବାକୁ । ଅସନ୍ତି ସେମାନେ ହୃଦୟ ଉଜାଡ଼ି, ନିଷ୍ପନ୍ଦ ହୋଇ ବନ୍ଧନ କଟେଇବାକୁ । ସେ ଗ୍ଲଛି ସଜୀବ ମରମର ସ୍ପନ୍ଦନରେ ଟଲମଟଲ ହୋଇ ।

ମୁହୂର୍ତ୍ତିକର ଶିଳ୍ପୀ—ସ୍ରଷ୍ଟାପଣରେ ଗ୍ଣୀ——ତାର ଜୀବନ ପ୍ରଚୁର । ଅଘୋରବାବୁ ଆସିଲେ । ଅନ୍ଧାର ତାଙ୍କ ଭଦ୍ରତା ବଞ୍ଚେଇଛି । ହାତର ଟର୍ଚ୍ଚଲାଇଟ୍ ସତର୍କ ଷିପ୍ରତାରେ ଆବିଷ୍କାର କରିନେଲ, ବାଟ ସଫା ଅଛି ।

ମଶାଣି ଜାତ ମାନେ ନାହିଁ । ସମାଜର ଶିଙ୍ଖଳ ସେଠି ଚିଟିପଡ଼ି ଙ୍କାହିଁ ବାଲରେ ହକେ । ସେ ଭଦ୍ରତା ମାନେ ନାହିଁ, ଶିଷ୍ଟାଗ୍ରର ବାଛେ ନାହିଁ ।

ସେହି ମଶାଣି ପଦାର ଗୃଧ୍ରଗନ୍ଧବୋଲା ପବନରେ ମିଶିଥିଲ ଜୀଅନ୍ତା ଦେହର ସୁବାସ । ମୂକ ଗ୍ଭଇ ଶୁଣିଥିଲେ ଜୀଅନ୍ତା ହସର ଶବ୍ଦ । ଶୀତଳ ବାଲର ଜଡ଼ତାରେ ବିଚ୍ଛୁରିତ ହୋଇ ପଡ଼ିଥିଲ ତାରୁଣ୍ୟର ଚପଳତା ।

ମରଣର ଅନ୍ଧାରଘରରେ ଜୀବନର ଦୀପ ଉଲୁସି ଉଲୁସି ଜଳିଥିଲ । ମଶାଣି ହୋଇଥିଲ ଯୌବନର ତୀର୍ଥ ।



## ବାବନ

ମେଣ୍ଢା ମେଣ୍ଢା ଲୋକ, ପଞ୍ଝା ପଞ୍ଝା ଲୋକ । ମୁହଁରେ ଶାନ୍ତ ନାହିଁ, ଆଖିରେ ଶଙ୍କା । ଅବିନାଶବାବୁ କୋଠା ଉପରୁ ଦେଖନ୍ତି । ହାଡ଼ସାହିର ଅରଣା ମଣିଷ ଜମେ ଭାରୁଛନ୍ତି; କିନ୍ତୁ ସେଥିରେ ସେ ବିସ୍ମିତ ହୁଅନ୍ତି ନାହିଁ, ବିରକ୍ତ ହୁଅନ୍ତି ।

ସେମାନଙ୍କ ମୁହଁରେ ଗାରତ୍ୱ ନାହିଁ, ସ୍ଥିର ଧୈର୍ଯ୍ୟ ନାହିଁ । ମୁହୂର୍ତ୍ତିକର ଉତ୍ତେଜନା, ବଳେ ନିଭିଯିବ । କେବଳ ଗୋରୁଗୋଠର ଏକତା, କୁକୁର ପଲର ନୁହେଁ । ସେ ମେଣ୍ଢରେ ନାହିଁ ବେଗ କି ଗତି । ମାଡ଼ ଆସିବ ନାହିଁ, କାନ୍ଥକୁ ଆଉଜି ଆଡ଼େଇ ହୋଇ ରହିବ—ଶୈଳେନ୍ଦ୍ର-ଅବିନାଶଙ୍କ ଗୃପ ପଡ଼ିଲେ ବଳେ ଖଣ୍ଡ ବିଖଣ୍ଡ ହୋଇ ଫାଟିଫୁଟି ଯିବ । ଏ ବିଶ୍ୱାସ ଦମ୍ଭ ଦିଏ ।

ତଥାପି ଅବିନାଶବାବୁଙ୍କ ମନରେ ଏ ଅସ୍ୱସ୍ତି ।

ଘରେ ବି ମନ୍ତ୍ରଣା ବସିଥାଏ । ରମା କହିଲେ—"କଣ ତୁମେ ସବୁ କରୁଛ, ଏତେଗୁଡ଼ାଏ ଟଙ୍କା ପାଣିରେ ପଡ଼ିବ ନା ?"

"କିଏ କହୁଚି ?"

"କହିବ ଆଉ କିଏ ! ତୁମର କାଢ଼ ତ ବେଶ୍ ଜଣେଇଁ ଜଣା । ବେଉସାଟି ଆରମ୍ଭ କରିଦେଲ, ଅଇଗ୍ଲା କେଁ ଦେଲକୁ ନାହିଁ ! ସମସ୍ତେ ଡରରେ ଛୁନଆଁ ହେଇଯାଉଚି !"

ଅବିନାଶବାବୁ ହସିଲେ । କହିଲେ—"ଆମେ ଯଦି ଡରୁଛୁଁ ବୋଲି କହୁଚ, ତୁମେ ନିଜେ କଣ କରୁଚ କରୁନା—" ରମା କହିଲେ—"ମୁଁ ଯଦି ଅଣ୍ଡିରପୁଅ ହେଇଥାନ୍ତି, ଯାହା କରିବାର କରିଥାନ୍ତି ଯେ ! ଆମ ବାପା ଅଜା ରଇତଙ୍କ ମେଲି ବହୁତ ଦେଖିଛନ୍ତି; ଦେଖି ଲୁହା ଜାଣି ପାଣି ଦେଇଛନ୍ତି । ତମ ପରି ଗାଲରେ ହାତ ଦେଇ ବସି ଭାଳେଣି କରି ନାହାନ୍ତି ।"

ମାନମୟୀ ତୁନି ହୋଇ ବସି ବୋଉକୁ ଅନେଇଁଥାଏ । ଭାବୁଥାଏ, ବୋଉ ଯଦି ପୁରୁଷ ହୋଇଥାନ୍ତା ! ଅଘୋରବାବୁ ବୋଉର ବକ୍ତୃତା ଉପଭୋଗ କରୁଥାନ୍ତି । ଏମିତି ବେଳେ ବେଳେ ତାର ତେଜ ଝଲସି ଉଠେ, ଆଭିଜାତ୍ୟର ଗୌରବରେ ସେ ଦୁଇଗୁଣ ଫୁଲିଯାଏ । ଅଘୋରବାବୁ ସମ୍ମାନିତ ହୁଅନ୍ତି ।

ଅବିନାଶବାବୁ ଶାନ୍ତ ହୋଇ କୈଫିୟତ୍ ଦେଉଥାନ୍ତି—"ରହ ଥା, ତୁମେ ବୁଝ । ଡରିବା କାହାକୁ ? ଥାନାରେ ଖବର ଦିଆ ହୋଇଛି, ସେମାନେ ସତର୍କ ଅଛନ୍ତି । ବେଶି ଗୋଳମାଳ କଲେ ଅଣ୍ଡା କରିବାକୁ ପ୍ରଚୁର ଶକ୍ତି ଅଛି, ଚଳେଇବାକୁ ଲୋକ ଅଛନ୍ତି କିନ୍ତୁ ହଠାତ୍ କରିଯିବ କଣ ? ତୁମେ ଭାବ ।"

"ଭାବିଲି ବେଳକୁ ମୁଁ । ନ ହେଲେ ଆଉ କିଏ ଭାବିବ ? ହଉ, ନାକରେ ତେଲ ପକେଇ ସ୍ଥିର ହୋଇ ସବୁ ବସିଥାଅ, ମୋର କଣ ଯାଉଛି ? ଭଗାରି ବଳେ କହୁବେ, ଯେ ଲୁ ଧନ ବୋଲି ଦିନ ସବୁ ଭାଏଁ ଭାଏଁ ଗଲା, କୋଉ ଗିରିମାଳ ହେଉଚ ! ହାଁସହାଁସିଆ ପଣରେ କଣି ପକେଇଲେ ସବୁ, ସରଗକୁ ସିଢ଼ୀ କଲେ, ଶେଷରେ ଫୁସ୍—"

"ଓଃ, କିଛି ବୁଝ ନାହିଁ, ଖାଲି କହିଲେ କଣ ହେବ ? ସେମାନେ ମେଳ କରୁଛନ୍ତି, କରିବା ବି କଥା । ଥରେ ବସିପଡ଼ିଲେ ମଣିଷ ଉଠିବାକୁ ମନ କରେ ନାହିଁ । ଯା' କହିଦେଲେ କେହି ଘର ଛାଡ଼ି ପଳାଏ ନାହିଁ । ଖଣ୍ଡେ ଖଣ୍ଡେ ଗୁଳିଆ ଯୋଇଦେଲେ ଜମି ଆପଣାର ହୋଇଯାଏ ନାହିଁ । ଏ କଥା ଯେତେ ବୁଝେଇଲେ ସେମାନେ ବୁଝିବାକୁ ନାରାଜ । ଆଇନ ଆମ ପଟେ, ଆମର କାଗଜପତ୍ର ଅଛି, ଆମେ ମାଲିକ୍; କିନ୍ତୁ ସେ କଥା ବୁଝୁଚି କିଏ ? ତୁମେ କହୁପାର, ମକଦ୍ଦମା କର—ସେଥିରେ କଣ ଅଳ୍ପ ପଇସା ସରିବ ! ରହ, ଥଏ ଧର; ତା ପାଇଁ ଅନ୍ୟ ବ୍ୟବସ୍ଥା କରିବା, ଉଚ୍ଛନ୍ନ ହେଲେ କଣ ହେବ ?"

ଯଶୋଦା ଆସିଲା । ଦୁଆରମୁହଁରେ ଠିଆ ହୋଇ କହିଲା—"ମା, ଆଜି ମେହେନ୍ତାଣୀ ଆସି ନାହିଁ ।"

"ଆସି ନାହିଁ କାହିଁକି ?"

"କାଲିଠୁ କହୁଥିଲା, ସାହିରେ ମନା ହେଉଚି; କେହି ଆସିବେ ନାହିଁ ।"

"ତାକୁ ତୁ କାଲି କହିଲୁ ନାହିଁ କାହିଁକି ?" ରମା ଗର୍ଜିଲେ ।

"ତାକୁ ତ କଷିକରି କହିଲି; କହିଲି—ଛତରଖାଇ ଯୋଗମୀଖାଇ, ମୋ ମୁହଁକୁ ଯାହା ଆଇଲା କହିଲି । କହିଲି, ତମର ଏତେ ଉଗୁରୁ ହେଇଯାଇଚି, ବାବୁଘର ଜାଗା ଛାଡ଼ ବୋଲି ଧେଣ୍ଡୁରା ପିଟୋଉଚନ୍ତି, ତମେ ଚକ୍ରୁ ନା ! କିଛି କହିଲା ନାହିଁ ସେ ଚୂଲୀପଣି, ସ୍ଥିର ହୋଇ ଗୁଲିଗଲା । କହିଦେଇ ଗଲା, କାମ ବନ୍ଦ ।"

"ତୋ ମନୁକୁ ତୋ ପେଟ ଭିତରେ ରଖି ମରିଥିଲୁ କାହିଁକି ?" ରମା କହିଲେ, ଆତୁର ହୋଇ ଅବିନାଶବାବୁଙ୍କ ମୁହଁକୁ ଅନେଇଲେ । ଅଘୋରବାବୁ ମନକୁ ମନ କହିଲେ—"ଷ୍ଟ୍ରାଇକ୍ !"

"ହିଁ, ଷ୍ଟ୍ରାଇକ୍ ।" ମାନମୟୀ କହିଲା, "ଏତେ ସବୁ ସେହି ସବୁ କଥା କହି, ସାଅ ଏ ଥର । ପାଇଖାନା ଭର୍ତ୍ତି ହେବ, ନାଳ ସଡ଼ିବ, ସ୍ନାନ ନାଁ ଷ୍ଟ୍ରାଇକ୍ । ବାହାର କଥା, ଭିତର କଥାର ପରଖା-ପରଖି ବେଳ ଆସୁଛି । ଏଣିକି ଯେ ସମ୍ଭାଳ ।"

"ଆରେ, ଆଚ୍ଛା ବେକୁଫ୍ ତ ! ସେମିତି ବଲେଇ ଭଳିଆ ଫେଁ କରି ଉଠୁଚୁ କାହିଁକି ? କଣ୍ଟାବାଡ଼ରେ ଲୁଗା ପକେଇ କଜିଆ କରୁଚୁ କାହିଁକି ? ଦେଖିଲୁ ବୋଉ—"

ଅବିନାଶବାବୁ ଉଠିଗଲେଣି ।

ବୋଉ କହିଲେ—"ଲଗା ନା ସେମିତି ।"

"ହଃ, ମୁଁ କଣ କହିଲି କି ? ସେ ବରାବର କହନ୍ତି ବୋଲି ମୁଁ କହୁଚି । ଏତେ ଷ୍ଟ୍ରାଇକ୍ ଷ୍ଟ୍ରାଇକ୍ ହୁଅନ୍ତି; ପ୍ରକୃତରେ ଷ୍ଟ୍ରାଇକ୍ ଆରମ୍ଭ ହେଲା, ସମ୍ଭାଳନ୍ତୁ ।"

"ଷ୍ଟ୍ରାଇକ୍ ! କଏ କହୁଚି ? ମେହେନ୍ତରାଣୀ ଦିନେ ଆସି ନାହିଁ ବୋଲି ? ଷ୍ଟ୍ରାଇକ୍ କଲା ପରି ଏଇମାନଙ୍କ ମୁହଁ ଦିଶେ ? ବଳେ ତାଙ୍କୁ ଅଡ଼େଇ ନେଇ କାମ କରେଇବେ, ଛାଡ଼ିଦେବେ କିଏ ?"

ମାନମୟୀ ହସିଲା । କହିଲା—"ସେଇଆ କହେ ଯେ, ତୁମେ ଏ ସବୁ ବାଜେ କଥାରେ ବିଶ୍ୱାସ କର ନାହିଁ । କେବଳ ସୌକ୍ ପାଇଁ କହିବୁକ; କାରଣ, ସେ ଏ ଯୁଗର ଫେସନ୍—"

"ଫେର୍—"

ଅଘୋରବାବୁ ରାଗି ଅନେଇଁଲେଣି । ମାନମୟୀ ମୁହଁରେ ଲୁଗା ମାଡ଼ି ହସୁଛି । ଅବିନାଶବାବୁ ଆସିଲେ । କହିଲେ—"କଣ ହେଲା ?"

ମାନମୟୀ କହିଲା--"ଭାଇ କହୁଥିଲେ କେତେ ଢେର ହୋଇଯାଉଛି, ନ ହେଲେ ଏ ଅସନା ସାହି ଉଠିଯାଆନ୍ତା । ଖଡ଼ିରା ମାଟିର ଡିଅ ଉପରେ ଲଗନ୍ତା ଗୋଲାପ ବଗିଚା । କୋଠା ଉପରୁ ଦେଖିଲେ କି ସୁନ୍ଦର ! ଫୁଲବଗିଚା, ତା ସେ

କରେ ସବୁ । ସେ ପାଖେ ପୂରଲା ପୂରଲା ହୋଇ ପାଣି ଧାରଚିଏ । ଠିକ୍ ଯେମିତ ଝରଣେ ଛବ ! ନୁହେଁ ଷଇ ?''

ବାପା ଅଛନ୍ତି; ତର୍କ କରି ଫଳ ନାହିଁ । ଅଘୋରବାବୁ ବିରକ୍ତ ହୋଇ ଚାଲିଗଲେ । ଦାଣ୍ଡ ଦୁଆରେ ମଟର ଶବ୍ଦ ହେଲା । ଅବିନାଶବାବୁ ଘର ଭିତରୁ ପାଟି କଲେ—''ଦେଖ୍ ତ ଅଘୋର, ଶୈଳେନ୍ଦ୍ର କି ?''

''ହଁ, ହଁ, ଶୈଳେନ୍ଦ୍ର ।'' ହସି ହସି ଶୈଳେନ୍ଦ୍ରବାବୁ ମାଡ଼ିଆସିଲେ । କହିଲେ—''କଣ ହେଇଚ ତମର କହ ତ ! ହଠାତ୍ ଟେଲିଫୋନ୍‌ରେ ଯେପରି ଗ୍ରୁକଥାଁ ହୋଇ ଡାକ ପକେଇଲ, ବୁଝିଲି ଯେ, ବସିଲାଠୁଁ ଉଠି ଆସିବାକୁ ପଡ଼ିବ । ତା ପରେ ଦାଣ୍ଡ ଦୁଆରେ ପାଦ ନ ଦେଉଣୁ, ଭିତରୁ ଡାକ ଶୁଭୁଛି; ଯାହା ତୁମ ପକ୍ଷରେ ଏକଦମ୍ ଅସ୍ୱାଭାବିକ । କଣ ହେଇଚ ତୁମର କହିଲ ! ଜଣାଯାଉଚ ଯେମିତ କି ତୁମ ସ୍ନାୟୁଗୁଡ଼ାକ ବିବାକ୍ ଟେକେ ରହିଚ; କଥା କଣ ?''

ଅତି କୃତଜ୍ଞତାରେ ଅବିନାଶବାବୁ କଥା କହିପାରିଲେ ନାହିଁ ।

ଶୈଳେନ୍ଦ୍ରବାବୁ କେଡ଼େ ସୁନ୍ଦର ହସୁଛନ୍ତି । କେଡ଼େ ଧୀର, କେଡ଼େ ଅମାୟିକ । ନିଜଠି ନିଜର ବିଶ୍ୱାସ ପୂର୍ଣ୍ଣ ହୋଇ ପୁଣି ଗୁଣଆଡ଼କୁ ଉଛୁଳି ପଡ଼ୁଛି । ଯେ ଦେଖିବ, ତାର ମଧ୍ୟ ଆସ୍ଥା ଅତୁଟ ରହିବ । ସବୁ ସମସ୍ୟା ସମାଧାନ କରିଦେଇ, ହସିଦେଇ କହିଲେ—''କାହିଁକି ଡାକିଥିଲ ?''

''ନାଃ, ସେମିତ କିଛି ନାହିଁ, ଖାଲି ଏମିତ ଏମିତ ।'' ସହଜ ଅବହେଳାରେ ସିଗାରେଟ୍ ଖଣ୍ଡେ ଓଟାରି ନେଲେ । ଆରମ୍ଭ କଲେ—''କଥା କିଛି ନାହିଁ, ଶୁଣ କହୁଚି—''ଚଷମା ଉଢ଼ୁଆଳରୁ ତୀକ୍ଷ୍ଣ ଦୃଷ୍ଟି ତାଙ୍କୁ ସଙ୍ଗୋଳି ନେଉଛି, ଜଳି ନେଉଛି । ଟେବୁଲ ଉପରେ ହାତ ଭରି ଦେଇ ଶୈଳେନ୍ଦ୍ରବାବୁ ନିବିଷ୍ଟ ହୋଇ ଶୁଣୁଛନ୍ତି । ଏ ତାଙ୍କର ଗୋଟିଏ ବିଖ୍ୟାତ ଭଙ୍ଗୀ; ଯାହାକୁ ଦେଖିଲେ, ପେଟ ଭିତରେ ସାତ ମୁଦ ହୋଇ ଛପା ହୋଇ ରହିଥିବା କଥା ଆପେ ବାହାରିପଡ଼େ ।

ମଙ୍ଗଳାଚରଣ ଶେଷ ହୋଇଛି । ନାନ୍ଦୀ ଅନ୍ତେ ସୂତ୍ରଧାର ଆସିଲେ । ଅବିନାଶବାବୁ କହି ଲଗିଲେ—''ଏଇ ହାଡ଼ସାହି କଥା । ଯେତେ ବୁଝାଇଲେ, ଯେତେ ଲୋଭ ଦେଖାଇଲେ ସେମାନେ ଆଦୌ ଉଠୁନାହାନ୍ତି । ଧର୍ମୀବୁଡ଼ା ମେଳି କରିଛି । ଗୋଳମାଳ ହେବା ସମ୍ଭାବନା ।—''

ମସୁଧା ଚାଲିଥାଏ । ଅବିନାଶବାବୁ ସନ୍ଧା ନେଉଥାନ୍ତି ।

ଅଘୋରବାବୁ ପଦାରେ ବୁଲୁଥାନ୍ତି ।

ଗୃହଟା ବାଜୁଛି । ବାହାରେ କେଡ଼େ ସୁନ୍ଦର ଝରି । ସାମ୍ନାର ଗୋଲ ଘାସ ଅଗ୍ରଭ ଯେପରି କି ଖଣ୍ଡେ ପ୍ରକାଣ୍ଡ ନେଳି ରଙ୍ଗ ! ନିରୁପମା—ତାର କାନର ଝିଁରିରେ ସେ ନେଳି ପଥର ପିନ୍ଧେ । ଓପାର ପିଣ୍ଡାରେ ଥାକ ଥାକ ହୋଇ କୁଣ୍ଡ-ବଗିଚ୍ଛ । ନିରୁପମା ଏଇଠି ଠିଆ ହୋଇଥିଲା, ବିଦାହେଲା ଘରରେ । ନିରୁପମା ନାହିଁ । କେଡ଼େ ଚଞ୍ଚଳ ଏ ଝରି ମଉଳ ଆସୁଛି । କୁଣ୍ଡ-ବଗିଚ୍ଛରେ ପତ୍ର ସନ୍ଧରେ ସନ୍ଧରେ ଘୁଞ୍ଚ । କବାଟର କାଚ ଫାଳ ଉପରେ ବାହାରର ଦୃଶ୍ୟର ଛବି ଉଭରୁଛି । ଦୂର ଆକାଶ ସ୍ତୃଣକରେ କାଠର ଫ୍ରେମ୍ । କେବଳ ଆଙ୍କି ହୋଇ, ସ୍ଥିର ହୋଇ ରହିଛି ସେ ଛବି । ଆଲୁଅ ନାହିଁ, ବସ୍ତୁତ ନାହିଁ । କେଡ଼େ ସାନ, କେଡ଼େ ମଳିନ ।

ଭିତରେ ବାପା ମନ୍ତ୍ରଣାରେ ନିରତ । ହାଡ଼ସାହି ଯିବ । ବଡ଼ ସହର ପଶିଛିନ୍ତି ହେବ, ସୁନ୍ଦର ଦିଶିବ । ନଈ କୂଳେ କୂଳେ ପବନ ଖାଇ ଗଲେ ଆଉ ନାକକୁ ଚିପି ଧରିବା ଦରକାର ପଡ଼ିବ ନାହିଁ ।

ଆଲୁଅ ସବୁ ଆସୁଛି ଜଲ୍‌ଦି ଜଲ୍‌ଦି । ଗୃହୁଁ ଗୃହୁଁ ସଞ୍ଜ ବୁଡ଼ିଯିବ । ତା ପରେ ନିଘୁଞ୍ଚିଆ ନଈକୂଳେ ଦେହିଘଷା ହୋଇ କାନପାଖେ କାହାର ଫୁସ୍ ଫୁସ୍—

"ସତେ କଣ ଆମର ବାସ ଉଠେଇବ, ନିଆଶ୍ରା କରିବ ବାବୁ ?"

ହାଡ଼ସାହି ଲୋକେ ଦଳଦଳ ହୋଇ କଣ କୁହାକୋହି ହେଉଛନ୍ତି । ଶୈଳେନ୍ଦ୍ର ବାବୁଙ୍କ ପ୍ରସିଦ୍ଧ ଗାଡ଼ିକୁ ବାଟରେ ଚିହ୍ନି ଥିବେ ହୁଏ ତ; ଅଥବା ତାଙ୍କଠୁଁ ପ୍ରଣତନମସ୍କାର ପାଇଥିବେ । ଗାଡ଼ିରେ ଗଲାବେଳେ ଦୁଇ କରକୁ ମୁଣ୍ଡ ଛୁଙ୍କାଇ ଜନତାଙ୍କ ସମ୍ବର୍ଦ୍ଧନା ସ୍ୱୀକାର କରିବା ତାଙ୍କର ମହତ୍ତ୍ୱ । ବିଶ୍ୱାସର ଭୂମି ସେ ।

ଦଳ ଦଳ ଲୋକ କଟମଟ କରି ଅନେଇଁ ଅନେଇଁ ଯାଉଛନ୍ତି । ଗୃହାଣୀ ତ ନୁହେଁ, ଗହଣିଆ ନିଆଁର ତାଉ ଧାସ । ମୁରୁକୁଟିଆ ଦାଡ଼ିଆ ବୁଢ଼ାଟା ସବୁବେଳେ ପଇଁତରା ମାରି ବୁଲୁଛି । ଅମ୍ଳିଲ ପବନରେ ଅଶାନ୍ତର ବାଲ ରେଗେଡ଼ା । ଅନେଇଁଲେ ଆଖିରେ ଖେଣ୍ଟା ଲାଗେ ।

ଆଖି ବୁଜିଦେଲେ ଭିନେ ଦିଶେ । ପୁଳର ମୋହ ମଣ୍ଡିହୋଇ ଡଟା ଫୁଟା ମେଳେଞ୍ଜ୍ରୁ ବସ୍ତିଟା ଦିଶେ କେଡ଼େ କରୁଣ । ସହାନୁଭୂତି ଆସେ; କିନ୍ତୁ ସେ ଖାଲି ହୃଦୟର କଥା ।

ନା, ମନ୍ତ୍ରଣା ସରି ନାହିଁ । ଟହଲିବାକୁ ପଡ଼ିବ, ଅପେକ୍ଷା କରିବାକୁ ପଡ଼ିବ—କଣ ବାପାଙ୍କର ନୂଆ ଫର୍ମାସି !



ପିଣ୍ଡାରେ ପଖାଳ-କଂସା ପାଖେ ପୂନ ବସିଥାଏ । ରଙ୍ଗ ଆସିଲ, ଟଙ୍କ ଆସିଲ । ଡାକଲେ—"ବସିଚୁ କଣ ଲୋ, ସଭାକୁ ଯିବୁ ନାହିଁ କ ?" ଘର ଭିତରୁ ପୂନବୋଉ ପାଟିକଲ—"ବସି ବସି ଖାଉ ଆ ପୂନ, ଶୁଖୁଆ ପୋଡ଼ା ନଉଚ ।" ଖଣ୍ଡିଆ ପିଆଜରୁ ପୂନ ପୁଳାଏ କାମୁଡ଼ି ଦେଲ, ଲୁଣ ଦୋଟି ଟୋକଲ । ଅନେଇଲ ରଙ୍ଗ ମୁହଁକୁ, ଟଙ୍କ ମୁହଁକୁ । ସେମାନେ ବେଶ ହୋଇଛନ୍ତି, ସୁନ୍ଦା ଚକ୍‌କଣ ହୋଇ ପଣ୍ଡ ହୋଇଛି, କପାଳ ତେଲ ସରସର । "ସ୍ନେ କଣ ହେଇଚ ଲୋ ?"

"ମଲ, ବସି ଗ୍ରେପର ହଉଚ ! ଯାଡ ଦେରେ ଲୋକ ଆଟପଟାଳି, ଏତେ ବଡ଼ ସଭା, ବସି ବସି ଗେଫା ମାରୁଚୁ; ସଭା ଦେଖି ଯିବୁ ନାଇଁ ?"

ଛିଣ୍ଡା ମଇଳା ଖଣ୍ଡେ ପିନ୍ଧି, ଶୁଖୁଆ ପୋଡ଼ା ମୁଠେଇ, ହାତ ଗୁଞ୍ଚି ଗୁଞ୍ଚି ପୂନବୋଉ ଆସିଲ । କହିଲ—"ଉହୁ; କେତେ ଘାଏଁ ତାଡଚ— !"

ରଙ୍ଗ, ଟଙ୍କକୁ ଦେଖିଲ, ସଭା ନାଁ ଶୁଣିଲ । ମୁହଁ ବଚକଟେଇ, ଖଚେଇ ହେଲ ପଣ କହିଲ—"ସ୍ନେ ସଭା ! ମଲ ମୋ ! ମଣିପଙ୍କ ଭେକ ସରୁ ନାଇଁ, ହକର ହକର ହେଇ, ଯାନ୍ତ ସଭା ଦେଖିବାକୁ । ବ' ଲୋ ରୁ ଥିଶ ହେଇ । ସେତକଯାକ ସବୁ ସାଶବାକୁ ପଡ଼ିବ । ରୁ କ ପାଇବୁ ଲୋ !"

"କଣ ହେଲ ମାଉସୀ, ଚଉ଼ୁଚ କାଇଁକ ?" ରଙ୍ଗ କହିଲ, ଆମ ପେଇଁ ସଭା ହଉଚ, ଆମେ ଯିବୁ ନାଇଁ ?"

"ଆମ ପେଇଁ ! ତୋଲା ଲେଉଟେଇ ନେମା କହିଲ—"ଭଲ ଲୋ ଆମ ପେଇଁ—ଗେଲବସର ! କାହାର ସାଆନ୍ତ ଚକୁଳ ହେଲେ ଆମର ଚଉଦ ଚେଁ । ଆମର ପେଇଁ ସଭା ବସିଚ ? ଦ ଦନ ହେଲ କାମ ବନ୍ଦ, ପଇସା ମାଟି । କଏ ଆଉଚ ଘର ଭର୍ତ୍ତିକର ଦବାକୁ ?"

"ସେଇଥିପେଇଁ ତ ସଭା ବସିଚ ମାଉସୀ ।" ଟଙ୍କ କହିଲ, "ଘରେ ଗାଉଁ ଗାଉଁ ହେଲେ କଣ ହବ, ଗ୍ଭଲୁ, ଯାହା କହିବାର କଥା ସେଠି କହିବୁ !ଦେଖିଲୁ କେତେ ଲୋକ ଗଲେଣି—"

"ହଁ ଲୋ, ସବୁ ଏଇ ବାଟେ ଲୋ, ସବୁ ଏଇ ବାଟେ । ହେ ପୂନ, ସେମିତ ତରବର ହେଉଚୁ କାହିଁକ ? ଚଂ ଚଂ ହ'ନା, ବସି ବସି ଖା ।"

ପଦ୍ମବୋଉ ଆସିଲା, ଦୁଆରେ ଅଣ୍ଟା ଭାଙ୍ଗି ଠିଆହେଲା । କହିଲା, "ଏ ତେମେ ସଭାକୁ ଯିବ ନାହିଁ କି ?"

ଗଳି ବାଟେ ଦଳେ ପାଟି କରି କରି ଗଲେ—"ଉନ୍ଦ ଗ୍ରାଡ଼ିବ୍ ନାହିଁ, କେବେ ଗ୍ରାଡ଼ିବୁ ନାହିଁ । କେମିତି ଉଠେଇବେ ଦେଖିନବା—"

ପୁନ ଉଠି ପଡ଼ିଲା ।

କଳକମଣ୍ଡି ଆସିଲା । ତାର ସବୁଠୁ ଭଲ ସାଜ ବାହାର କରିଛି । ଡାକିଲା—"ପୁନ, କଲେ, ଏଠି ସବୁ ଠିଆ ହେଇ କଣ କରୁଚ ?"

ପୁନ ଟାଉ ଟାଉ କରି ଲୁଗା ପାଲଟି ପକାଇ ପଦାକୁ ବାହାରିଲା । ଅଗଣାରେ ଗେଣ୍ଡୁଫୁଲ ବୁଦାଟିଏ । ତରତର ହୋଇ ଦୋ ଠା କରି ଫୁଲ ପୁଞ୍ଜାଏ ଛିଣ୍ଡେଇ, ମୁଣ୍ଡରେ ଖୋସୁ ଖୋସୁ କହିଲା—"ବୋଉ, ମୁଁ ଯାଉଚ—"

"ଯା ଲୋ ମା, ସମସ୍ତିଙ୍କୁ ତ ବାଇ ଲାଗିଚ; କହିବ କାହାକୁ ? ଫେର୍ ଦେଖିବ ନାହିଁ--ଭଡ଼ିବ ମୋ କଥା ଯେ, ସତ କି ମିଛ ।"

ଦୁଆରେ ଠିଆ ହୋଇ ପଦ୍ମବୋଉ ପାଟି କରୁଚ—"ହେ, ତେମେ ଯିବ ନାହିଁ ସତେରେ !"

ପୁନ ହାତ ଦେଖାଇଲା, "ଦେଖ୍ ବୋଉ, ଚେମା ବି ଯାଉଚ—"

କୁଷ୍ଠରୋଗୀ ଚେମା ଖଲେଇ ଖଲେଇ ଗ୍ରଲିଥାଏ । ଗୁଣ୍ଡରେ ସେହି ପାଟି—"ଜିହ୍ଵ ଗ୍ରାଡ଼ିବ୍ ନାହିଁ ।"

"ହଁ ଲୋ, ଧନୀବୁଢ଼ା ଗଦ ଶୁଙ୍ଘେଇଚ । ଆସିବେ ଯେ ଠେଙ୍ଗା ଧରିକି, ମୁଣ୍ଡ ଫଟେଇବେ । ଯାଅ, ତମର ତମେ ପାଇବ; ମୋର କଣ ଯାଉଚ ।"

"ଆ' ମଁ ବୋଉ—!"

"ଯାଅ, ଯାଅ । ସଭାରେ ମିଠେଇ ବଣ୍ଟା ହବ, ମୋ ପାଇଁ ନ ଆଣିବୁ ପଛେ ।"

ସଭାରେ ପହଞ୍ଚିଲାବେଳକୁ ସଭାସ୍ଥଳୀ ଲୋକାରଣ୍ୟ । ଖଣ୍ଡ ଉପରୁ ଶୈଳେନ୍ଦ୍ର-ବାବୁ ପାଟି କରୁଛନ୍ତି—"ଶୁଣ, ଶୁଣ, ଗୋଳମାଳ କର ନାହିଁ । ମୋ କଥା ଶୁଣ ।"

"ଆଉ କଣ ଶୁଣିମୁଁ ବାବୁ ଆପଣଙ୍କ କଥା ! ଆପଣ ଆଜ ତାଙ୍କର ହୋଇ କହିବାକୁ ଆସିଛ ଯେ, ସୁନାପୁଅ ପରି ଘରଦୁଆର ଛାଡ଼ି ଦେଇ ଉଠିଯାଅ ଆଉ କୋଉଠିକି । ଗଛତଳେ ପଡ଼, ଯୁଆଡ଼େ ପାରି ସିଆଡ଼େ ଯାଅ । ସେ ସେଠି କୋଠାବାଡ଼ି ତୋଳନ୍ତୁ—"

ଧର୍ମାବୁଢ଼ା ଗର୍ଜୁଥାଏ । ଗୁରିଆଡ଼ୁ ତାର ପ୍ରତିଧ୍ୱନି—"ଭିହ ଛାଡ଼ିବୁ ନାହିଁ, ଘର ଛାଡ଼ିବୁ ନାହିଁ—"

ଦଳେ ଶାନ୍ତିରକ୍ଷକ ପାଟି କରୁଥାନ୍ତି—"ବସ, ବସ, ବସ, ବସ -"

ଶୈଳେନ୍ଦ୍ରବାବୁ ପୁଣି ଚତ୍କାର କଲେ । ଏଥର ତାଙ୍କର ସ୍ୱର କୋହରେ କୋହରେ ଅଧାରୁ ଭାଙ୍ଗିପଡ଼ିଲା । ବଡ଼ ସହରର ସେହି ଚିରପରିଚିତ ଆବେଗମୟ କଣ୍ଠରେ କହିଲେ—"ଭାଇମାନେ—"

ଲୋକେ ଚୁପ ହେଲେଣି । ଜଣେ କିଏ ଗିଲାସଟିଏ ବଢ଼େଇଦେଲେ । ସେଥିରୁ ଟୋପିଏ ପିଇ, କରୁଣ ମୁହଁରେ ବିଷାଦର କାହାଣୀ ଢାଳିବାକୁ ବସିଲା ପରି ଶୈଳେନ୍ଦ୍ରବାବୁ କହିଲେ—"ଭାଇମାନେ, ଯୁଗ ସନ୍ଧିଘଡ଼ିରେ ଆଜ ଏ କଣ ଦେଖୁଛି ! ଏ କଣ ଶୁଣୁଛି ! ହୃଦୟ ଭାଙ୍ଗିପଡ଼ୁଛି । ମୋ ଉପରେ ତୁମର ବିଶ୍ୱାସ ନାହିଁ ! କାହା ପାଇଁ ତେବେ ମୋର ଦେହର ପ୍ରତ୍ୟେକ ରକ୍ତବିନ୍ଦୁ ଏହି ଭୂଇଁରେ ଢାଳିଦେଇ ବସିଲି ? କାହା ପାଇଁ ଗ୍ରାମ୍ୟାଏ ଗ୍ରାମ୍ୟାଏ ବୁଲି, ଚତ୍କାର କରି କରି ମୋର ଗଳା ବସିଗଲା ? ଆଜ ମୁଁ ବୁଝୁଚି, ଏହି ଇଂରେଜଙ୍କରେ ଗୁଦଣ ପରି ମୋର ନଅଟା ମୁଣ୍ଡ ଆହୁତି ଦେଇ ସାରି ବୁଝୁଚି, ମୋର ଏ ତପସ୍ୟା ବୃଥା, ମୋର ବଳିଦାନ ନିରର୍ଥକ, ମୋର ଏ ତ୍ୟାଗର ମୂଲ୍ୟ ନାହିଁ । କାରଣ—କାରଣ ମୋଠିଁ ମୋ ଭାଇମାନଙ୍କର ବିଶ୍ୱାସ ନାହିଁ । ମୁଁ ପର । କହ, ଭାଇମାନେ, ମୁଁ କଣ ପର ? ମୁଁ କଣ ପର ?"

କିଏ କେଉଁଠୁ ପାଟିକଲା—"ନା, ନା—" କେଉଁ କଣରୁ କିଏ ତାଳି ମାରିବା ଆରମ୍ଭ କରିଦେଲା । ଏକାଠି ସମସ୍ତିଙ୍କ ମୁହଁରୁ ପ୍ରତିବାଦ—"ନା, ନା—" ସମସ୍ତିଙ୍କ ହାତରେ ତାଳି ।

ଶୈଳେନ୍ଦ୍ରବାବୁ ଖଡ଼ି ଉପରେ ଥାଇ ମୁଣ୍ଡ ନୁଆଇଁ ଦେଲେ, ଜନତାଙ୍କ ଅଭିନନ୍ଦନ ଗ୍ରହଣ କଲା ଭଙ୍ଗୀରେ । ଗଦ୍‌ଗଦ ହୋଇ କହିଲେ, "ମୁଁ ଜାଣେ, ମୋଠିଁ ମୋ ଭାଇମାନଙ୍କର ବିଶ୍ୱାସ ଅଛି । ଏହି ମାଟିରେ ମୋ ଦେହ ଗଢା, ଏହି ମାଟିକୁ ମୁଁ ଆପଣାର କରିଛି । ଶେଷରେ ଯେଉଁ ଦିନ—ମୋର ଭାଇମାନଙ୍କ ସେବା

କରୁ କରୁ ଏହି ଦେଶର ମାଟିରେ ମୋର ଦେହ ଝଡ଼ିପଡ଼ିବ; ଜାଣିବ—ଜାଣିବ ସେ ଦିନ ସୁଦିନ ମୋର— ।''

ପୁଣି ନଏ ତାଳି ଆରମ୍ଭ କଲାଣି । ତାଳି ଉପରେ ତାଳି ବର୍ଷି ଲାଗିଛି । ଶୈଳେନ୍ଦ୍ରବାବୁ ବକ୍ତୃତା ଦେଉଛନ୍ତି । କେତେ କଥା ସେଥିରେ—ଦେଶ-ବିଦେଶର କଥା, ବିପଦ-ଆପଦର କଥା, ଆପଣାର ପର ସବୁ କହି ଯାଉଛନ୍ତି । ତାଙ୍କର କଥାରେ ବଡ଼ ସହରରେ କମିଆଁ ଲାଗେ । ସେହି ସେ ଯାଦୁକର । ସୁନା କାଠି ଛୁଇଁ ଜିଆଇ ଦେଉଛନ୍ତି, ରୁପାକାଠି ଛୁଇଁ ମାରି ପକାଉଛନ୍ତି । କାଉଁରିହାଡ଼ ଛୁଇଁ ଶୁଆଇ ପକାଉଛନ୍ତି ନିଘୋଡ଼ ନିଦରେ ଜନର ଚେତନାକୁ । ଭୋଜବିଦ୍ୟାରେ ସବୁଦିନ ପରି ଆଜି ବି ଝାଙ୍କୁଆ ଗଜୁରୁଛି, ଆମ୍ବଗଛ ଠିଆ ହେଉଛି, ବଢ଼ୁଛି, ଚଣା ଫୁଟୁଛି; ଗୁହୁଁ ଗୁହୁଁ ପାଚିଯାଇ ଝୁଲିପଡ଼ୁଛି ପେନ୍ଥି ପେନ୍ଥି ହୋଇ ଲେମ୍ବୁ । ଧୂଡ଼୍ଙ୍କ ବଜାଉଛି, ବାଉଁଶବଣୀ ନଚେଇଛି, ଭାନୁମତୀ ପେଡ଼ିରେ ପଶିଛି; ସଭାସ୍ଥଳୀ ମୁଗ୍ଧ ।

''ଭାଇମାନେ—'' ବୀଣା ପରି ସ୍ୱର ଉଦ୍‌ବୋଧୁଛି । ''ତେବେ ତୁମର ଆପତ୍ତି ଆଉ କଣ ? ଏଠି ଯକାଯକ ହୋଇ ପଡ଼ିରହିବା ଅପେକ୍ଷା ଅନ୍ୟଠି ଫାଇଫାଙ୍କ ଦେଖି, ପରିଚ୍ଛନ୍ନ ଦେଖି, ଫରକଟେଇ ହୋଇ ରହିବା ଯଥେଷ୍ଟ ଭଲ । ସହରର ସ୍ୱାସ୍ଥ୍ୟ କଣ ତୁମର ସ୍ୱାସ୍ଥ୍ୟ ନୁହେଁ ? କେତେ ଟଙ୍କା ଖରଚ ହୋଇଥାନ୍ତା, ଜଣେ ଯଦି ଦେବାକୁ ମଙ୍ଗିଛି, ତାକୁ ବାଧା ଦେବା କାହିଁକି ? ଏ ତ ତୁମର ହିତ କଥା, ଏଥିରେ ତୁମେ ଅଡ଼ିବସୁଛ କାହିଁକି ? ଏହି ସଂକୀର୍ଣ୍ଣ ଜାଗାରେ ସବୁଦିନେ କଣ ତୁମେ ପଡ଼ିରହିଥାନ୍ତ ! ତୁମର ଏଠି ନିଶ୍ୱାସ ବନ୍ଦ ହୋଇଯାଉଛି, ହାତ ଗୋଡ଼ ଖେଳେଇ ପାରୁ ନ—''

ଭିଡ଼ ଉପରେ ଶୈଳେନ୍ଦ୍ରବାବୁଙ୍କର ନିଶ୍ୱାସ ବନ୍ଦ ହୋଇଯାଉଛି । ଛଟପଟ ହେଉଛନ୍ତି । ଆଉ ଟୋକେ ପିଇ ପୁଣି କହିଲେ—''ତୁମରି ଭଲ ପାଇଁ ମୁଁ କହୁଚି, ଏ ସୁବିଧା ଛାଡ଼ ନାହିଁ, ଏ ଲାଭ ଛାଡ଼ ନାହିଁ । ଅବୁଝା ହୁଅ ନାହିଁ ଭାଇମାନେ, କଥା ବୁଝ । ତୁମେ ଆଜି ଅନ୍ୟାୟ ଦାବୀ ଧରି ଅଡ଼ିବସିଛ । ଅନ୍ୟାୟ ଦାବୀ ପାଇଁ ତୁମେ ଜଗତର ସହାନୁଭୂତି ପାଇ ପାରିବ ନାହିଁ । ଜମି ତୁମର ନୁହେଁ, କେତେ ଦିନର ପାଳ କୁଡ଼ିଆ ଖଣ୍ଡିଏ ଲେଖାଁ, ସେତିକରେ ତୁମର ଅଧିକାର । ସେତିକ ସ୍ୱାର୍ଥ ପାଇଁ, ଅନ୍ୟର ବୃହତ୍ତର ସ୍ୱାର୍ଥ ଧ୍ୱଂସ କରିବା ପାଇଁ କାହାରିକୁ ଅଧିକାର ଦିଆଯାଇ ପାରେ ନାହିଁ । ଆଇନରେ ତୁମର ଜୟ ନାହିଁ, ଲୋକମତ ଅନୁସାରେ ତୁମର ଜୟ ନାହିଁ । ସଂଘର୍ଷ ଉପୁଜାଇଲେ ତୁମର ସମୂହ କ୍ଷତି । ଅତଏବ—''

ଶୈଳେନ୍ଦ୍ର ବାବୁ ବକ୍ତୃତା ଶେଷ କରୁଥାନ୍ତି, ଗମ୍ଭୀର ହୋଇ ଉଚ୍ଚାରଣ କଲେ—"ଅତଏବ ଏ ମେଳ ଭାଙ୍ଗି ଦିଅ । ଅନର୍ଥକ ଏ ଗୋଷ୍ଠୀ ଗୋଷ୍ଠୀ ଭିତରେ ଯୁଦ୍ଧର ଅବସାନ ହେଉ । ଏ ଆନ୍ଦୋଳନ ତୁଟାଇ ଦିଅ, ଏ ଧର୍ମଘଟ ଶେଷ ହେଉ । କାଲିଠାରୁ ପୁଣି ତୁମେ କାମକୁ ଯାଅ । କାମ ନ କଲେ ମୂଳର ଟଙ୍କା ନଷ୍ଟ । ଯେଉଁପରି କାମ କରୁଥିଲ, ସେହିପରି କର । ଆଉ, ଯେତେ ଚଞ୍ଚଳ ପାରୁଛ ସୁବିଧା କରିନେଇ ନୂଆ ସ୍ଥଳକୁ ଉଠି ଯାଅ । ମନରେ କିଛି ସନ୍ଦେହ କର ନାହିଁ । ତୁମର ସବୁ ଦାବୀ ନ୍ୟାଯ୍ୟ ଅନୁସାରେ ମେଣ୍ଟାଇ ଦେବାକୁ ଆମେ ଅଛୁଁ ।" ପୁଣି ଘନ ଘନ କରତାଳି ।

ପୁନି ଅନୁଭବ କଲା, ଜଣେ କିଏ ତାର କାନ ଧରି ଓଟାରୁଛି । ଉଙ୍ଗ ନାହିଁ, ଟିଙ୍ଗ ନାହିଁ । ମୁହଁ ବୁଲେଇ ହସିଦେଇ କହିଲା—"ଉଇଥା ବା—ଫେର୍ କି ହଉଚ— ।" ଜଣେ କିଏ ଅଚାନ୍ସା ମଣିଷ ଭିଡ଼ ଉପରେ ଚଢ଼ିଲେଣି ।

"ଆମର ଶ୍ରଦ୍ଧେୟ ଶୈଳେନ୍ଦ୍ରବାବୁ ଯେ ଏତେ କଷ୍ଟ ସ୍ୱୀକାର କରି ଆମ ସମସ୍ତିଙ୍କ ହିତପାଇଁ ଏହି ଦୀର୍ଘ ବକ୍ତୃତା ଦେଲେ, ସେଥିପାଇଁ ସମବେତ ମୋର ଏହି ହରିଜନ ଭାଇମାନଙ୍କ ତରଫରୁ ମୁଁ ତାଙ୍କୁ ଆମର ଅନ୍ତରର ଧନ୍ୟବାଦ ଜଣାଉଛି—"

"କିଏ ସେ ?—" "କୁ ଗାଁ ?" "କଣ କହିଲେ ?" "ଆମ ଘର ଘୁଡ଼ି ଉଠିଯିବାକୁ କହିଲେ ?" "କଣ ହେଲା ?" ନାନା କଣ୍ଠରେ ହୋ ହୋ ଗହଳରେ ସଭା ଭାଙ୍ଗି ଯାଇଥିଲା । ପ୍ରଶ୍ନ ପଗ୍ଚରିଲାବେଳକୁ ଶୈଳେନ୍ଦ୍ରବାବୁଙ୍କ ବିଖ୍ୟାତ ମଟର ଅଦୃଶ୍ୟ ହୋଇଗଲାଣି । ନାନା ପ୍ରକାର ଅଭିମତ । "କଣ ନାଙ୍କଗି କହିଲେ ? ଆମରି ପାଇଁ ତ, କେଡ଼େ ସୁନ୍ଦର ବୁଝୋଉଥିଲେ ।"

"ନ ହେଲେ ମାହାଲିଆ ଲୋକେ ଏଡ଼େ ମାନନ୍ତି ! ଦେଖିଲ ନାହିଁ, କଥା କହୁ କହୁ କାନ୍ଧ ପକୋଉଥିଲେ—"

"ମିଛରେ ବେଳ ଗଲା । ମଣିଷ ମଦଖଟିକି ଯାଇଥିଲେ, ଏତେବେଳକୁ—"

"ଗ୍ଲଲ ହୋ, ଦେଖିବା କିଏ କାହାକୁ ଉଠୋଉଚି—ଘର ଘୁଡ଼ିଦେଇ ଉଠିଯିବା ଏମିତି ସହଜ କଥା ପଡ଼ିଚ—"

"ଆହା-ହା—ସତେ କି ଆମରି ପେଇଁ କଲିଜା ଫାଟିଯାଉଚି—ଗିରିରେ ଛନ୍ଦି ହଉ ନାହିଁ—ଦେଖୁନା, ସାକୁଲେଇବାକୁ ଆସିଥିଲେ ଯେ, ପାଟିରେ ବାଟୁଲି ବାଜୁ ନାହିଁ···"

ଯେ ଯାହା କହୁ, ଗୋଟାଏ କଥାରେ ସମସ୍ତେ ଏକମତ...କାଲିଠୁଁ ଫେର୍ କାମକୁ ଯିବେ । କାମ ପଡ଼ିଆ ପଡ଼ିଲେ ପେଟ ଚଳିବ ନାହିଁ ।

□ □

## ଚଉବନ

ସେମିତ ସତ ହୋଇଥାଏ । ନିଶବ୍ଦ, ନିସ୍ତବ୍ଧ ।

ନିଦ କୋଳରେ ବଡ଼ ସହର ଶୋଇରହିଛି । ଅଗଣିତ ମୁଣ୍ଡ ଭିତରେ ଅଗଣିତ ଭାବନା । ଗୋଟି ଗୋଟି ହୋଇ, ମିଶ୍ରି ମିଶ୍ରି ହୋଇ ଯେତେ ଆଶା, ଅଭିଳାଷ—ସବୁ ଶୋଇ ରହିଛନ୍ତି, ନିଭିଲି ଚୂଲାର ପାଉଁଶ ଭିତରେ ଗଡ଼ ନିଆଁ ପରି ।

ହଠାତ୍ କାହିଁକି ଧନୀବୁଢ଼ାର ନିଦ ଭାଙ୍ଗିଗଲା । ପଦାକୁ ଆସିଲା । ଆକାଶ ଅନ୍ଧାର ବାଦଲରେ ଢଙ୍କାଢଙ୍କି । କଣିକଥା କରି କଏ ଯେମିତି ଓଢ଼ଣା ଟେକି ଦେଉଛି, ଜଳଜଳକା ମୁହଁ ଦେଖାଉଛି ଫାଳିକିଆ ବାଙ୍କ ଜହ୍ନ ।

ଧନୀବୁଢ଼ା ଚାହିଁ ରହିଲା, ଚାହିଁ ରହିଲା । କଣ ସତେ କି କହିବାକୁ ଚାହେଁ, ଦୂରର ସେ ଦୁଃଖୀ ମୁହଁଟି, ଦୁର୍ବଳ, ଭୀରୁ; ତା ସାମ୍ନାରେ କି କଠିନ ବନର ଘସରା ବାଟ ।

ମଶାଣିଆଡ଼ୁ ବିଲୁଆ ବୋବେଇଲେ । ଉଦାସ ହୋଇ ଦୂରକୁ ଚାହିଁ ଧନୀବୁଢ଼ା ଭାବନାରେ ବୁଡ଼ିଥାଏ ।

ଭାବୁଥାଏ, ଜନମ ଦୁଃଖୀ ଯେ ତାର ଦୁଃଖର ଅନ୍ତ ନାହିଁ ।

କେତେବେଳେକେ ନିଘା ପଡ଼ିଲା, ପାଣିଚିଆ ଜହ୍ନ ଆଲୁଅରେ ସାହିସାକର ଘରଗୁଡ଼ାକ ଦିଶିଯାଉଛି । ସେ କଣରେ କେଉଁଠି ନିଆଁ ଧାସ ଦିଶୁଛି । ଆଶ୍ଚର୍ଯ୍ୟ ହୋଇ ପଗୁରିଲା ପରି ଅନାଇଁ ଦେଖୁ ଦେଖୁ ନିଆଁ ଉପରକୁ ଉଠିଲା । ହଠାତ୍ ସେ ବୁଝିଲା, ସ୍ୱରଆଡ଼େ କେଉଁଠି ନିଆଁ ଲାଗିଛି । ପାଟି ଶୁଭିଲା । ଚହଲ ଭିତରେ ହୋ-ହୋ କରି ଧନୀବୁଢ଼ା ବି ଦୌଡ଼ିଗଲା ।

ହାଡ଼ିସାହିରେ ନିଆଁ ଲାଗିଛି । ବହଳ ଗହଳ । ଦେଖୁ ଦେଖୁ କେଉଁ ଛଟକରେ ଚହଲି ଯାଉଛି । ବାଧା ମାନୁ ନାହିଁ, କାନ୍ଦଣା ମାନୁ ନାହିଁ । ଧୂଆଁର ସମୁଦ୍ର ଉପରେ ମାଡ଼ିଚାଲିଛି ନିଆଁର ତରଙ୍ଗ । ଜାଳି ପୋଡ଼ି ଭସ୍ମ କରି ଦେଉଛି ଗରିବଙ୍କ ଘରକରଣାକୁ ।

ଧଡ଼୍ କିନା ବଡ଼ଘରର ଝରକା ଫିଟିଲା । ମାନମୟୀ ଡାକ ପକେଇଲା, "ବୋଉ, ବୋଉ, ଦେଖିଲୁଣି ସେ କଣ ! ଓଃ, କି ନିଆଁ ! କି ତାତି ! ବୋଉ, ଏ ନିଆଁ ଏଣେ ମାଡ଼ିବ ନାହିଁ ତ ?"

"କୋଠାଘର ଗ୍ରାମକୁ କିଆଁ ମାଡ଼ିଆସିବ ଯେ ଗ୍ରାମକିଆଁ ହଉଚୁ ? ଆହା-ହା, ଜଳି ପୋଡ଼ି ଗ୍ରାରଖାର ହେଇଗଲା ରେ—"

"ଓଃ, କେମିତି ଫୁଟୁଚି ଦେଖୁଚୁ ! କେମିତି ଜଳୁଚି ! କୁଦା ମାରୁଚି ଏ ଘରୁ ସେ ଘରକୁ । ମତେ ଡର ମାଡ଼ୁଚି ବୋଉ ଲୋ– "

"ଚାଲେ, ଝରକା ଦେଇ ଦେଖିବୁ—"

"ବାଃ ରେ ଦେଇ ଦେଖ ନା । ଏ ଦୃଶ୍ୟ କାଏ ଗ୍ରାଡ଼େ ! ସତେ ଯେମିତି କେତେ ବଡ଼ ଶ୍ରେଷ୍ଠୀ –" ଗୁଲୁବୁ ଗୁଲ୍ବୁ ହୋଇ କହୁଯାଉଥାଏ ।

"ହଁ, ତୋର ବାହାଘର ଶ୍ରେଷ୍ଠୀ—" ପଛଆଡ଼ୁ ଅଘୋରବାବୁ କହିଲେ; "ଦେଖୁଥା, ଖାଲି ସୁନ୍ଦର ଦିଶୁଚି. ନୁହେଁ ?"

"କଣ କହିଲ ? କଣ କହିଲ ?" କନିଆ ମଝିରେ ପାଟି କରି କରି ତେଇଁ ତେଇଁ ଯଶୋଦା ଆସିଲା । ପାଗଳ ପରି ବକୁଥାଏ—"ସା'ନ୍ରାଣୀ, ଜଳିଗଲା—ପୋଡ଼ିଗଲା– ଯା ଜଳି ଯା, ଯା ପୋଡ଼ି ଯା, ଭସ୍ମ ହୋଇ ଯା ।"

"ହେ ଯଶୋଦା, ଚୁପ୍ ରହ । ତତେ କଣ ନାଗିଚି କଲେ ?"

ଯଶୋଦା ଅଳୁଳାଉଥିଲା ।

"ହେଇ ଦେଖ, ଜଳିଗଲା—ପୋଡ଼ିଗଲା—ଜଳିଗଲା—"

"ଯା ଖଲ୍ । ଦେଖିବୁ ଅଇଛା ?" ଯଶୋଦା ଗଲା ।

ମାନମୟୀ କହିଲା—"କାହିଁକି ମୋ ଘାଙ୍ଗେ ଲଗେଇବାକୁ ଆସିଲ ଖାଇ—?" "ଆଉ କଇଲେ, ଦେଖୁଚୁ ସାହିକା ସାହି ଜଳିଯାଉଚି, କହୁଚୁ ଶ୍ରେଷ୍ଠୀ ?"

"ମୋର ମୁଁ ଯାହା କହିଲି ତମର କଣ ଗଲା ? କହିବ ବର୍ଷା ହଉଚି ? ଏମିତି ଯଦ ଯୋଗ ବୋହିପଡ଼ୁଚି, ଯାଉନା କିଆଁ ଲିଭେଇବାକୁ ?"

"ଯାଉଚି ।" ଅଘୋରବାବୁ ଖସିଗଲେ । ମାନମୟୀ ପାଟି କଲା, "ଦେଖ୍ ବୋଉ, ଖାଇ ସେଠିକି ଯାଉଚନ୍ତି ।"

"ଅଘୋର୍, ଅଘୋର୍" ଚିଚିଁରେଇ ରମା ପଛେ ପଛେ ଦୌଡ଼ିଗଲେ । ସେ ପାଖରୁ ଗର୍ଜନ ଶୁଭିଲା, "ଠିଆ ହ । କୁଆଡ଼େ ଯାଉଚୁ ଅଘୋର ?"

ଅବିନାଶବାବୁ । "ଲଜ୍ଜା ନାହିଁ, ବାହାଦୁରି ଦେଖେଇବାକୁ ଯାଉଚୁ ? ଯା, ଘର ହେଇ ବସ୍ । ଫେର୍ ଯଦ—"

ଭୟଙ୍କର ଦିଶୁଛି ତାଙ୍କ ଚେହେରା, ରାଗରେ ଥରୁଛନ୍ତି । ମାରନ୍ତି କି ନ ମାରନ୍ତି । ମାନମୟୀର ରାଗ ଭୟରେ ଫିକା ପଡ଼ିଗଲା । ବୋଉ ଡାକିଲେ—"ଆ, ଏଇଠିକି ଆ; ଏଇ ଝରକାରୁ ସବୁ ଦିଶୁଛି ।" ଅଘୋର ବାବୁ ଗୁମ ହୋଇ ଠିଆ ହେଲେ । ବାପାଙ୍କ ରାଗ ଦେଖି ଆଶ୍ଚର୍ଯ୍ୟ ହୋଇ କାଠ ହୋଇ ଯାଉଛନ୍ତି । ସ୍ୱପ୍ନ ପରି ଲାଗୁଛି, ବୁଝିହେଉ ନାହିଁ କାହାରି କଥା । ଅଥଚ ସାମ୍ନାରେ ଏ ଧ୍ୱଂସଲୀଳା, ଏ ଅତି ବାସ୍ତବ ।

"ସେଠି କେମିତି ସେ ଲୋକଗୁଡ଼ାକ ଡେଉଁଛନ୍ତି ଦେଖ୍ ବୋଉ । କାହିଁକି ସେମିତି ହଉଚନ୍ତି ? ହେଇ ଦେଖ୍, ସେଠି କାହା ଘର ଖସି ପଡ଼ିଲା । କୁଆଡ଼ୁ ଏତେ ପବନ ଆସିଲା ବୋଉ, ଜମା ତ ନ ଥିଲା ! କାଲିକି ଏଡ଼େ ଏଡ଼େ ଅକ୍ଷରରେ ଖବରକାଗଜରେ ବାହାରିବ । ବାପ୍‌ରେ କି ନିଆଁ !"

ମାନମୟୀ ଘଟଣା ସଙ୍ଗେ ସଙ୍ଗେ ଟିପ୍‌ପଣୀ କହିଯାଉଛି । ତେଣେ ଲାଗିଛି ଗୋଳମାଳ ।

ଶରତର ଜାଡର ରାତିରେ ଦାଉଦାଉ ଜଳୁଛି । କାନ୍ଦଣା, ପାଟି । ଅଦ୍ଭୁତ ରାତି ମଝିରେ ହାଟର ଘୋ ଘା, ନିଆଁ ଧୂଆଁ ଏକାକାର । ଲୋକ ଆଟପଟାଳି । ଜିଭ ଲହ ଲହ କରି ଘରକୁ ଘର ନିଆଁ ଦୌଡ଼ି ଲାଗିଛି । ଏତେ ଘର ବାଡ଼ିଆବାଡ଼ି, ପାଣି ଢାଳା, ଜନ୍ଦା ପିମ୍ପୁଡ଼ି ପରି ମଣିଷଙ୍କ ଘରନିଆଁ ଲଗା ପାଟି, ଦୁନିଆଯାକର ହା-ହାକାର । କେଉଁଥିରେ ବାଧା ମାନୁ ନାହିଁ, ଶୀତଳ ପଡ଼ୁ ନାହିଁ ।

ଘଡ଼ିଏ ଗଲା । ବଡ଼ ଘରେ ସମସ୍ତିଙ୍କି ଶୋଇବାକୁ ଛାଡ଼ି ଦେଇ, ଅବିନାଶ-ବାବୁ ବିଛଣାରେ ଲମ୍ବ ହୋଇ ଶୋଇଲେ । ଘରଆଡ଼ ଜଳୁଛି, ନାକଧରାପୁର ଭସ୍ମ ହେଉଛି; ସେଥିରେ ତାଙ୍କର କି ଯାଏ ? ଝରକାର ଫାଟ ବାଟେ ତଳର ଦୁନିଆର ଆର୍ତ୍ତ ଚିତ୍କାର ବଡ଼ କୋଠାର ନିଦା ଶାନ୍ତିକୁ ଦୋହଲେଇ ଝଣକେଇ, ନରମ ତକିଆରେ ଆସି ଝୁଣ୍ଟିପଡ଼େ— କିଏ ତାର ବୋଉକୁ ଖୋଜୁଛି—"ଇଲୋ ବୋଉ ଲୋ, କୁଆଡ଼େ ଗଲୁ—ଇଲୋ ମୋ ବୋଉକୁ କିଏ ଦେଖିଚ ଲୋ—" କିଏ ତାର ବାପାକୁ ବାହୁନୁଚି "ଜଳିଗଲା, ସବୁ ଜଳିଗଲା, ମୁଁ କଣ କରିବି ଟି; ହେ କିଏ ଅଛ, ମୁଁ କଣ କରିବି ଟି—" "ହାଁ, ଇଆଡ଼େ ପାଣି—" "ଉଠ, ଉଠ ଘର ପଡ଼ୁଚି—।" ଧେତ୍—ଶୋଇ ଦେବେ ନାହିଁ ଆଜି ରାତିଟା । ମଣିଷ କି ହଇରାଣ ! ରାତିଯାକ ଲାଗିଥିବ ଏଇ କାଣ୍ଡ । ତହିଁରେ ପୁଣି ସେଇ ନାକଫଟା ଗନ୍ଧ ! ଧୂଆଁର ଗନ୍ଧ । ଜଳନ୍ତା ଘରେ ପାଣି ପଡ଼ିବାର ଗନ୍ଧ । ଉସ୍—ଗଲା ଆଜି ନିଦ । ଅବିନାଶବାବୁ ବିଛଣାରେ ଗଡ଼ିତ ପଡ଼ିତ ହେଉଥାନ୍ତି । ଝୁରୁଥାନ୍ତି, କଳ୍ପନା

କରୁଥାନ୍ତି । ଚେଇଁ ଚେଇଁ ସ୍ୱପ୍ନ ଦେଖୁଥାନ୍ତି । କଞ୍ଚା ପଇସା ପକେଇ ଦେଇ ସାହି ଗୋଟାକ କିଣି ନେଇଥିଲେ, ତଥାପି ସାହି ଲୋକେ ଦଖଲ ଦେବାକୁ ନାରାଜ; ଯେତେ ବୁଝେଇଲେ ନୁହେଁ, ଯେତେ ଫୁସୁଲେଇଲେ ନୁହେଁ । ଧନୀବୁଢ଼ା ମୂଲିଆ ମୁଣ୍ଡିଙ୍କୁ ଏକଯୋଟ କରିଥିଲା, ମୁଣ୍ଡ ପଛେ ଉଡ଼ିଯିବ, ଘରୁ ଉଠିବୁ ନାହିଁ ।

ଆଉ ବର୍ତ୍ତମାନ !

କୁହା ନାହିଁ, ପୋଛା ନାହିଁ; ରାତିକା ରାତି ସାହି ଜାଳି ପୋଡ଼ି ଏକାକାର । ତେଣ୍ଟା ଗଲା ଭସ୍ମ ହେଇ । ଧନୀବୁଢ଼ା କି ପେଞ୍ଚ କରିବ ଏଣିକି ?

ଅବିନାଶବାବୁ ତରତର କରି ଭାବୁଥାନ୍ତି । ଧନୀବୁଢ଼ାର ଚେହେରା ମନେ ପଡ଼ୁଥାଏ, ରାଗରେ ଆଖି ଜଳୁଥାଏ । ଅଦୃଶ୍ୟ ଶତ୍ରୁକୁ ଛଳେଇ ଛଳେଇ, ମନେ ମନେ କହୁଥାନ୍ତି—ଏ ଥର—ଏ ଥର—କୁଟାକାଠି ଏକାଠି ହୋଇଥିଲେ; ଜନ୍ଦା, ପିମ୍ପୁଡ଼ି ଏକାଠି ହୋଇଥିଲେ—ଏତେ ଆସ୍ପର୍ଦ୍ଧା !

ଓଠ ଉପରେ ହସ ଖେଳିଗଲା । ବଳିବଳେଇଲା ପରେ ଅବିନାଶବାବୁ ଡାକ ପକେଇଲେ—"ହଇ ହୋ, ହଇ ହୋ, କଣ ପିଲାଙ୍କ ପରି ରାତିଯାକ ବସି ଘରପୋଡ଼ି ଦେଖୁଥିବ—ଶୁଣ, ସେ ଜାଗାକୁ ପବିତ୍ର କରିବାକୁ ଆଉ ଗୋଟିଏ ହୋମ କରିବାକୁ ପଡ଼ିବ । ଆଉ, ବହୁତ ତ ଜାଗା ଅଛି, ତୋଳିଦେବା ଗୋଟିଏ ମନ୍ଦିର, ଦଅଁ ଥାପିବା । ନ ହେଲେ ହାଡ଼ିସାହିର କଳୁଷ ଯିବ ନାହିଁ—।"

□ □

## ପଞ୍ଚାବନ

କୁହୁଡ଼ି ଧୂଆଁ ଉପରେ ଧୀରେ ଧୀରେ ପାହାନ୍ତି ଓହ୍ଲେଇଗଲା । ନିଆଁ ନିଭିଛି, ପୋଡ଼ା ଅଙ୍ଗାର ଖେଳେଇ ହୋଇ ପଡ଼ିଛି । ଘର ଅଛି, ତାର ଛପର ନାହିଁ । ଫଣା କାନ୍ଥ ଆଁ ମେଲିଦେଇ କଳା ନେସି ହୋଇ ଠିଆ ହୋଇଛି, ଗୋଡ଼ତଳେ ଅଙ୍ଗାର କୁଢ଼ । ପୋଡ଼ା ଦାଉ୍ଦାହପୋଡ଼ା ଘରକରଣା ଜିନିଷ ବିଞ୍ଚାବିଞ୍ଚି । ଦିନେ ତାକୁ ମଣିଷ ଘର କଣରେ ସାଇତି ରଖିଥିଲା । ସବୁ ସରିଛି । ଖାଁ । ଖାଁ । ଖାଲି ଘର—ଜଳି ଯାଇଛି, ପୋଡ଼ିଯାଇଛି ।

ଭୈରବର ଗୃହିଣୀ ପଞ୍ଚାଶଲା ପର ଅଚ୍ଛିଣ୍ଡା ଛନ୍ଦରେ ତେଜ ଉଠିଲା ଦିନ ଆଲୁଅ, ବଡ଼ ସହରର ହଲଚଲ ହେଲା । ସ୍ଥାନ ସ୍ଥାନ ଛୁଆଗୁଡ଼ାଏ ଗୋଟିଏ ପୋଡ଼ା କୁଡ଼ିଆ ଆଗରେ ଅଙ୍ଗାର ଭିତରେ ଖେଳ। ଖେଳ କର ମଲା ବଲେଇଟିର ଧ୍ୱଂସାବଶେଷକୁ ନିରେଖି ଦେଖୁଥାନ୍ତି । ବଲେଇଟିଏ, ତାର ମିଶ୍ରି ମିଶ୍ରି ଛୁଆ ଗୁଡ଼ିକ । ଅଧେ ସିଝି ହୋଇ, ଅଧେ ପୋଡ଼ି ହୋଇ ମରି ପଡ଼ିଛନ୍ତି । ପିଲାଙ୍କ ଭିଡ଼ ବଢ଼ୁଛି, ବାଟର ବାଟୋଇ ଚାହିଁ ଚାହିଁ ଯାଉଛି ।

ଦୂରରୁ କାନ୍ଦଣା ଶୁଭୁଛି । ଆପଣା ଘରର ନିଭିଲା ଅଙ୍ଗାର ଉପରେ ଲୁହ ଢାଳି ଢାଳି କିଏ ବସି ପାଉଁଶ ଶୀତଳୋଉଛି । କ୍ରମେ କାନ୍ଦଣା ବଢ଼ିଲା । ବୁଢ଼ୀମାନେ ଆପଣା ଆଶ୍ରୟ ଜାଗା ଗ୍ରୁଡ଼ି, ପୋଡ଼ା କୁଡ଼ିଆ ଆବୋରି ବସି ବାହୁନିବାକୁ ଲଗିଲେ । ଆଜିର ସକାଳ ବୀଭତ୍ସ, ଅସୁନ୍ଦର । ହାଡ଼ସାହିର ଘରକରଣା ଶୀତଳ ପଡ଼ି ମାନ୍ଦା ହୋଇଯାଇଛି । ମୁଢ଼ି, ଚା ସିଝେଇ ପିଇବାର ଚହଲ ନାହିଁ, ମେଳ ହୋଇ କାମକୁ ଯିବାର ଗହଳ ନାହିଁ । ଦୂରରେ ଯେଉଁ ଘର ସବୁ ନିଆଁ ଦାଉରୁ ବଞ୍ଚିଛି, ତାହାର ପିଣ୍ଡାରେ ମେଞ୍ଚା ମେଞ୍ଚା ହୋଇ ବକାହୋଇ ଲୋକେ ବସି ରହିଛନ୍ତି । କୁହୁଡ଼ି ଫାଟି ପଡ଼ୁଛି । ଗ୍ରୁଡିରେ ଛୁରୀ ମାରିଲା ଭଳି ଗୃହିଁକନା ଦିଶିଯାଉଛି ଆପଣା ଘରକରଣାର ପ୍ରେତମୂର୍ତ୍ତି ।

କିଛି ସମୟ ଗଲା । ସାଇକଲ ଚଢ଼ି ମ୍ୟୁନିସିପାଲଟିର ମିସ୍ତ୍ରୀମାନେ ଆସିଲେ । ଲୋକଙ୍କୁ ବୁଝେଇଲେ, କୋବଲେଇଲେ । ଅବିନାଶବାବୁ ସ୍ଥିର ହୋଇ ଅନାଇଁ ଦେଖିଲେ, ମିସ୍ତ୍ରୀମାନେ ସମସ୍ତିଙ୍କୁ କାମକୁ ଅଡ଼େଇ ନେଇ ଚାଲିଗଲେ । ବକର ବକର ହୋଇ, ଅଜଣା ଶବ୍ଦ ଉଦ୍ଦେଶ୍ୟରେ ସବୁ ପ୍ରକାର ଗାଳି, ଅଭିସମ୍ପାତ ଅଜାଡ଼ି ଅଜାଡ଼ି ଲୋକେ ଚାଲିଲେ କାମକୁ । ଅବିନାଶବାବୁ ଡାକିଲେ—"ଅଘୋର, ପୁର ଆସିଛି ?—"

ବଡ଼ ଘରୁ ସାଇକଲ ଦଉଡ଼େଇ ତରବର ହୋଇ ଲୋକେ ଧାଇଁଗଲେ କୁଆଡ଼େ କୁଆଡ଼େ । ଚା' ଖାଉ ଖାଉ ଅବିନାଶବାବୁ ସ୍ତ୍ରୀଙ୍କୁ କହିଲେ—"ଆଜି ଭଲ ଦିନ, ତଥାପି ଶୁଭମୁହୂର୍ତ୍ତ ଖୋଜିବାକୁ ପଡ଼ିବ । ପାଞ୍ଜିଟା ଆଣ ତ ।"

କଅଁଟା ବାଜୁଥାଏ । କୋଡ଼ି କାଙ୍କ ଧରି, ଗୁଡ଼ି ହୋଇଥିବା ତାର ବାଡ଼ ବୋଟ୍ ବୋହି ଦଲ ଦଲ କୁଲି ଆସି ପହଞ୍ଚିଗଲେ । ଶ୍ମଶାନ ପଡ଼ିଥିବା ପୋଡ଼ା ହାଡ଼ଦାହିରେ ଡେଙ୍ଗୁରି ପିଟାଗଲା । କିଣିଥିବା ଜମିର ଖାଗଜରେ ଆଜ ଦଖଲ କିଆ ହେବ । ଚଞ୍ଚଳ ଚଞ୍ଚଳ କଣ୍ଟା ତାରର ବାଡ଼ ବେଢ଼ା ହୋଇଗଲା ପୂରୁଷେ ଉଚ୍ଚ । ଅଙ୍ଗାର କାଢ଼ିବାକୁ, ଭଙ୍ଗା କାନ୍ଥକୁ ଲଣ୍ଡା କରିବାକୁ ଆହୁରି କୁଲିଦଳ ଆସିଲେ । ବହୁତ ଲୋକ ଜମା ହୋଇ କାମ ଚାଲିଲା ଚଞ୍ଚଳ ଚଞ୍ଚଳ ।

ଅଳିଆ ସଫା ହୋଇ କରକୁ ଗଦା ହେଲା । ଯହୁଁ ଯହୁଁ ଖଗ ବଢ଼ିଲା, ତହୁଁ ତହୁଁ ଅଙ୍ଗାର ଗଦା, ଭଙ୍ଗା କାନ୍ଥର କୁଢ଼ ଆହୁରି ଉଚ୍ଚ ହେଲା, ସମାନ ହେଲା ।

ଅବିନାଶବାବୁ ଥରକୁ ଥର ଆସି ଯାଞ୍ଚ୍ କରି ଗଲେ । ଭଲ କାମ ଚାଲିଛି ।

ମୁଣ୍ଡେ ବେଳ ହେଲା । ହାଡ଼ଦାହି ଲୋକେ କାମରୁ ଲେଉଟିଲେ । ହଠାତ୍ ଗୋଳମାଳ ଲାଗିଗଲା । କାନ୍ଦଣା ଆଉ ଗାଳିରେ ଗଗନ ଫାଟିଲା । ଲୋକ ଧାଇଁପଡ଼ିଲେ । ଭିଡ଼ ଦେଖି ପୁଲିସ୍ ଆସିଲେ । କାଗଜପତ୍ର ଧରି କଜେ ଅବିନାଶ-ବାବୁ ପହଞ୍ଚିଗଲେ । ଦେଖଣାହାରି ଠେଲାପେଲା ହୋଇ ଅପେକ୍ଷା କରି ରହିଲେ, କଣ ଗୋଟାଏ ହେବ ସତ ! ସ୍ୱଧର କଆଁଠୁ ଦନର କଆଁ ବଳସିବ ବୋଧହୁଏ । ଘଟନା ଘଟିବ କାଳେ !

ଘଣ୍ଟାଏ କାଳ ଏମିତ ବିତଲା । ଲୁହ ଝରଝର ଜାଲଜାଲୁଆ ଆଖିରେ ସ୍ତ୍ରୀଲୋକମାନେ ଅନେଇଁ ଦେଖୁଥାନ୍ତି । ଦଳେ ଲୋକ ଶୋଧା ଶୋଧୁଥାନ୍ତି ତ ଆଉ ଦଳେ ବାଟର ଲୋକଙ୍କୁ କଣାପ ମାଳୁଥାନ୍ତି !

ବେଢ଼ା ବୁଲିଥିବା ତାର ହତା ଭିତରେ କୋଡ଼, ଶାବଳ ଚାଲିଛି । କାମ ଅଟକୁ ନାହିଁ । ପୋଡ଼ା, ଦରହପୋଡ଼ା, ଦର୍ହ ସବୁ କୁଡ଼ିଆ ଓପଡ଼ା ହୋଇ, ଚୂନା ହୋଇ ଗଦା ହେଉଛି ତାର ବାଡ଼ ବାହାରେ ।

ଶାନ୍ତିରକ୍ଷକ ଜମା ହେଲେ । ହାଡ଼ଦାହିଆଙ୍କୁ ଶୁଣେଇ ଦିଆହେଲା, "ସତ କଥା, କୁଡ଼ିଆ ସିନା ତୁମର ଥିଲା, ଜମି ତ ତୁମର ନୁହେଁ ? ବୁଝି ଖବର୍ଦାର, ଗୋଳମାଳ କର ନାହିଁ, ଶାନ୍ତି ଭଙ୍ଗ ନାହିଁ । ଯାଅ, ପଳାଅ ।''

ଶାନ୍ତି ବାରି ଛୁଂଗି ହେଲା ।

ଗହଳ ପାତଳ ହୋଇଯାଇ ଉଭେଇଗଲା ବଡ଼ ସହରର ରାସ୍ତା ନଈର ସୁଅରେ । କାମ ଲାଗିରହିଲା ।

ଉଦୁଉଦିଆ ଦ'ପହରେ । ବଡ଼ ହତାର ମଝିରେ ଠାଏ ଦେଖାଗଲା ଗାଲିଆ ଟେକା ହୋଇ ସେଠି ପୂଜାଟିଏ କଣ ହେଉଛି । ବ୍ରାହ୍ମଣ ପୁରୋହିତ ବସି ମନ୍ତ୍ର ଉଚ୍ଚାରଣ କରୁଛନ୍ତି ।

ଅଛବ ମଣିଷଙ୍କ ଘରକରଣାର ସମାଧି ଉପରେ ।

ଆଙ୍ଗୁଠିରେ ଆଙ୍ଗୁଠି ଗୁନ୍ଥି ମୁଦ୍ରା ରଚୁଛନ୍ତି ।

ଗୋଟି ଗୋଟି କରି ଛତିଶି କୋଟି ଦେବତାଙ୍କୁ ଆବାହନ କରୁଛନ୍ତି ଛପନ କୋଟି ଆର୍ତ୍ତ ପ୍ରାଣୀଙ୍କ ପୃଥିବୀ ଉପରକୁ । □ □

## ଛପନ

ସନ୍ଧ୍ୟା ହେଲା ।

ମଦ ଦୋକାନ ପାଖେ ବେଶି ଭିଡ଼ ।

ଏବେ ବଡ଼ ଘରପୋଡ଼ି ଗଲା । ପୁରୁଣା ଚିଅ ବେଢ଼େଇ ହୋଇ ରହିଲାଣି ବଡ଼ଲୋକର ହତା ଭିତରେ । ପଛ କଥା ଗଲାଣି । ଅଗତ କଥା ମୁହିଁକୁ ଘୁଞ୍ଚିଲାଣି । କାଲି ପୁଣି କେଉଁ ଗ୍ରାଇତଲେ ?

ତଥାପି ।

ସବୁଦିନେ ଯେମିତ; ଆଜ ସେମିତ । ଯେପରକ କଛ ହୋଇ ନାହିଁ ।

ପିଢ଼ିଲବେଳେ ପୁନର ମନ ପିହି ଯାଉଛ । ସବୁ ଶୀତଳ ହେଲାଣି, ସେ କାଇ ଯାଉଛ । ପୁଣି ସନ୍ଧ୍ୟା ଆସିଲାଣି । ଅନ୍ଧାର ଓ ସହରର ଝୁଲ ଆଲୁଅ ମିଶି କେଡ଼େ ସୁନ୍ଦର ! ଶାନ୍ତ ନଈକୂଳ । ଦୂରରେ ହାଲୋଲମୟ କୋଠା ବସ୍ତି । ବଡ଼ ସହରର ଜନତାର ଯାଉଁ ଯାଉଁ । ପୁଣି ପୁନ ସଜ ହୋଇ ପଦାକୁ ଗୋଡ଼ ବଢ଼େଇଲା । ସ୍ୱପ୍ନ-ଅନୁଭୂତରେ ଛନ୍ଦାଛନ୍ଦ ହୋଇ ମାଂସର କରୁଣ କବତା ଟିଏ— ସେ ପୁନ ।

ସାହସରେ କୁହୁଳ ଉଠୁଛ । ପୁଣି ଦବ ଯାଉଛ । ମିଞ୍ଜିମିଞ୍ଜିକା ଜୁଳୁ-ଜୁଳିଆ ପୋକ ପଣ । ମନ କଥା ବୋଉକୁ କହ ନାହିଁ । ପଥରକୁ ପ୍ରବୋଧିବାକୁ ଗ୍ରୁତ ତାର ନାହିଁ । ପଥର ବ ମଦଖଟିକ ଗଲାଣି । ପୁନ ଚାଲୁଛ ଅବନାଶବାବୁଙ୍କ ଘରମୁହାଁ ।

ଏହି ସେ କୋଠାଘର—ସମ୍ଭ୍ରାନ୍ତପଣର ଅଟଳ ଦୁର୍ଗ ।

ଘରପୋଡ଼ି ପଦାର ଅଗଣାର ଉପରେ ଆକାଶକୁ ଉଚ୍ଚ ମୁଣ୍ଡ ଟେକଛ । ବଜୁଳି ଆଲୁଅ ଦାଉ ଦାଉ ଜଳୁଛ । ହାର୍ମୋନିଅମ୍ ସଙ୍ଗେ ମିଶି ମାନମୟୀର ଅଳା ଗୀତ ଲହଡ଼ି ଭାଙ୍ଗୁଛ । ବୈଠକଖାନାର କବାଟ ଝରକା ଖୋଲା । ଶାଢୋଆ ଝୁରଦାଢ଼ ପଣ ଭିତରଟି ତାର କେଡ଼େ ଉଜ୍ଜ୍ୱଳ ।

ପଦାର ଅଗଣାର ଭିତରେ ତେନୁଳଗଛ ମୂଳେ ହାଡ଼ମାନଙ୍କ ଗ୍ଲାଉଣିର ଗହଳ ।

ପୁଣି ବାଁରେଇ ହେଲା । ଛପି ଛପି ବୁଲି ବୁଲି ଦେଖିଲା, ଅଘୋରବାବୁ ଦିଶୁଥିବେ କାଳେ । ଆଉ ଟିକିକୁ ତ, ସେଇ ତାଙ୍କର ଘଡ଼ି ଆସୁଛି । ଗ୍ୟେସ ଆଲୁଅର ବେଳା, ଖଣ୍ଡିକାଣର ବେଳା—ଯେଉଁଥିରେ ତାର ଅନ୍ଧାରୁଆ ଜୀବନରେ ଚହଲ ଖେଳଯାଏ । କାଳେ —

କାକର ଗ୍ୟଡରେ ପଦାରେ ଅପେକ୍ଷା କରୁ କରୁ ମଲାଶବ ପରି ବାରମ୍ବାର ଝୁପି ଝୁପି କଡକ ଲାଗିଆସେ ଅତୀତଟା । ତୁଳନା କରେ, ଆପଣା ଜୀବନ ସଙ୍ଗେ ଏଇ ନଦୀ କୋଠାର ସସ୍ଥିତିକୁ । ସେଇ ଆଲୁଅ ଦିଶୁଛି, ସେଇ ଗୀତ ଶୁଭୁଛି ମାନମନ୍ଦିର । ସେ ଦିନ ବି କଳ୍ପନାରେ ଚନ୍ଦ୍ରା ଯୋଖି ଭାବି ହେଉଥିଲା— କିଏ କଲେ ମଣିଷ ମାନମନ୍ଦୀ ଓ ଅଘୋର ହୋଇ ଜନ୍ମ ହୁଏ ! ଆଉ ଆଜ ?

ବେଶ ଓଜନ ହୋଇ ମାଡ଼ି ପଡ଼ୁଛି । ଦମ୍ଭ ଦବି ଦବି ଗଲାଣି । ମାନମନ୍ଦୀର ଗୀତରେ, ରକ୍ତରେ ବିଷର ଜ୍ୱାଳା । କାକର ଗ୍ୟଡ । ଅନ୍ଧାର ଗ୍ୟଡ । ପୁଣି ଅପେକ୍ଷା କରୁଛି । କିଏ ଆସୁଛି ? କେହି ନାହିଁ ।

ଧୈର୍ଯ୍ୟ ପ୍ରସ୍ତର ବିସ୍ମୃତିରେ ଚେତନାକୁ ଅଭିଭୂତ କରି ରଖିଛି ଗମ୍ଭୀର ଚନ୍ଦ୍ରା । ବଡ଼ କୋଠାର କାକର ଇଟା ବୋହୁଁ ବୋହୁଁ ପଞ୍ଜରା ହାଡ଼ ଉପରେ ମାଡି ବସିଲା ପରି । ବେଳ ଯାଉଛି । କିଏ ଆସୁଛି ? କେହି ନାହିଁ ।

ଏଠି ତାର କେହି ନାହିଁ ।

କେବଳ ଛୁଆଁ ଅଛୁଆଁ ଲୁହେଁ । ମୁହୂର୍ତ୍ତିର ଗ୍ୟେସ ଭଉଁରେ ପଡ଼ି କାନ୍ଦକୁ କାନ୍ଧ ଯୋଡ଼ି, ଚମଡ଼ାରେ ଚମଡ଼ା ଛୁଆଁଇଲେ ଅଛୁଆଁ ପଣ ଯାଏ ନାହିଁ । ଚମଡ଼ାଠୁଁ ଗଭୀରରେ ତାର ବସା । କୋଠା ଆଉ ଭଙ୍ଗାକୁଡ଼ିଆର ତାରତମ୍ୟରେ ତାର ପାର୍ଥକ୍ୟ । ଧୋବଣାଢ଼ୀ ପିନ୍ଧଲେ ଯାଏ ନାହିଁ, ଚକ୍‌କଣ କରି ମୁଣ୍ଡ ବାନ୍ଧଲେ ଯାଏ ନାହିଁ । ସଫାସୁତୁରା ହେଲେ ଯାଏ ନାହିଁ ।

ରାତିରେ କୁହୁଳୁଥାଏ । ଅଘୋରବାବୁ ଆସିଲେ ନାହିଁ ।

ବିଦାହେଲା ଆଗରୁ କହୁଥିଲାରେ ଦି ପଦ କଥାଜୁପା—ମଣିଷପଣିଆର ଯାହା ଥିଲା, ସବୁ ଦେଇ ତୁମକୁ ଖୁସି କରିଛି । ସତେ ଆମ ବାସ ଉଠେଇ ଦେଲ ? କଣିକିଆ କାନ୍ଥ ଝାଡ଼େ କୁଡ଼ିଆ ଠିଆ କରିବାକୁ ଜାଗା ଟିକିଏ ଠିଆ କରିଦେଲେ ତମର କଣ ସରିଯିବ ? ଦି'ଜଣ ତ ଆମେ—ଦିଶ ହାତ ଭୁଇଁ । ଦବ ନାହିଁ ?

ଆପଣା ଉପରେ ବିଶ୍ୱାସ ଥିଲା—ମାଗିଲେ ମିଳେ ପରା !

ନାହିଁ କେହି ! ବହଳ ହୋଇ କୁହୁଡ଼ି ଟାଙ୍କିଲଣି । ନଈକୂଳ ଝାଳି । ବିଶ୍ୱାସ ଆଉ ନାହିଁ । ଉଜାଣି ଭାବନା—ମାଗିଲେ ଥାଳ ପୂରେ ନାହିଁ, କାନ୍ଦିଲେ ପଥର ତରଳେ ନାହିଁ । କାହିଁକି ଆଉ ? ପୁଣି ଶେଷ ଥରକ—ଅସହ୍ୟ ନାହିଁ ଟିକଏ—ଶୁଣିଯାଆନ୍ତା ଖାଲି ପଦକ କଥା—ଶେଷ କଥା—ମୁଁ ଅଛୁଆଁ ନୁହେଁ, ଅଛୁଆଁ ତୁ । ମୁଁ ଖାଲି ଦରିଦ୍ର—ଆଉ ତୁ—ଛୁଇଁଲେ ପାପ ଲାଗେ, ଛୁଇଁଲେ ଛୁଆଁ ତା ।

ରାଗରେ ଲେଉଟିଗଲା । କେତେ ଦିନ ପରେ ସନିଆ ମନେ ପଡ଼ିଲା । ବାହୁଡ଼ାଣି ବାଟରେ ଅନ୍ଧାରେ ଅନ୍ଧାରେ ଅଠ ପାଖରେ ତାର ମୂର୍ତ୍ତି । କଣା ହାଣ୍ଡି ପରି ଅଘୋରର ସ୍ମୃତିକୁ ରାସ୍ତାରେ କଚଦେଇ ଘରକୁ ଫେରିଲା ।

ଘର ଘର ପିଣ୍ଡାରେ ମଦ ନିଶାରେ ଅସମ୍ଭାଳ ହୋଇ ଜେମା ଏକ୍ଟା ଚେଣ୍ଡ ବକୁଛି । ପୁନିକୁ ଦେଖି କହିଲା, "କୁଆଡ଼େ ଯାଇଥିଲୁ ? ମା'କୁ ଛୁଡ଼ି ବାପଘର ଯାଇଥିଲୁ ? ହଇ ଲୋ । ଇଲୋ ତୋର କୋଉ ବାପ ଲୋ, ଆମର ଆଗରେ କୋଠା ପିଟିଲା । ଖୁଦ ମଲ୍ଲିକ ଖୋଇ ଝିଅକୁ ପୋଷିଲା ପାଳିଲା । ଆଇଥିଲା କେବେ ପଚାରି ? ଓଲଟି ସାହି ଜାଳିଦେଲା, ତିନି ଘରକରେ ବାଡ଼ ଘେରେଇ ଦେଇ, କହିଲା—ଯା, ନିକଲ୍ । ସେଇଠା ଘରକୁ କାହିଁକି ମୁହଁ ଦେଖେଇ ଯାଇଥିଲୁ କହିବୁଟି ମତେ । ନାହିଁ, ତୁ ଆଗ କହ, ନଇଲେ ତୋର ଆଗରେ ଦଉଡ଼ି ଦେଇ ମରିବି । ଆଲୋ ବଡ଼ା ।"

ସାହି ଲୋକେ ହସୁଥାନ୍ତି । ଆଉ ଗୋଟିଏ ବୁଢ଼ୀ ମଦଖେଳରେ ଗେହ୍ଲେଇ ହେଉଥାଏ, "ଏ ପୁନି ମା, ତେମେ ଫେଣେ ଟୋକଦେରେ କଥା କହୁଛ— ସତେରେ ମ । ହେ ତମ ଆଖି ଛୁଁଚ ।"

ଆସ୍ତେ ପୁନି ତା ବୋଉର ବେକକୁ କୁଣ୍ଢେଇ ଧରିଲା । ନଇଁପଡ଼ି କହିଲା—"ଛି, ଏମିତି ହଉଚୁ ବୋଉ ! ଆ, ଶୋଇପଡ଼ିବୁ ଆ । ତତେ ପରା ହଜାରେ ଥର ମନା କରିଚି, ଖାଲି ପେଟରେ ସେଗୁଡ଼ାକ ପିଇବୁ ନାହିଁ—"

"ହଉ ଛୁଡ଼୍ ଛୁଡ଼୍ । କୋଠାବାଲା ବାପ ବୋଲି ତାର ପଟ ନଉଚୁ । କାହିଁକି ନବୁ ନାହିଁ, ତାର ଅଇଁଠା ସବୁ । ମୋ ଝିଅ ଖଣ୍ଡ ବି ସେ ଗିଳିଦେଲା । ମୋର ଆଉ କଣ ଅଛି ଯେ, ତୁ ମତେ ପଚାରିବୁ ?" ନିଶା ଖେଳରେ ପୁନିବୋଉ ବାହୁନି ବସିଲା ।

ଭଗାରି ହସୁଥାନ୍ତି, ଟେହ୍ଲୁଥାନ୍ତି । କହୁଥାନ୍ତି—"ହଁ, ସେଇଠୁ କଣ ହେଲା ପୁନି ମା ?"



## ସତାବନ

ଆଗ ଗଲା ଧର୍ମାବୁଢ଼ା । ଫକେଟ୍ ଫାଟି ନ ଥାଏ । ସକାଳକୁ ସେ ନାହିଁ । ସକାଳକୁ ଦଳ ଗ୍ଲଲେ । ସହରର ଆଉ କେଉଁ ଦୂରର ତଳରେ କବର ପାଖେ, ମଶାଣି ପାଖେ, ମଣିଷଛଡ଼ା ଧରମଛଡ଼ା ସନ୍ଥସନ୍ଥିଆ ଭୂଇଁ । ସେଠି ନାଗଅଇଁର ବଣ ପ୍ରଚୁର । ବେତନାସୀ ଅଛୁ; ଆମ୍ବ, ଡମ୍ବିର ତୋଟା ଅଛୁ । ସହରର ବଢ଼ିବ, ଏମାନେ ତାହାର ଅଗ୍ରଦୂତ । ଆଗଚଳା କୋଡ଼-ବାହୁଙ୍କୀ ଧର୍ ବାହ୍ମନ । ମଇଳା କାଢ଼ିବେ, ଅରମା ସଫା କରବେ, ବସ୍ତି ବସେଇବେ । ତା ପରେ ପୁଣି ଉଠିଯିବେ ଆଉ କେଉଁଠିକୁ ।

ହେଁସ-ମସିଣା ମୁଣ୍ଡେଇ, କନ୍ଥା ବୁଜୁଲା କାନ୍ଧେଇ, ହାଣ୍ଡି ଟେକେଇ ବୋହି ଗ୍ଲଲେ ସେ ବାହ୍ମନ । ଜଡଦନ ପରି ଗଡ଼ର ଗଡ଼ର କଥାର ସୁଅ, ଭସ୍ ଭସ୍ ପିକା ଧୂଆଁ, ଦୁମୁ ଦୁମୁ ଗ୍ଲ । ବୋକଣ୍ଟ ବୋହି କେମା ଗ୍ଲଛୁ, ହେଁସ ମୁଣ୍ଡେଇ ପୁଜ । ବାକି ଜନତ ସାହମଣିଷ ବୋହିଛନ୍ତି । ଏକା ବାଟର ପଥିକ । ସେଠି ଚୋର ମୋର ନାହିଁ, କୁନ୍ଥାକୁନ୍ଥି, ପେଲାପେଲି ନାହିଁ । ଏକା ରକ୍ତର ଧାର ସବୁଠି । ସେମାନେ ହରଜନ ।

ସୂର୍ଯ୍ୟ ଉଠୁଛୁ । ଦୋତାଲା କୋଠା ଆପଣାର ଦର୍ପରେ ସମ୍ଭ୍ରାନ୍ତ ହୋଇ ଠିଆ ହୋଇଛୁ । ପାଖେ ପୁରୁଣା ହାଡ଼ସାହର ମୂଳଦୁଆ, ଗୋଟାଏ ଅଙ୍ଗାରର ପଡ଼ିଆ । ସେହି ଅଙ୍ଗାର ପାଉଁଶ ଉପରେ ଭୂଇଁକୁ ଯାପି ଧରି, ଲେପ୍‌ଟେଇ ପଡ଼ି କୋଠା ଆଡ଼କୁ କ୍ରୋଧରେ ଗ୍ଲହିଁ ରହିଛୁ, ଯେପରି କି ତାହାର ବିଶାଳ କଳା-କୋଚଟ ରାକ୍ଷସ ରୂପ । ତାର ଜଳନ୍ତା ଦୃଷ୍ଟି ପରି କୋଠାମସ୍ତ ସହର ଉପରେ ନାଲି ସୂର୍ଯ୍ୟର କିରଣ ପଡ଼ୁଛୁ ।

ନଦଭଙ୍ଗା ମଠର ଘଣ୍ଟା ସ୍ୱେଲରେ ଶମ୍ଭୁ ନାମ କୀର୍ତ୍ତନ କରୁଛୁ । ଅଘୋରବାବୁ, ମାନମସ୍ତୀ କୋଠା ଉପରୁ ଦୃଶ୍ୟ ଦେଖୁଛନ୍ତି । ପ୍ରଭାତ ସୁନ୍ଦର ଖୋଲୁଛୁ । ଲାଲ ସୂର୍ଯ୍ୟ ଉଲୁସି ଉଠୁଛୁ ।

